ପ୍ରତିଭା ଶତପଥୀ

# ବର୍ଣ୍ଣିଳ ଭୋଗପୁର ଓ ଅସ୍ଥିର ଛାଇ

(ଆମେରିକା ଓ ଆଇଲାଣ୍ଡ)



# ବର୍ଣ୍ଣିଳ ଭୋଗପୁର

## ଓ ଅସ୍ଥିର ଛାଇ

(ଆମେରିକା ଓ ଥାଇଲାଣ୍ଡ)

ପ୍ରତିଭା ଶତପଥୀ



# ବର୍ଣ୍ଣିଳ ଭୋଗପୁର ଓ ଅସ୍ଥିର ଛାଇ

(ଭ୍ରମଣ କାହାଣୀ)

ପ୍ରତିଭା ଶତପଥୀ

ପ୍ରକାଶକ : ଅପୂର୍ବା
୪୮, ମଧୁସୂଦନ ନଗର,
ଭୁବନେଶ୍ୱର- ୭୫୧ ୦୦୧

ପ୍ରଥମ ସଂସ୍କରଣ : ଦୀପାବଳୀ, ୨୦୦୪



ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୮୦ ଟଙ୍କା

**BARNILA BHOGAPURA 'O' ASTHIRA CHHAI**

Travel Story by **Pratibha Satpathy**

Publisher : **Apurba**
48,Madhusudan Nagar,
Bhubaneswar - 751 001

First Edition : Diwali, 2004



Printed at : Apurba Off-Set,
Bhubaneswar, Pin-751 001

Cover Design : Kshirod C. Pati

**Price : Rs.80 /-(Eighty only)**

# ପାଶ୍ଚାତ୍ୟ ପ୍ରାଚ୍ୟ

ବିଶାଳ ବିଶ୍ୱରେ କେତେ ବୈଭିନ୍ନ୍ୟ, କେତେ ନୂତନତ୍ୱ ! ପୂର୍ବ କାଳରୁ ଆଜି ପର୍ଯ୍ୟନ୍ତ ଅସଂଖ୍ୟ ପର୍ଯ୍ୟଟକ ପୃଥିବୀର ବିଭିନ୍ନ ଅଂଚଳର ଅସୁମାରି ତଥ୍ୟ ଓ ଅନୁଭବକୁ ଲିପିବଦ୍ଧ କରି ଯାଇଛନ୍ତି । ତଥାପି କ'ଣ ରହିଯାଇଛି ବିଶେଷତ୍ୱ ? କ'ଣ ଲାଗୁଛି ନୂଆ ନୂଆ ? 'ଆମେରିକା' ସଂପର୍କରେ ମୁଁ ପ୍ରଥମେ ପଢ଼ିଥିବା ଭ୍ରମଣ ବୃତ୍ତାନ୍ତ ଥିଲା ଡକ୍ଟର କୁଂଜବିହାରୀ ଦାଶଙ୍କ 'ଆମେରିକାରୁ ୟୁରୋପ ଆଫ୍ରିକା' ପୁସ୍ତକ । ଏହା ମଧ୍ୟ ତତ୍କାଳରେ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲା । ତା'ର ପ୍ରାୟ ଅଠେଇଶ ବର୍ଷ ପରେ ପୁଣି ଆମେରିକା ଭ୍ରମଣ ଓ ରହଣିର ବିଭିନ୍ନ ତଥ୍ୟ ଓ ଉପଲବ୍ଧିକୁ ମୁଁ ଲିପିବଦ୍ଧ କରିବାକୁ ଯାଉଛି । ଯା' ମଧ୍ୟରେ ଆହୁରି କେତେ କେଜାଣି ଆମେରିକା ଭ୍ରମଣର ଅନୁଭୂତି ପ୍ରକାଶ ପାଇଛି । ତଥାପି ମୋର ହୃଦବୋଧ ହୋଇଛି, ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ବିଶାଳ ଆମେରିକା ରହିଛି ଆକର୍ଷଣୀୟ ଓ କେତେକାଂଶରେ ଅନାବିଷ୍କୃତ । ସମୟର ପ୍ରଭାବରେ ଆସିଛି ମଧ୍ୟ ତା'ର ଅନେକ ପରିବର୍ତ୍ତନ । ପୁଣି ଭ୍ରମଣକାରୀର ସ୍ୱତନ୍ତ୍ର ଚାହାଣୀର ତୀକ୍ଷ୍ଣତାରେ ରହିଛି ଅନୁଶୀଳନ ଓ ବ୍ୟବଚ୍ଛେଦର ମାନସିକତା ।

ମତେ ଲାଗିଲା, ଆମେରିକାର ଜନଜୀବନ ଓ ସମାଜ ସଚେତନତା, ତାହାର ଶିକ୍ଷାର ବିକାଶ ତଥା ମାନବିକ ସଂପର୍କ, ଏ ସବୁ କିଛି ଜଣେ ଭାରତୀୟ ପକ୍ଷରେ ଖୁବ୍ ଜ୍ଞାତବ୍ୟ ଓ ପ୍ରଣିଧାନଯୋଗ୍ୟ । ଅନେକ କଥା ଶିକ୍ଷଣୀୟ ରହିଛି । ବିଶେଷ କରି ଆମେରିକାର ନାଗରିକ ସଚେତନତା, ଶ୍ରମନିଷ୍ଠା । ମୋର ତିନିମାସ ରହଣିକାଳରେ କେତେକ ସ୍ଥାନ ଭ୍ରମଣର ଓ କେତେକ ବ୍ୟକ୍ତିଙ୍କ ସଂସ୍ପର୍ଶର ଯେଉଁ ଚିତ୍ର ମୁଁ ଏଠାରେ ପ୍ରଦାନ କରିବାକୁ ପ୍ରୟାସ କରିଛି, ତାହା ମୁଖ୍ୟତଃ ଆମେରିକାର ଅନ୍ତଃ ଓ ବହିଃରୂପକୁ ଭାରତୀୟ ମନନଭୂମିରେ ହିଁ ଅଙ୍କିତ କରିପାରିବ । ଏହି ଭ୍ରମଣାନୁଭୂତିରୁ କେତେକାଂଶ 'ସମ୍ବାଦ' ଓ 'ଧରିତ୍ରୀ'ର ସାହିତ୍ୟ ପୃଷ୍ଠାରେ ପ୍ରକାଶିତ ହୋଇ ପ୍ରଚୁର ପାଠକୀୟ ସମାଦର ଲାଭ କରିଛି । ସେଥିପାଇଁ, ପୁସ୍ତକାକାରରେ ପ୍ରକାଶ କରିବା ନିମିତ୍ତ ମୋର ଆଗ୍ରହ ଉଦ୍ରେକ ହୋଇଛି ।

ଆମେରିକା ଭ୍ରମଣର ମାତ୍ର ପାଞ୍ଚ ମାସ ପରେ ମୋର ଥାଇଲାଣ୍ଡ ଭ୍ରମଣ । ମୁଖ୍ୟତଃ ଉଭୟ ସ୍ଥାନରେ ମୋର ସାହିତ୍ୟିକ କାର୍ଯ୍ୟକ୍ରମ ମଧ୍ୟ କିଛି ରହିଥିଲା । ତେବେ ମୋର

ଜଣେ ପର୍ଯ୍ୟଟକର ଅନ୍ତଃକରଣ ହୋଇ ଥିବାରୁ ସେଇ ଫଳକରେ ଖୋଦିତ ହୋଇଛି ଦୁଇଟି ଦେଶର ଅନୁଭବ ଓ ଏହାର ସମୀକ୍ଷା ।

ଆମେରିକାର ଭ୍ରମଣାନୁଭବ ମନ ଓ ଚେତନା ମଧ୍ୟରେ ସଦ୍ୟ ଓ ଜୀବିତ ରହିଥିଲାବେଳେ, ଅଳ୍ପଦିନ ପରେ ଉପଲବ୍ଧ ଥାଇଲାଣ୍ଡର ବିଶେଷ ଅଞ୍ଚଳର ଅନୁଭବ, ତଥ୍ୟ ଓ ଚିତ୍ରାବଳୀ ତଥା ଲୋକଜୀବନ ଏ ଉଭୟକୁ ମୁଁ ତୁଳନା କରି ଦେଖିଛି । ଗୋଟିଏ ବିଶାଳକାର ସମୃଦ୍ଧ ଦେଶ, ଅପରଟି ଅପେକ୍ଷାକୃତ କ୍ଷୁଦ୍ରାକାର ଅନୁନ୍ନତ ଦେଶ, ଗୋଟିଏ ପାଶ୍ଚାତ୍ୟ, ଅନ୍ୟଟି ପ୍ରାଚ୍ୟଦେଶ । ଆମେରିକାର ମୂଲ୍ୟ ସହ ଥାଇଲାଣ୍ଡର ମୂଲ୍ୟ ତୁଳନାର ଯୋଗ୍ୟ ନୁହେଁ । ମାତ୍ର, ବିଜ୍ଞାନୀ, ବିତ୍ତଶାଳୀ ଆମେରିକା ତା'ର ବିଶ୍ରାମଭୂମି ଥାଇଲାଣ୍ଡକୁ ଉନ୍ନତ କରିବାକୁ ଯାଇ ନିଜ ବାହ୍ୟସଂସ୍କୃତି ଦ୍ୱାରା ସଂପୂର୍ଣ୍ଣ କବଳିତ କରିଛି । ଅନ୍ୟ ଅର୍ଥରେ ଥାଇଲାଣ୍ଡ ଆମେରିକାର ଛାୟା ଦ୍ୱାରା ଗ୍ରସ୍ତ ହୋଇ ବିଭୋର ହୋଇପଡ଼ିଛି । ଅଥଚ ପ୍ରକୃତପକ୍ଷେ ଆମେରିକାର ଜ୍ଞାନ, ବିଜ୍ଞାନ, ଅର୍ଥବିତ୍ତ, ସ୍ୱାଭିମାନ ଓ ଶକ୍ତି ଥାଇଲାଣ୍ଡ ପାଖରେ ଅନୁପସ୍ଥିତ । ତା'ର ବାହ୍ୟଜଗତ କିଛିଟା ପ୍ରଭାବିତ ହୋଇ ଉଜ୍ଜ୍ୱଳ ଦିଶୁଛି, ସତ । କିନ୍ତୁ ଅଭ୍ୟନ୍ତରରେ ରହିଛି ଅନ୍ଧାର, ଅଶିକ୍ଷା, ଦାରିଦ୍ର୍ୟ ଏବଂ ଜାତୀୟ ଶକ୍ତିର ସାମାନ୍ୟତା । ତଥାପି ଆମେରିକାର ପ୍ରଭାବ 'ଥାଇଲାଣ୍ଡ'କୁ କିଛିଟା ଚାକଚକ୍ୟପୂର୍ଣ୍ଣ ଓ ବିକଶିତ ଅବଶ୍ୟ କରିଛି -ଏହା ନିଶ୍ଚୟ ସ୍ୱୀକାର କରିବାକୁ ହେବ ।

ମୋର ଏହି ଭ୍ରମଣାନୁଭୂତିକୁ ଏକତ୍ର ପ୍ରକାଶ କରିବାରେ ଯତ୍ନ କରିଛନ୍ତି 'ଅପୂର୍ବା' ପ୍ରକାଶନର ଶ୍ରଦ୍ଧେୟ କ୍ଷୀରୋଦ ଚନ୍ଦ୍ର ପତି । ଏହି ନୂତନ ଓ ରଚିଶୀଳ ଯୁବ ପ୍ରକାଶକଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା ଜ୍ଞାପନ କରୁଛି । ଯଦି ଏହି ଭ୍ରମଣ ଅନୁଭବ କୌଣସି ଗୋଟିଏ ବିନ୍ଦୁରେ ଜଣେ ବି ପାଠକକୁ ଅଭିଭୂତ କରିପାରିଲା, ତେବେ ମୋର ଏଇ ପ୍ରୟାସ ଧନ୍ୟ ହେବ ।

❑❑❑

**ପ୍ରତିଭା ଶତପଥୀ**

କାର୍ତ୍ତିକ,୨୦୦୪

# ବିଷୟ ବିନ୍ୟାସ

## ବର୍ଣ୍ଣିଳ ଭୋଗପୁର
### ଆମେରିକାର ବର୍ଣ୍ଣମୟ ଚିତ୍ର



## ଅସ୍ଥିର ଛାଇ
### ଥାଇଲାଣ୍ଡ ପ୍ରତି ଏକ ବିହଂଗ ଦୃଷ୍ଟି





# ପାତାଳ ଅଭିମୁଖେ

ଆମର ଏଠି ସମୟ ରାତି ଅଢ଼େଇଟା ବେଳକୁ ତାଙ୍କ ସମୟ ଅପରାହ୍ଣ ଚାରିଟା । ତାଙ୍କ ଦେଶ ସୂର୍ଯ୍ୟ ଆଡ଼କୁ ମୁହଁଇଲା ବେଳକୁ ଆମର ମୁହାଁଏ ଅନ୍ଧାର ଆଡ଼କୁ, ଚନ୍ଦ୍ର ଆଡ଼କୁ । ଆମର ଯଦି ମର୍ତ୍ତ୍ୟ, ତା ହେଲେ ତାଙ୍କର ପାତାଳ-ଭୋଗପୁରୀ । ପୃଥିବୀ ଯଦି କମଳା ଲେମ୍ବୁଟେ ହୋଇଥାନ୍ତା, ତେବେ ତାମ୍ପଣରେ ଏପଟୁ ସେପଟକୁ ଫୁଟାଇ ଦିଅନ୍ତେ । କିନ୍ତୁ ପୃଥିବୀର ଅଭ୍ୟନ୍ତର ବଡ଼ ଜଟିଳ । ତେଣୁ ଆମକୁ ଆକାଶ ମାର୍ଗରେ ଉଡ଼ି ଉଡ଼ି ଯିବାକୁ ପଡ଼ିବ ।

ସେ ଦିନ ଜୁନ୍ ଚବିଶ ତାରିଖ । ଦିଲ୍ଲୀର ଇନ୍ଦିରା ଗାନ୍ଧୀ ଇଣ୍ଟର୍‌ନ୍ୟାସ୍‌ନାଲ୍ ଏଆରପୋର୍ଟରେ ଲୁଫ୍‌ଥାନ୍‌ସା ବିମାନ ଧରିଲି ମୁଁ । ମୋର ଜ୍ୱାଇଁ ଦେବାଶିଷ ମୋତେ ଏୟାର୍‌ପୋର୍ଟ୍ ଭିତରକୁ ଛାଡ଼ି, ବାହାରେ ଅପେକ୍ଷା କରିଥିଲେ । ପ୍ଲେନ୍ ଟେକ୍ ଅପ୍ କଲେ ସେ ଫେରିବେ । ଦିଲ୍ଲୀ ରାତିର ଆକାଶକୁ ବାୟୁଯାନ ଉଠିଲା ବେଳକୁ, ପରେ ଶୁଣିଲି, ଦେବାଶିଷଙ୍କ ଆଖିରୁ ଲୁହ ବୋହି ପଡ଼ିଲା-'ମାମା ଆମଠୁଁ କେତେ ଦୂରକୁ ଚାଲିଗଲେ !'

ମୋର ସାନ ନଣନ୍ଦ ଓ ତାଙ୍କର ପୁଅ ଝିଅ ସମସ୍ତେ ଆମେରିକାରେ ସ୍ଥାୟୀ ବାସିନ୍ଦା । କିନ୍ତୁ ମୁଁ ଯାଉଥାଏ ମୁଖ୍ୟତଃ ମୋ ଝିଅ ପାଖକୁ । ସେ ଭାରି ଅଧୈର୍ଯ୍ୟ ହୋଇ ମା'ର ଯିବାକୁ ଅନେଇ ବସିଥାଏ । ଗତ ବର୍ଷଠାରୁ 'ଓଡ଼ିଶା ସୋସାଇଟି ଅଫ୍ ଆମେରିକା' ସମ୍ମିଳନୀ ପାଇଁ ଆମେରିକା ନିବାସୀ ଓଡ଼ିଆ ବନ୍ଧୁ କେତେଜଣ ନିମନ୍ତ୍ରଣ ଜଣାଇଥାନ୍ତି । କିନ୍ତୁ ମୁଁ ୨୦୦୨ରେ ଯିବାକୁ ସ୍ଥିର କରି ନଥିଲି । ୨୦୦୩ ରେ ସମ୍ମତି ଦେଲି ଓ ଯୋଗାଯୋଗ ରକ୍ଷା କଲି । ମୋର ଅନାଗ୍ରହର କାରଣ ଥିଲା, ଆମେରିକା ଏତେଗୁଡ଼ାଏ ଦୂର, ପୁଣି ଏଡ଼େ ବିଶାଳ ରାଜ୍ୟ-ସେଠିକୁ ଏକ୍‌ଲା ଯିବି ।

ପ୍ରଥମ ଥର ପାଇଁ ଦେଶ ବାହାରକୁ ଯାଉଛି । ସକ୍ରିୟ ରାଜନୀତିରେ ଭାଗନେଇ ଭୋଟ୍ ଲଢ଼ିଲା ପରଠାରୁ ମୋର ସ୍ୱାମୀ ମାତ୍ର ଥରେ ମୋ ସହିତ ଓଡ଼ିଶା ବାହାରକୁ ବୁଲି ଯାଇଥିଲେ । ସେ ବ୍ୟସ୍ତ ଥାଆନ୍ତି, ରିସର୍ଚ୍ଚ ପ୍ରୋଜେକ୍ଟ, ପତ୍ରିକା ପୁଣି ଗ୍ରାମ ଗସ୍ତରେ । ତିନିବର୍ଷ ଠାରୁ ମୁଁ ପାସ୍‌ପୋର୍ଟ ପ୍ରସ୍ତୁତ କଲିଣି ଓ ତାଙ୍କୁ ମଧ୍ୟ କହିଲି, ସେ ରାଜିହେଲେ ନାହିଁ । ଅଗତ୍ୟା ଝିଅର ଇ-ମେଲ୍ ପାଇଲି, ସେ ବଡ଼ ଛଟପଟ ବୋଧ କରୁଛି, ଫୋନ୍ ଉପରେ ଫୋନ୍ । ସାଢ଼େ ତିନିବର୍ଷ ହୋଇଗଲା ମୋ ସହିତ ତା'ର

ଦେଖା ହେଇନି, ସେ ମଧ୍ୟ ନାନା ଅସୁବିଧାବଶତଃ ଆସିପାରୁନାହିଁ । ମତେ ଯିବାକୁ ହେବ । ସବୁ ଆୟୋଜନ କରିନେଲି, ଓ.ଏସ୍.ଏ ସମ୍ମିଳନୀର ନିମନ୍ତ୍ରଣ ଥାଏ ଜୁଲାଇ ମାସ ପ୍ରଥମ ସପ୍ତାହରେ ।

ପ୍ଲେନ୍‌ରେ ପ୍ରାୟ ନିଦ ହେଲା ନାହିଁ । ଆଠ ଘଣ୍ଟା ଉଡ଼ିବା ପରେ ଯାନଟି ଜର୍ମାନୀର ଫ୍ରାଙ୍କଫର୍ଟରେ ପହଁଞ୍ଚିଲା । ସେତେବେଳେ ସେଠାରେ ସକାଳ । ଦୁଇ ଘଣ୍ଟା ରହଣି ପରେ ସେଠାରୁ ପୁଣି ବାୟୁ ଯାନଟି ମୋତେ ନେଇ ଆମେରିକାର ଡଲାସ ଫୋର୍ଟଓ୍ୱର୍ଥ ଅଭିମୁଖେ ଛୁଟିବ । ମୋ ସହ ବିଶିଷ୍ଟ ପରିବାରଟିଏ ଯାଉଥିଲେ କାଲିଫର୍ଣ୍ଣିଆ । ସେମାନେ ଭିନ୍ନ ପ୍ଲେନ୍ ଓ ମୁଁ ଭିନ୍ନ ପ୍ଲେନ୍ ଧରିବୁ । ବିରାଟ ଏୟାରପୋର୍ଟ, ବହୁତ ଗୁଡିଏ ଗେଟ୍ , ମୁଁ ଯିବି ଗେଟ୍ 'ଏ' ରେ ଅଥଚ ଗେଟ୍ 'ଏ' କୁ ଟ୍ରେନ୍‌ରେ ଯିବାକୁ ପଡ଼ିବ । ପାଞ୍ଚ ଛଅ ମିନିଟ୍ ରାସ୍ତା ସେଇ ଏୟାରପୋର୍ଟ ଭିତରେ । ସେଠାରେ ପୁଣି ଜର୍ମାନୀ ଭାଷା ଛଡ଼ା ଲୋକେ ଇଂରାଜୀ ବି ବୁଝନ୍ତି ନାହିଁ । ଏସ୍‌କେଲେଟର୍‌ରେ ଉପରକୁ ଉଠି ସେହି ଟ୍ରେନ୍‌ରେ ବସିଲି । ସେଥିରେ ଚାଳକ ନ ଥାଏ । ସ୍ୱୟଂଚାଳିତ । ଅଥଚ କ'ଣ ତା'ର ତ୍ରୁଟି ହେଲା କେଜାଣି ଟ୍ରେନଟି ଗେଟ୍ 'ଏ' ପାଖକୁ ନଯାଇ ଅଧା ବାଟରୁ ତିନିଥର ଫେରି ଆସିଲା । ମୁଁ ଅତର୍ଚ୍ଛ । ଏଥର ଯଦି ଫେରିବ, ତା' ହେଲେ ଧାଇଁ ଧାଇଁ ଯାଇ ସେ ଦୂର ଗେଟ୍‌କୁ ଧରିବାକୁ ପଡ଼ିବ । ଭାଗ୍ୟକୁ ଚତୁର୍ଥ ଥର ଟ୍ରେନ୍ ଗେଟ୍ 'ଏ'ରେ ପହଞ୍ଚିଲା । ବିଭିନ୍ନ ଦେଶର ବହୁ ଲୋକ ମୋ ସହିତ ଥାଆନ୍ତି । ମୁଁ ତରତରରେ ଯାଇ ଗେଟ୍ ଧରିଲା ବେଳକୁ ଚେକିଂ ପ୍ରାୟ ସରି ଆସୁଛି । ଜର୍ମାନୀ ଭାଷୀ ଜଣେ କାଉଣ୍ଟରରେ ଚେକିଂ କରୁଥାନ୍ତି । ଜଣେ ଇଂରାଜୀ ଇଣ୍ଟରପ୍ରିଟର୍ ବି ଥାଆନ୍ତି । ଚେକିଂରେ ଜର୍ମାନ ଲେଡ଼ି ପଚାରି ଚାଲିଲା-'ଫ୍ୟା-ଫୋ' । ମୁଁ ବୁଝୁ ନଥାଏ । ଇଣ୍ଟର ପ୍ରିଟର କହିଲା 'ପାସ୍‌ପୋର୍ଟ' । ଶେଷକୁ ବୋର୍ଡ଼ିଂ ପାସ୍ ଚେକ୍ ହେଲା । କିନ୍ତୁ ମୋର ମୂଳ ଟିକେଟ୍ ଟି ହଠାତ୍ ପାଇଲି ନାହିଁ । ଲଫାପା ଭିତରେ ଟିକେଟ ମୋଡ଼ିମାଡ଼ି ହୋଇ ରହିଯାଇଛି । କେମିତି କେଜାଣି ମୁଁ ଠିକ୍ ମତେ ଦେଖି ପାରିଲି ନାହିଁ । ଚେକିଂରେ ମଗା ଚାଲିଛି । ସେ ନାସ୍ତିବାଣୀ ଶୁଣାଇ ଦେଲା, 'ଟିକେଟ ନ ଦେଖାଇଲେ, ମୁଁ ତୁମକୁ ପ୍ଲେନ୍‌ରେ ବସିବାକୁ ଦେବିନାହିଁ ।' ମୁଁ କାନ୍ଦିବା ଉପରେ । କିନ୍ତୁ ସେ ମୋତେ ଧୈର୍ଯ୍ୟ ଦେଲା । ଇଣ୍ଟର ପ୍ରିଟର ସହିତ ମିଶି ମୋ ବ୍ୟାଗରୁ ସବୁ ଖୋଜିଲୁ । ବ୍ୟଗ୍ରତା, ଆଶଙ୍କା ମିଶି ମୋତେ କାବୁ କରି ପକାଇଥିଲା । ଏମିତିରେ ମୁଁ ଟିକେ ଅଧୈର୍ଯ୍ୟ । ଯା' ହଉ, ଅବଶେଷରେ ବଡ଼ ଲଫାପା ଭିତରେ ଗୁଞ୍ଜି ହୋଇଥିବା ଟିକେଟ୍ ଟି ମୋ ନଜରରେ

ପଡ଼ିଲା । ମୁଁ ସବାଶେଷରେ ପ୍ଲେନ୍‌କୁ ଗଲି । ଏହି ଯାନଟିରେ ବସି ଦଶ ଘଣ୍ଟା ଉଡ଼ିବାକୁ ପଡ଼ିବ । ନିଦ ଭାଗ୍ୟରେ ନାହିଁ । ଏହି ଯାନରେ ଭାରତର ବିଭିନ୍ନ ଅଞ୍ଚଳରୁ ଆସିଥିବା ଅନେକ ଯାତ୍ରୀ ଥାଆନ୍ତି । ପ୍ଲେନ୍ ଭିତରେ ଟି.ଭିରେ ସିନେମା ଚାଲୁଥାଏ । ବାରମ୍ବାର ସ୍ଥାନୀୟ ସମୟ, ଗନ୍ତବ୍ୟ ସ୍ଥାନର ସମୟ ଓ ପ୍ଲେନ୍‌ର ଆକାଶରେ ଉଚ୍ଚତା ଜଣାଇ ଦିଆଯାଉଥାଏ । ତା' ପରେ ପ୍ଲେନ୍‌ଟି କେଉଁ ଦେଶ ଉପରେ ଚାଲିଛି ତା' ମଧ୍ୟ ମାନଚିତ୍ର ମାଧ୍ୟମରେ ଦେଖାଇ ଦିଆ ଯାଉଥାଏ । ଖାଦ୍ୟ ମନ୍ଦ ନୁହେଁ, ପାନୀୟ ପ୍ରଚୁର । ମଦଠାରୁ ବିଅର ଓ ସଫ୍ଟ ଡ୍ରିଙ୍କସ୍ ପର୍ଯ୍ୟନ୍ତ । କିନ୍ତୁ ଗୋଟେ ସମୟରେ ଯାତ୍ରା ବଡ଼ ଅସହ୍ୟ ମନେହେଲା । ଦୀର୍ଘ ସମୟ । କେବେ ସରିବ ଏ ଯାତ୍ରା ! ଅନଭ୍ୟାସ, ଉତ୍ତର ବୟସ ସବୁ ମିଶି କ୍ଳାନ୍ତ ଲାଗୁଥାଏ ।

ଦଶ ଘଣ୍ଟାର ଉଡ଼ାଣ ପରେ ଯାନଟି ଡି.ଏଫ୍.ଡବ୍ଲ୍ୟୁ ଏୟାରପୋର୍ଟରେ ଅବତରଣ କଲା । ଏହି ଏୟାରପୋର୍ଟଟି ଆମେରିକାର ଦ୍ୱିତୀୟ ବୃହତ୍ତମ ଏବଂ ଆମେରିକାନ୍ ଏୟାର୍ ଲାଇନ୍‌ସ ପ୍ଲେନ୍‌ର ସବୁଠୁ ବଡ଼ ଏୟାରପୋର୍ଟ । ଭାରତୀୟମାନଙ୍କ ସହ ମିଶି ବିଦେଶୀ ନାଗରିକ ଭାବେ ଇମିଗ୍ରେସନକୁ ଗଲି ଓ ତା' ପରେ ଲଗେଜ୍ କ୍ଲେମ୍ । ଆମରିକାରେ ଥିବା ଝିଅ ଅସିତା ଓ ଓଡ଼ିଶାରେ ଥିବା ଝିଅମାନେ ତାଗିଦ୍ କରିଥିଲେ-'ତୁ ସୁଟ୍‌କେଶ୍ ଟେକିବୁ ନାହିଁ ଜମା । ଓଜନିଆ ଜିନିଷ । ସେଠାରେ ଲଗେଜ୍ ବୋହିବା ଲୋକ ଥାଆନ୍ତି, ଉଠାଇବେ, ଟ୍ରଲିରେ ରଖିବେ ଓ ଡଲାର ନେବେ । ତାଙ୍କ ସାହାଯ୍ୟ ନେବୁ ।' ଯୋଗକୁ ଇଂଲିଶ୍ ଯୁବକଟିଏ ମିଳିଲା । ସେ ଜଣେ ନିଗ୍ରୋ ମହିଳାଙ୍କର ଅନେକ ଲଗେଜ୍ ଭଡ଼ାରେ ଉଠାଉଥିଲା । ମୁଁ କହିଲାରୁ ମୋର ଦୁଇଟି ସୁଟ୍‌କେଶ୍ ଟ୍ରଲିରେ ଉଠାଇଦେଲା । ବାହାରକୁ ଆସିଲା ପରେ ଡଲାର ନବାକୁ ମନାକଲା । କାରଣ ବଡ଼ ଲଗେଜ୍ ଧରି ସେ ଚାଲିଥିଲା । ମୁଁ ଜିନିଷତକ ଠେଲି ଠେଲି ଆସିଲି । ବାହାରକୁ ଆସିବା ପୂର୍ବରୁ ପୁଣି ଚେକିଂ ହେଲା । ଏଥର ପୁଣି ଆମେରିକାନ୍ ଇଂଲିଶ୍ ବୁଝି ହେଉ ନଥାଏ । ସେଇ ଇଂଲିଶ ପିଲାଟି କହିବାରୁ ବୁଝିହେଲା ।

ବାହାରକୁ ବାହାରିଲା ମାତ୍ରେ ରଞ୍ଜନ(ଜ୍ୱାଇଁ) ଆଗେଇ ଆସିଲେ । ସେମାନଙ୍କ ବନ୍ଧୁ ଦମ୍ପତିଟିଏ ବି ଆସିଥାନ୍ତି । ଝିଅ ଓ ନାତି ଥାଆନ୍ତି । ରଞ୍ଜନ କହିଲେ 'ଆପଣଙ୍କ ପ୍ଲେନ୍‌ରୁ ଓହ୍ଲାଇବା, ଭିତରକୁ ଆସିବା, ଚେକିଂ, ଲଗେଜ୍ କ୍ଲେମ୍, ସବୁ ଆମେ ଦେଖି ପାରୁଥିଲୁ ଏଇ ଟି.ଭି.ରେ ।' ବାଃ ଭଲ ତ ! ଅପେକ୍ଷା ହଲ୍‌ରେ ଟିଭି ଲାଗିଛି । ବାହାରେ ପ୍ରଚଣ୍ଡ ଖରା, ଗାଡ଼ି ଶୀତତାପ ନିୟନ୍ତ୍ରିତ-ପଇଁଚାଳିଶ ମିନିଟ୍‌ର ଡ୍ରାଇଭ୍ । ତା' ପରେ

ଆର୍ଲିଂଟନ୍‌ର ସେଇ ଫ୍ଲାଟ୍-ପ୍ରଚୁର ରଙ୍ଗ ବେରଙ୍ଗର ଛେନାଫୁଲରେ ଭର୍ତ୍ତି ଗଛ ଓ ଅତ୍ୟନ୍ତ ପରିଚ୍ଛନ୍ନ ସବୁଜ ଲନ୍ । ରାସ୍ତା ସାରା ଆମେରିକାର ପରିଚ୍ଛନ୍ନତା, ଐଶ୍ୱର୍ଯ୍ୟ ଓ ଶୃଙ୍ଖଳା ସ୍ପଷ୍ଟ ହୋଇ ଯାଉଥାଏ । ଝିଅ ଖାଲି କହି ଚାଲିଥାଏ-'ତୁ ସତରେ ଆସି ପହଞ୍ଚିଗଲୁ, ମୁଁ ବିଶ୍ୱାସ କରି ପାରୁନାହିଁ । ଗତକାଲି ରାତିସାରା ମୁଁ ଶୋଇନାହିଁ । ମୋର ମନ ତୋ ସହିତ 'ଲୁଫ୍‌ଥାନ୍‌ସା'ରେ ଯାତ୍ରା କରୁଥିଲା । ଦେହଟା ଖାଲି ଫ୍ଲାଟ୍ ଭିତରେ ଥିଲା ।' ଆଠ ବର୍ଷର ନାତି ଅଧା ଚିହ୍ନା ଆଖିରେ ଚାହୁଁଥାଏ । ଓଡ଼ିଆ ତ ଭଲ ବୁଝୁ ନଥାଏ, କହିପାରୁ ନଥାଏ ଆଦୌ । କିନ୍ତୁ ମୋ ଦ୍ୱାରା ଉଚ୍ଚାରିତ ଇଂରାଜୀ ବୁଝିପାରୁଥାଏ ଓ ପ୍ରସନ୍ନ ବଦନରେ ମୁଣ୍ଡ ଟୁଙ୍ଗାରୁଥାଏ ଖାଲି ।



# କୁବେରପୁରୀର ପଥପ୍ରାନ୍ତେ-(ଏକ)

ଜୁଲାଇ ତିନି ତାରିଖ ଦିନ ଗୋଟାଏ ବେଳେ ଆମେରିକାନ୍ ଏୟାର ଲାଇନ୍‌ସର ପ୍ଲେନ୍ ଓହ୍ଲାଇଲା ନ୍ୟୁୟର୍କର ପ୍ରସିଦ୍ଧ ଲା' ଗାଡ଼ିଆ ଏୟାର ପୋର୍ଟରେ, ଯେଉଁଠି କବି ଅମରେନ୍ଦ୍ର ଖଟୁଆ ଆମକୁ ଦେଖା କରିବାର ଥିଲା । ଆମେ ତାଙ୍କ ଘରେ ତିନି ଚାରି ଦିନ ପାଇଁ ଅତିଥି ହେବୁ । ଆମେ ଲଗେଜ୍ କ୍ଲେମ୍‌କୁ ଆସୁ ଆସୁ ଜଣେ ଭଦ୍ରବ୍ୟକ୍ତି ଆଗେଇ ଆସିଲେ-'ଆର୍ ୟୁ ମିସେସ୍ ଶତପଥୀ ?' ଭଦ୍ରବ୍ୟକ୍ତି ପ୍ରୌଢ଼, ଭାରତୀୟ, ନ୍ୟୁୟର୍କ ଏମ୍ବାସିର ଜଣେ ଅଫିସର୍ । ବାସ୍, ଏଥରକ ଘର ମୁହାଁ । ଟ୍ୟାକ୍ସିରେ । ନ୍ୟୁୟର୍କର ମାନ୍‌ହାଟନ୍‌ଠାରେ ଏକ ସୁଦୃଶ୍ୟ, ସୁଉଚ୍ଚ ଟାୱାରର ଷୋଳ ମହଲାରେ ଅମରେନ୍ଦ୍ରଙ୍କ ଘର । ତଳେ, ଦ୍ୱାର ପାଖରେ ଠିଆ ହୋଇଥାଏ ଦୀର୍ଘାଙ୍ଗ କିଶୋରଟିଏ । ଆମେ ସିନା ତାକୁ ଚିହ୍ନି ନଥାଉ, ଟ୍ୟାକ୍ସି ରହିବା କ୍ଷଣି ଆମକୁ ସ୍ୱାଗତ କରି ସେ ଆମ ଲଗେଜ୍ ଉଠାଇଲା । ସେ ଅମରେନ୍ଦ୍ରଙ୍କ ଏକମାତ୍ର ପୁଅ ଅରୁଣାଭ । ଆଜି ଅଫିସ୍ ଅଛି, ଅମରେନ୍ଦ୍ର ଅଫିସ୍‌ରେ । ଦିନ ସାଢ଼େ ଗୋଟାଏ । କବାଟ ଖୋଲି ତାଙ୍କ ପତ୍ନୀ ଅମ୍ବିକା ଆମକୁ ସ୍ୱାଗତ ଜଣାଇଲେ । ମୋ ସାଙ୍ଗରେ ଥିଲେ ମୋର ତୃତୀୟଝିଅ ଅସିତା(କନି), ନାତି ଅକ୍ଷର(ପେପୁ) ଓ ମୁଁ ।

ଛଅଟା ବେଳକୁ ଅଫିସ୍ ଫେରନ୍ତା ଅମରେନ୍ଦ୍ର । ସେ ଭାରତ ପକ୍ଷରୁ ନ୍ୟୁୟର୍କ ଏମ୍ବାସିରେ ମିନିଷ୍ଟର ଅଛନ୍ତି, ଅନେକ ସ୍ୱତନ୍ତ୍ର ଦାୟିତ୍ୱରେ । 'ତୁମ ଅଫିସ୍ ଲୋକ କେମିତି ନିର୍ଭୁଲଭାବେ ଆମକୁ ଠାବକଲେ, ପୁଣି ତତ୍‌କ୍ଷଣାତ୍ ?' ମୋ ପ୍ରଶ୍ନରେ ଉତ୍ତରରେ ଅମରେନ୍ଦ୍ର କହିଲେ - 'ମୁଁ କହିଦେଇଥିଲି, ଜଣେ ଅତି ଗୋରା ଭଦ୍ର ମହିଳା, ଶାଢ଼ି ପିନ୍ଧି, ଆଉ ଜଣେ ୟଙ୍ଗ ଭଦ୍ରମହିଳା, ମାଆ ଝିଅ ଉଭୟଙ୍କ ମୁହଁ ଗୋଲ ଓ ଆଖି ବଡ଼ ବଡ଼ ଆଉ ତାଙ୍କ ସାଙ୍ଗରେ ଆଠବର୍ଷର ବାଳକଟିଏ ଆସିବେ ।' ମୁଁ ମନେ ମନେ ଯୋଗକଲି, 'ଜଣେ ବୟସ୍କା ଓ ବାଙ୍ଗରୀ ଭଦ୍ରମହିଳା ।'

ଅମରେନ୍ଦ୍ରଙ୍କ ବୈଠକ ଘର ପୂର୍ବାନଦୀ (ଇଷ୍ଟ ରିଭର୍) କୁ ସାମ୍ନାକରି । ନଦୀରେ ଛୋଟ ଛୋଟ ଲଞ୍ଚ, ଉଚ୍ଛୁଳୁ ମୁଚ୍ଛୁଳୁ ପାଣି । ସୁସଜ୍ଜିତ କୋଠରୀରେ ଚା' ପାନ ପର୍ବ । ଏବେ ଆମର ବୁଲିବାକୁ ଯିବା କଥା । ସାରାଟା ମାନ୍‌ହାଟନ୍, ବେଶି ଦୂର ନୁହେଁ, ଚାଲି ଚାଲି ବୁଲିଲେ ଭଲ ଲାଗିବ । ନ୍ୟୁୟର୍କରେ ଗାଡ଼ି ପାର୍କିଂ ବଡ଼ ଝାମେଲା । ତେଣୁ ଆମେ ଚାଲିଲୁ-କଲିକତା ଫୁଟ୍‌ପାଥ୍ ଭଳି ପ୍ରାୟ- କେବଳ ତା'ଠାରୁ ଯଥେଷ୍ଟ ପରିଚ୍ଛନ୍ନ ।

ସୁସଜ୍ଜିତ ବଜାର-ଫୁଲର, ନାନା ଜାତିର, ସୁନ୍ଦର, ସତେଜ ଫୁଲ । ମିନିଷ୍ଟରଙ୍କ ଠାରୁ ଶୁଣିଲି, ଏ ସବୁ ବେଶି ଚାଇନା ଓ ବାଂଲାଦେଶରୁ ଆମଦାନୀ କରାହୋଇଛି । ପ୍ରକୃତରେ ଚାଲି ଚାଲି ବୁଲିଲେ ଯେଉଁ ପ୍ରକାର ସ୍ୱଷ୍ଟତା ଓ ସତ୍ୟତା ଆଖିରେ ପଡ଼େ, ଗାଡ଼ିରେ ଗଲେ ତା' ପଡ଼େ ନାହିଁ । ଆମେ ଚାଲି ଚାଲି ଗଲୁ 'ଏମ୍ପାୟାର ଷ୍ଟେଟ୍ ବିଲ୍‌ଡିଂ' ଯାଏ । ଅଳ୍ପ ଦୂରରୁ ସୁନ୍ଦର ଦିଶୁଥାଏ ତା'ର ଆଲୋକ ସଜ୍ଜା ଓ ସୁଉଚ୍ଚ ତୋରଣ । ପୁଣି, ଶୀର୍ଷରୁ ହାତେ ଛଡ଼ାରେ ସତେ କି ଫାଳେ ଜହ୍ନକୁ କିଏ ଅଠାମାରି ଲଗେଇ ଦେଇଥାଏ । ସେଦିନ ଅଷ୍ଟମୀ ତିଥି । ବିଲ୍‌ଡିଂ ବାହାରେ ଆମକୁ ଛାଡ଼ି ଅମରେନ୍ଦ୍ର କହିଲେ, ବୁଲାବୁଲି ସାରି ଆପଣ ସାଢ଼େ ଆଠଟା ସୁଦ୍ଧା ବାହାରନ୍ତୁ । ମୁଁ ସାମ୍ନା ରାସ୍ତାରେ ଠିଆ ହୋଇ ଅପେକ୍ଷା କରିଥିବି । ଆମେ ଭିତରକୁ ଗଲୁ । ରାସ୍ତାରୁ ଦେଖିଥିଲୁ ତା'ର ଉଚ୍ଚତା ଓ ଆକାର, ସବୁ ଅଭିନବ । ଅଭ୍ୟନ୍ତର ବେଶ୍ ସୁସଜ୍ଜିତ, ଆକର୍ଷଣୀୟ । ଆମେ ତା' ଭିତରେ ବୁଲିଲୁ, ଆପାରେଣ୍ଟ ପ୍ଲେନ୍ ରାଇଡ୍‌ରେ ବି ଗଲୁ । ବିଲ୍‌ଡିଂର ବାଲ୍‌କୋନିରେ ଠିଆ ହୋଇ ହଡ୍‌ସନ୍ ନଦୀ ଓ ସୁଦୂରର ଉଚ୍ଚ ଟାୱାର ଗୁଡିକ ଦେଖିଲୁ । ଆପାରେଣ୍ଟ ରାଇଡ୍ ବେଶ୍ ଚିତ୍ତାକର୍ଷକ । ବେଳେ ବେଳେ ଭୟ ବି ଲାଗୁଥାଏ । ଆମେ ବସିଥାଉ ଗୋଟିଏ କୋଠରୀରେ , ଅଥଚ ଲାଗୁଥାଏ ସେ କୋଠରୀ ଏରୋପ୍ଲେନ୍ ଭଳି ଉଡୁଛି - ସାରା ନ୍ୟୁୟର୍କ ସହର ଉପରେ ଉଡୁଛି । କେବେ ବା ନଦୀ ମଧ୍ୟରେ ପଶିଯିବାର ଅନୁଭୂତି । ଗୋରା, କଳା ଲୋକ ମିଶାମିଶି ସବୁଆଡ଼େ । ମୋ ଝିଅ ମୋତେ ତାଗିଦ୍ କରିଥାଏ, 'ଖବରଦାର୍, କୋଉଠି ହେଲେ 'ନିଗ୍ରୋ' ବା 'ବ୍ଲାକ୍' ଶବ୍ଦ ଉଚ୍ଚାରଣ କରିବୁ ନାହିଁ । ବିପଦ । କହିବୁ କଳାଲୋକ ।'

ବିଲ୍‌ଡିଂ ବୁଲି ସାରିଲା ବେଳକୁ  ନିର୍ଦ୍ଧାରିତ ସମୟ ପାଖାପାଖି । ପ୍ରବେଶ ଦ୍ୱାର ପାଖ ବିପରୀତରେ ଅମରେନ୍ଦ୍ର । ତାଙ୍କ ସହିତ ଆଉ ଦୁଇଜଣ ଭଦ୍ରଲୋକ । ପରିଚିତ ହେଲୁ । ଜଣେ ଉତ୍ତର ପ୍ରଦେଶୀ; ଇକନମିକ୍ସ ଟାଇମ୍‌ସ୍‌ର ପୂର୍ବତନ ସଂପାଦକ, ଆଉ ଜଣେ ଓଡ଼ିଆ, ଭାରତୀୟ ଚାମ୍ବର ଅଫ୍ କମର୍ସର ଅଫିସର ପ୍ରଶାନ୍ତ ବିଶ୍ୱାଳ । ଏଥର ଆମେ ସମସ୍ତେ ଏକ ବିରାଟ 'ଥାଇ' ହୋଟେଲକୁ ଗଲୁ । ଡିନର୍ ସେଇଠି ଖିଆ ହେବ । ସେଠାରେ ଉତ୍ତର ପ୍ରଦେଶ ଭଦ୍ରଲୋକଙ୍କ ସହ ଆଳାପ ହେଲା ଓ ଓଡ଼ିଆ କବିତା ସଂପର୍କରେ ତାଙ୍କର ପ୍ରଶ୍ନ ସବୁକୁ ମତେ ଇଂରାଜୀ ଓ ହିନ୍ଦୀ ମିଶା ଭାଷାରେ ଉତ୍ତର ଦେବାକୁ ପଡ଼ିଲା । ଫେରିଲାବେଳକୁ ରାତି ଦଶଟା ପ୍ରାୟ । ଚାଲି ଚାଲି ଫେରୁଥାଉ । ବନ୍ଦ ଘର, ବନ୍ଦ ଦୋକାନ ବଜାର । ସାମ୍ନାରେ ସେତେବେଳକୁ ଜଣେ

ଜଣେ ନାରୀ ବା ପୁରୁଷ, କଳା ବା ଗୋରା ଶୋଇ ରହିଥାନ୍ତି ବା ଶୋଇବାର ଉପକ୍ରମ କରୁଥାନ୍ତି- ତଳେ ବା କାଠ ବେଞ୍ଚ ଥିଲେ, ତା' ଉପରେ । ଅମରେନ୍ଦ୍ର ଜଣାଇଲେ, ଏମାନେ ହୋମ୍‌ଲେସ୍ । ବିଚରାଗୁଡ଼ାଙ୍କୁ ପୋଲିସ ବି ଶୁଆଇ ଦିଏନାହିଁ । ଘଣ୍ଟେ ଦି' ଘଣ୍ଟା ପରେ ଥରେ ଲେଖାଁ ଆସେ ଓ ଏମାନଙ୍କୁ ଶୋଇଲା ଜାଗାରୁ ନିକାଳି ଦିଏ । କିଏ ପାର୍କ ବା କିଏ ଆଉ କେଉଁଠି ପୁଣି ଯାଇ ଶୋଇବେ । ଏମିତି ସାରାରତି ଚାଲିଥାଏ । ମତେ ବିଚଳିତ ଲାଗିଲା । ଏତେ ସୁନ୍ଦର ଗୋରା ଭଦ୍ରମହିଳା, ଭଦ୍ରଲୋକ, କଳା ବି ! ଏମାନଙ୍କୁ ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ ? ଯେ କୁବେର ଦେଶ, ଏଠି ପୁଣି ଏଇ ଦାରିଦ୍ର୍ୟ ! ମୁଣ୍ଡ ତଳେ ଖଣ୍ଡେ ଛୋଟ ବ୍ୟାଗ, ମୁଣ୍ଡ ଉପରେ ଜୋତା ହଳକ, କାହାର ବା ପିଇବା ପାଣି ବୋତଲଟେ । ଯେ ତ ଗରମ ଦିନ, ଶୀତଦିନ ପୁଣି ଅଛି ! 'ବୁଝିଲେ, ଦେଶରୁ ଏମାନେ ଟଙ୍କା ପାଆନ୍ତି, ସପ୍ତାହକୁ ଥରେ, ସାରା ସପ୍ତାହ ଚଳିବା ପାଇଁ । ମାତ୍ର ଦୁଇ ତିନି ଦିନ ଭିତରେ ସେତକ ଟଙ୍କା ଖାଇ ପିଇ ଉଡ଼ାଇ ଦିଅନ୍ତି । ସେମାନେ ଆସନ୍ତା କାଲି କଥା ଭାବନ୍ତି ନାହିଁ । କେବଳ ଆଜି, ଏଇଲାଗେ, ବର୍ତ୍ତମାନ-ଏମାନଙ୍କ ପାଇଁ ସତ୍ୟ । ଆସନ୍ତାକାଲିକୁ ପରୱା ନାହିଁ । ହଉ ପଛେ ରାସ୍ତାକଡ଼ । ଆଉ ଏମାନଙ୍କ ପାଇଁ ସ୍ୱତନ୍ତ୍ର ଘର ବି ରହିଛି, ସେଠି ଜାଗା ଧରନ୍ତି ନାହିଁ, କେହି କେହି ବି ସେଠାକୁ ଯାଆନ୍ତି ନାହିଁ । ଅତଏବ ଏଇ ଅବସ୍ଥା ।' ହସ ହସ ହୋମ୍‌ଲେସ୍ ଲେଡ଼ି- ଅମରେନ୍ଦ୍ରଙ୍କର ବିଶ୍ଳେଷଣ ।

ରାତିରେ ଗପସପ କରି ଶୋଇବାକୁ ଗଲାବେଳକୁ ବହୁତ ବିଳମ୍ବ । ରାତି ତିନିଟାରେ ଝର୍କାଦେଇ ଅନାଇଦେଲି ଯେ ମାନ୍‌ହାଟନ୍‌ର ରାସ୍ତାରେ ଶହଶହ ଗାଡ଼ିର ଆଲୁଅ ଝଲମଲ । ଏଠି କ'ଣ ରାତି ନାହିଁ -ଦିନଭଳି ରାସ୍ତାଘାଟରେ ଏତେ ବେଶି ସଂଖ୍ୟାରେ ଗାଡ଼ି ଚାଲୁଛି ? ପ୍ରକୃତରେ ରାତି ନାହିଁ । ମାନ୍‌ହାଟନ୍‌ର ଗୋଟେ ଅଞ୍ଚଳ ସବୁବେଳେ ଦିନ ପରି ଆଲୋକୋଜ୍ଜ୍ୱଳ, କେବେ ସେ ଆଲୋକ ଲିଭେ ନାହିଁ । ଜୁଲାଇ ଚାରି ତାରିଖ ଓ ପାଂଚ ତାରିଖ କଟେ ନ୍ୟୁଜର୍ସି ରାଜ୍ୟର ପ୍ରିନ୍‌ସ୍‌ଟନ୍ ସହରର 'ଡୋରାଲ୍ ଫରେଷ୍ଟାଲ୍' ହୋଟେଲରେ । ସେଠାରେ ଓଡ଼ିଆ ସୋସାଇଟି (O.S.A) ର ସମ୍ମିଳନୀ ଚାଲିଥାଏ ।



# କୁବେରପୁରୀର ପଥପ୍ରାନ୍ତେ- (ଦୁଇ)

ଚାରି ତାରିଖ ସକାଳ ଆଠଟା । ଆମେ ନ୍ୟୁଜର୍ସି ଅଭିମୁଖେ ବାହାରିଲୁ । ଅମରେନ୍ଦ୍ର ଆମକୁ ପେନ୍‌ସ୍ ଷ୍ଟେସନ୍‌ରେ ଟ୍ରେନ୍‌ରେ ବସାଇଦେଲେ । ଘଣ୍ଟାକର ରାସ୍ତା ନ୍ୟୁୟର୍କରୁ ନ୍ୟୁଜର୍ସି । ଟ୍ରେନ୍‌ରେ ଡେଲି ପାସେଞ୍ଜର୍ ବହୁତ ଲୋକ, ସୁବିଧାଜନକ ବୋଲି । ଓଡ଼ିଶା ସୋସାଇଟି ଅଫ୍ ଆମେରିକାନ୍‌ସ୍‌ର ଆୟୋଜନ କଥା ଅନ୍ୟତ୍ର କହିବି । ପାଂଚ ତାରିଖ ମୋର କବିତା ଅଧିବେଶନ ଥିଲା ପରେ ପରେ ଅମରେନ୍ଦ୍ର ସେଠାରେ ପହଞ୍ଚିଲେ । ମୋ ଝିଅ ପଚାରିଲା, 'ଅମରେନ୍ଦ୍ର ଭାଇ, ଆପଣ ତ ଆଦୌ ଓଡ଼ିଆ ଶୁଣିବାକୁ ପାଉନଥିବେ । ଭାବୀ ଯେ ପଞ୍ଜାବୀ, କବିତା ଲେଖୁଛନ୍ତି, ପୁଣି ଅସୁବିଧା ହେଉ ନଥିବ ?' ମୁଁ କହିଲି, 'ଚାରି ପାଖରେ ଥିବା ଲୋକେ କେହି ନ ପଢ଼ିଲେ ନ ଶୁଣିଲେ, କବିତା ଲେଖିବାଟା ନିଜକୁ ଅନ୍ଧାର ଘରେ ବସି ଚିତ୍ର ଆଙ୍କିଲା ପରି ଲାଗିବ ନାହିଁ କି ?' ତାଙ୍କର ଉତ୍ତର, 'ହଁ ମୁଁ ଓଡ଼ିଆ ଭାଷାକୁ ନିଜ ଭିତରେ ବଞ୍ଚାଇ ରଖିଚି, ସ୍ମୃତିରୁ ଆହରଣ କରୁଛି କବିତା ଲେଖିବାର ଶକ୍ତି ।'

ଛଅ ତାରିଖ ସକାଳୁ ଫେରିଲୁ ମାନ୍‌ହାଟନ୍ । 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ଦେଖିବା କଥା । ଅମେରେନ୍ଦ୍ର ଆମକୁ 'ଫେରି'ଘାଟରେ ଛାଡ଼ିଦେଲେ । ଆମେ 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ଓ 'ଏଲିସ୍ ଆଇଲାଣ୍ଡ' ଦେଖି ସନ୍ଧ୍ୟା ଛଅଟା ସୁଦ୍ଧା ଫେରିଲୁ । ଅନେକ ଫଟୋ ନେଲୁ-କାମ୍‌କର୍ଡରରେ ବି ଅଡ଼ିଓ ଛବି ଉଠାଇଲୁ । 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ପାଖରେ ଠିଆହୋଇ ଅନାଇଲେ ହଡ୍‌ସନ୍ ନଦୀର ଆର କୂଳରେ ଦିଶେ ଗ୍ରାଉଣ୍ଡ ଜିରୋ-ଯେଉଁଠି ଦୁଇଟି ଟାୱାର ଭୁଷୁଡ଼ିପଡ଼ିଥାଏ ସନ୍ତ୍ରାସ କବଳରେ । ଫେରିକି ମାନ୍‌ହାଟନ୍‌ରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଛଅଟା । ଅଳ୍ପ ସମୟ ଭିତରେ ପ୍ରସ୍ତୁତ ହୋଇ ଆମେ ବାହାରିଲୁ ପଦଯାତ୍ରାରେ । ସେ ସନ୍ଧ୍ୟାରେ ଆମେ ଦେଖିଲୁ ୟୁ.ଏନ୍.ଓ ଭବନ,ଏମ୍ପାୟାର, ପାର୍କ ଇତ୍ୟାଦି । ରାସ୍ତା କଡ଼ରେ ସ୍ଥାନେ ସ୍ଥାନେ ବଡ଼ ବଡ଼ ଗର୍ତ୍ତ ହୋଇ ତା ଉପରେ ଶକ୍ତ ଲୁହାର ଜାଲି ଢଙ୍କା ହୋଇଥାଏ । ସେଥିରୁ ଧୂଆଁ ବାହାରୁଥାଏ । ବୁଝିଲି, ଭୂଇଁତଳ ଟ୍ରେନ୍‌ର ଏଇ ଧୂଆଁ-ନ ହେଲେ ସେସବୁ ଯିବ କୁଆଡ଼େ ? ଅମରେନ୍ଦ୍ରଙ୍କ ଉତ୍ତର । ରାସ୍ତାଘାଟରେ ଭେଟିଲୁ ପ୍ରବଳ ମୋଟା ନାରୀ ଓ ପୁରୁଷ, ଗୋରା ଓ କଳା ଲୋକ । ନ ଦେଖିଲେ ସେମାନଙ୍କ ଚେହେରା କେହି ବିଶ୍ୱାସ କରି ଯିବ ନାହିଁ । ଏତେ ମୋଟା ଲୋକ ସ୍ୱଚ୍ଛନ୍ଦରେ ଚଳପ୍ରଚଳ କରୁଛନ୍ତି ! ମଣିଷ ଦେହରେ ପୁଣି ଏତେ ମାଂସ ଏତେ ଚର୍ବି ଲାଗିପାରେ ? ସ୍ଥୂଳତାର ଯେ କି କ୍ରୁର ଅଭିଶାପ ? ବୁଝିଲି, ପ୍ରାଚୁର୍ଯ୍ୟର ଦେଶ ଏଇ

ଆମେରିକାରେ ସୁଲଭ ଖାଦ୍ୟ ଓ ଖାଦ୍ୟ ଲୋଭ ହିଁ ଲୋକଙ୍କୁ ମୋଟା କରିଛି-ଏଠାକାର ପଇଁଚାଳିଶି ପ୍ରତିଶତ ଲୋକ ସ୍ଥୂଳକାୟ ।

ଆମେ ଚାଲି ଚାଲି ଯାଉଥିବା ରାସ୍ତା କଡ଼ରେ କେତେ କେଜାଣି ଚିତ୍ରଶିଳ୍ପୀ, ବିଭିନ୍ନ ସ୍ଥାନରେ ବସି ରହିଥାଆନ୍ତି । କାନ୍‌ଭାସ୍, ରଙ୍ଗ ତୂଳୀ ଓ ଚିତ୍ରକର । ପାଖରେ ଟୁଲ୍ ଉପରେ ଶିଶୁ, କିଶୋର, ଯୁବକ, ଯୁବତୀ, ପ୍ରୌଢ଼ କେହି ହେଲେ ବସିଥାନ୍ତି । ଚିତ୍ରକର ତାଙ୍କୁ ଅନାଇ ଆଙ୍କିବାରେ ଲାଗିଥାନ୍ତି । ଅଙ୍କା ସରିଲେ ସଂପୃକ୍ତ ଲୋକେ ସେ ଚିତ୍ରଟି କିଣି ନେବେ । ବିଚିତ୍ର ଲାଗିଲା ମତେ । ଶୁଣିଥିଲି, ମୁଁ କେବେ ଏ ସବୁ ସ୍ୱଚକ୍ଷୁରେ ଦେଖି ନଥିଲି । ଆଜି ନାତି ପେପୁ ଆମ ସହିତ ନଥିଲା । ସେ ଅମ୍ବିକାଙ୍କ ସହିତ ଦୋଷ୍ଟି ବନେଇ ଘରେ ରହିଥିଲା । କାରଣ ସେ ଚାଲିବାକୁ ଇଚ୍ଛା କଲା ନାହିଁ । ମଧ୍ୟାହ୍ନରେ ବି ବହୁତ ଚାଲିବାକୁ ହୋଇଥିଲା । କିନ୍ତୁ ଆଶ୍ଚର୍ଯ୍ୟ ହେଲି ଯେ, ମୋତେ ଟିକେ ବି କ୍ଲାନ୍ତ ଲାଗୁ ନଥିଲା । ସାରା ମଧ୍ୟାହ୍ନ 'ଫେରି'ରେ ଯାଇ ଦୁଇଟି ଦର୍ଶନୀୟ ସ୍ଥାନ ବୁଲିକି ମଧ ମୋର ଚାଲିବାର ଆଗ୍ରହ କମି ନଥିଲା । ଘରେ ଗପସପ କରି ଶୋଉ ଶୋଉ ରାତି ପ୍ରାୟ ବାରଟା । ରାତି ଚାରିଟା ପୂର୍ବରୁ ଆମେ ଘର ଛାଡ଼ିବୁ-ସକାଳ ଛଅଟାରେ ଉଡାଣ, ନ୍ୟୁୟର୍କରୁ ବଫ୍‌ଲୋ । ତେଣୁ ରାତି ଚାରିଟାବେଳେ ଏୟାରପୋର୍ଟରେ ପହଞ୍ଚିବାକୁ ହବ । ଫ୍ଲାଇଟ୍ ଟିକେଟ୍ ଗୁଡ଼ିକ ସକାଳୁ ସକାଳୁ ଅପେକ୍ଷାକୃତ ଶସ୍ତା ବୋଲି ଆମେ ସେହି ଫ୍ଲାଇଟ୍ ନେଇଥିଲୁ ।

ଅତଏବ ସାଢ଼େ ତିନିଟାରେ ଆମେ ଉଠିବୁ । ମତେ ବ୍ୟସ୍ତ ଲାଗୁଥାଏ । ଅମରେନ୍ଦ୍ରଙ୍କର ଦିନରେ ଅଫିସ୍, ସନ୍ଧ୍ୟାରେ ଆମ ସହ ଭ୍ରମଣ, ପୁଣି ଅଧ ରାତିରେ ଶୋଇ ନପାରିବା, ଆମକୁ ବିଦାୟ ଦେବା, ତାଙ୍କ ପାଇଁ ବଡ଼ କଷ୍ଟକର ହେବ । ମୁଁ ସଙ୍କୋଚ କରି କହିଲି, 'ତୁମ ପରିଚାରକ ଆମକୁ ଟ୍ୟାକ୍ସିରେ ବସାଇଦବ । ତୁମର ନିଦରୁ ଉଠିବା ଦରକାର ନାହିଁ ।' ସେ ଅଳ୍ପ ହସି କହିଲେ-'ନାଇଁ, ନାଇଁ ମୋର କିଛି ଅସୁବିଧା ହବନି ।' ପ୍ରକୃତରେ ରାତି ସାଢ଼େ ତିନିଟାରେ ସବା ଆଗ ଉଠିପଡନ୍ତି ଅମରେନ୍ଦ୍ର । କେବଳ ସାତ ତାରିଖ ଦିନ ନୁହେଁ, ଚଉଦ ତାରିଖ ଡଲାସ ଫେରନ୍ତା ଫ୍ଲାଇଟ୍ ମଧ ଥାଏ ସକାଳ ଛଅଟାରେ । ସେ ଉଠି ପଡ଼ିଲା ପରେ ଆମେ ଉଠୁ । ଖଣ୍ଡେ ହ୍ୟାପ୍ ପ୍ୟାଣ୍ଟ ଓ ଗଞ୍ଜି ପିନ୍ଧି, ନିଦ ମଳ ମଳ ଆଖିରେ ସେ ଆମର ଲଗେଜ୍ ଉଠାଇ ନିଅନ୍ତି । ବାରଣ ମାନନ୍ତି ନାହିଁ । ମତେ କାହାକୁ ନିଦରୁ ଉଠାଇ ଦେବାକୁ ଭଲ ଲାଗେନି । ଅଥଚ, ଅମରେନ୍ଦ୍ର ଆଲାର୍ମ ଦେଇଥାନ୍ତି କି ତାଙ୍କ ଏମ୍ବାସିରୁ କେହି ଫୋନ୍ କରି ଉଠାଇ ଦିଏ କେଜାଣି ! କାରଣ, ପ୍ରତ୍ୟେକ ଫ୍ଲାଇଟ୍ ପାଇଁ ପାହାନ୍ତାରେ, ସେ ତାଙ୍କ ଓଡ଼ିଆ ଅତିଥି,

ମାଆ, ଝିଅ ଓ ନାତିଙ୍କର ଜିନିଷପତ୍ର ଧରି ଲିଫ୍ଟରେ ତଳକୁ ଆସନ୍ତି । ଆଗରୁ ଏମ୍ୟାସିର ବିଶ୍ୱସ୍ତ ଟାକ୍ସିକୁ ମଗାଇଥାନ୍ତି । ତା'ର ଭଡ଼ା କେତେ ଆମକୁ କହିଦେଇଥାଆନ୍ତି । ଟାକ୍ସିରେ ବସାଇଲା ବେଳେ କହନ୍ତି, 'ପହଞ୍ଚି ଫୋନ୍ କରି ଜଣାଇ ଦେବେ ମୋତେ ।'

ତାଙ୍କର ଏତେ ବେଶି ଆତ୍ମୀୟତା ଓ ଯତ୍ନରେ ଆମେ ବାନ୍ଧି ହେଇଗଲୁ । ସତେକି, ସେ ଆମର ଅତି ନିଜର କେହି ! ଅଥଚ ଯା ପୂର୍ବରୁ ସେ ମୋର ଏତେ ବେଶି ପରିଚିତ ବି ନଥିଲେ । ଖାଲି ଦିଲ୍ଲୀରେ କହିଥିଲେ ଯେ, 'ଆପଣ ନ୍ୟୁୟର୍କ ଆସିଲେ, ମୋ ପାଖକୁ ନିଶ୍ଚେ ଆସିବେ ।' ଆମେରିକାର ବିଶିଷ୍ଟ ଓଡ଼ିଆ ଡଃ ଦିଗମ୍ବର ମିଶ୍ର କହିଲେ, 'ଆପଣ ତ ଖାଲି ବଡ଼ ବଡ଼ ଲୋକଙ୍କ ଘରେ ଅତିଥି ହେଲେ- ନ୍ୟୁୟର୍କରେ ମି.ଖଟୁଆ, ୱାଶିଂଟନ୍‌ରେ ଶୁଭକାନ୍ତ ବେହେରା-ଏଇସବୁ ଆପଣଙ୍କ ଯାତ୍ରା ଯୋଜନା, ଆମ ପାଖକୁ ଆସିବେ ନାହିଁ ?' ତାଙ୍କର ଓ ତାଙ୍କ ପତ୍ନୀଙ୍କର ବହୁ ଆଗ୍ରହ ସତ୍ତ୍ୱେ ମୁଁ ସେଠାକୁ ଯାଇପାରି ନାହିଁ, ସତ । ମାତ୍ର ମୁଁ ତାଙ୍କୁ ଉତ୍ତର ଦେଲି, 'ଦେଖନ୍ତୁ, ବଡ଼ ଛୋଟ ମୁଁ ଭାବିନାହିଁ । ମୋର ଓ ମୋ ଝିଅ କ୍ୱାଇଁଙ୍କର କେତେ କେଜାଣି ବନ୍ଧୁ ସାରା ଆମେରିକାରେ ବିଛେଇ ରହିଛନ୍ତି । ମୁଁ ତ ଉପଯୁକ୍ତ ଯୋଗାଯୋଗ ରଖି ପାରିନାହିଁ । ଅମରେନ୍ଦ୍ର ଓ ଶୁଭକାନ୍ତ କବିତା ଜରିଆରେ ଚିହ୍ନା ।' କବିତା ବି କ'ଣ ଗୋଟିଏ ପରିବାର ଗଢ଼ିଥାଏ ? କେଜାଣି, ସେହିପରି ତ ମନେହେଲା । ସେଇ ଦୃଷ୍ଟିରୁ ମୁଁ ରହଣି ପାଇଁ ଏଇ ଦୁଇଟି ଘର ବାଛିଥିଲି । କିନ୍ତୁ ତିନିଦିନ ଭିତରେ ଦୁଇଥର ଅମରେନ୍ଦ୍ରଙ୍କୁ ଅଧା ରାତିରେ ଉଠାଇ, ତାଙ୍କ ନିଦ୍ରାଳୁ ଆଖିରେ କର୍ତ୍ତବ୍ୟ ଓ ସ୍ନେହର ଯେଉଁ ଯୁଗପତ୍ ଆଭା ମୁଁ ଦେଖିଛି, ତାହା ଭୁଲିବାର ନୁହେଁ । ଆଉ ମଧ୍ୟ ଭୁଲି ହେଉନାହିଁ ସେହି ଗୃହହୀନ ମଧ୍ୟବୟସ୍କା ଆମେରିକାନ୍ ମହିଳାଙ୍କୁ, ଯିଏ କି ଶୋଇବାର ଉପକ୍ରମ କରୁଥାନ୍ତି । ଖୁବ୍ ସୁସଜ୍ଜିତ ହୋଇଥାନ୍ତି ବି । ଫୁଟ୍‌ପାଥିରେ ଆମେ ଚାଲି ଚାଲି ଫେରିଲା ବେଳେ ବ୍ୟାଗ୍ ଖଣ୍ଡିକ ଧରି ହସ ହସ ହୋଇ ଡବ ଡବ ଆଖିରେ ଆମକୁ ଚାହିଁଥାନ୍ତି । ଦୋକାନ, ବଜାର ସବୁ ବନ୍ଦ ହୋଇ ସାରିଛି । ଗୋଟିଏ ବନ୍ଦ ଦୋକାନର ସଟର୍ ପାଖରେ ସେ ଠିଆ ହୋଇଥାଆନ୍ତି । ଫୁଲଟିଏ ସୂର୍ଯ୍ୟଙ୍କୁ ଚାହିଁଲା ଭଳି ସେ ଉତ୍‌ଫୁଲ୍ଲ ଚାହିଁ ରହିଥାନ୍ତି ଆମକୁ । ମୁଁ ତାଙ୍କ ମୁହଁକୁ ବି ଅନାଇଁଥିଲି । ପରେ ଜାଣିଲି, ଆଖିରେ ଆଖି ମିଶିଲେ ଆମେରିକାନ୍ ଜଣେ 'ହାଲୋ' ବା 'ହାଏ' କହିବ, ନତୁବା ନିହାତି ଟିକେ ହସିଦବ ! ହୋମ୍‌ଲେସ୍ ମହିଳା ଅଗତ୍ୟା ମୋତେ ଚାହିଁ ସ୍ମିତହସ ଖେଳାଇଥିଲେ, ଉତ୍ତୁଙ୍ଗ ସୌଧମାଳିନୀ ନ୍ୟୁୟର୍କ ସହରର ଝଲମଲ ଆଲୁଅ ଭିତରେ, ବିଳମ୍ବିତ ରାତିରେ, ରାସ୍ତା କଡ଼ରେ ।



# ଓସା ଓ ପ୍ରିନ୍ସଟନ

ଆମେରିକା ନିବାସୀ ଓଡ଼ିଆଙ୍କ ବାର୍ଷିକ ସମ୍ମିଳନୀ । ମୋ ମନରେ ଆଗ୍ରହ, କେତେ ସହ ପାଠିନୀ ରହିଛନ୍ତି ଏଠାରେ, କାଳେ ଆସିଥିବେ, ଦେଖାହେଇଯିବ । ପୁଣି କବିତା ଅଧିବେଶନ ଓ ଏଠିକା ଓଡ଼ିଆଙ୍କର କବିତା ପ୍ରତି ସଚେତନତା ସବୁ ମଶି ମତେ ବ୍ୟଗ୍ର କରୁଥାଏ । ଜୁଲାଇ ଚାରି ତାରିଖ ସକାଳ ଆଠଟାରେ ନ୍ୟୁୟର୍କ ମାନ୍‌ହାଟନ୍‌ର ପେନ୍‌ସ ଷ୍ଟେସନ୍ ରେ ପହଞ୍ଚିଲୁ-ମୁଁ ଝିଅ, ନାତି ଏକ ଘଣ୍ଟାର ଟ୍ରେନଯାତ୍ରା କରିବୁ । ଟ୍ରେନ ଯଦିବା ଭୂଇଁତଳୁ ବାହାରିଲା, କିନ୍ତୁ ଅର୍ଦ୍ଧାଧିକ ପଥ ଭୂପୃଷ୍ଠରେ ଗତିକଲା । ବହୁ ଲୋକ ଏଥିରେ ଡେଲି ପାସେଞ୍ଜରୀ କରନ୍ତି । ପ୍ରିନ୍ସଟନ୍ ସହରରେ ଓହ୍ଲାଇ, ଆମେ ଟ୍ୟାକ୍ସି ଧରିଲୁ । ସାରା ଆମେରିକାରେ ଟାକ୍ସିର ରଂଗ ହଳଦିଆ । ଆମେ ହୋଟେଲ 'ଡୋରାଲ୍ ଫରେଷ୍ଟାଲ୍'କୁ ଯାଉଥାଉ, ଅଚିହ୍ନା ଜାଗା, ମୁଁ ଟିକେ ଆଶଙ୍କିତ । କିନ୍ତୁ ଅସିତା ଖୁବ୍ ଦକ୍ଷତାର ସହିତ ଏହି ଯାତ୍ରାର ପରିଚାଳନା କରୁଥାଏ । ସତେ କି ସେ ଅଭିଭାବକ, ମାଆ । ତାର ଆଠ ବର୍ଷର ପୁଅ ଓ ମୁଁ ବି ଗୋଟେ ବୟସ୍କା ସାନ ଝିଅ ।

ଆମେ ହୋଟେଲରେ ପହଞ୍ଚିଲା ବେଳକୁ ପ୍ରାତଃ ଅଧିବେଶନ ସରିଥିଲା । ପରବର୍ତ୍ତୀ ସମୟରେ ଆରମ୍ଭ ହେଲା ମହିଳାଙ୍କ ଅଧିବେଶନ । ବିଶିଷ୍ଟ ଓଡ଼ିଆ କେତେଜଣ ଅତିଥି ଆଆନ୍ତି, ଏହି ସମୟରେ ଏକକାଳୀନ ବାଣିଜ୍ୟ ଅଧିବେଶନ ମଧ୍ୟ ଥାଏ । ଝିଅ ବାଣିଜ୍ୟ ଅଧିବେଶନକୁ ଓ ମୁଁ ମହିଳା ଅଧିବେଶନକୁ ଗଲୁ । ଦେଖିଲି, ଆମେରିକାରେ ଥିବା ଓଡ଼ିଆ ମହିଳାଗଣ ତାଙ୍କର କିଶୋରୀ କନ୍ୟାମାନଙ୍କ ପାଇଁ ବ୍ୟସ୍ତତା ପ୍ରକାଶ କରୁଛନ୍ତି । ଆମେରିକା କାଇଦା, ବୟଫ୍ରେଣ୍ଡ, ଡେଟିଂ ଆଦିରୁ ଝିଅଙ୍କୁ ନିବୃତ୍ତ କରିବାକୁ ଖୁବ୍ ଲାଗି ପଡ଼ିଛନ୍ତି ସେମାନେ । କିନ୍ତୁ ସମାଜର ଧାରା ସେଠାରେ ଯାହା, ସେଠାରେ ଜନ୍ମିତ ଓ ଲାଳିତ ଝିଅମାନଙ୍କୁ ସେହି ଧାରାରୁ ଅଲଗା କରି ରଖିବା କଷ୍ଟକର । ସେହି ନିଶ୍ଚିତ କଷ୍ଟ ଭୋଗୁଛନ୍ତି ସେମାନେ । ଅଥଚ ପୁଅମାନଙ୍କ ମାଆ ସେପରି ଉଦ୍‌ବିଗ୍ନତା ପ୍ରକାଶ କରି ନଥିଲେ । ପୁଅମାନେ ବି ସେହିଧାରା ଦ୍ୱାରା ଅନେକଟା ଅନୁପ୍ରାଣିତ ହୋଇଥିବେ । କର୍ମଜୀବୀ ନାରୀର ସଂଘର୍ଷ ଓ ଶ୍ରମ ସଂପର୍କରେ ମଧ୍ୟ ଆଲୋଚନା ହୋଇଥିଲା । ପାରିବାରିକ ସୌହାର୍ଦ୍ଦ୍ୟ ଓ କର୍ତ୍ତବ୍ୟନିଷ୍ଠାକୁ ସେଠାକାର ନାରୀମାନେ କଠୋରଭାବେ ଅଭ୍ୟାସ କରୁଥିବାର ପ୍ରକାଶ କଲେ । ଏଠାରେ ପ୍ରକାଶ

ଥାଉକି, ମୋର ଜଣେ ସହପାଠିନୀର ଝିଅ ଡାକ୍ତର ଓ ସେ ଝିଅ ଆମେରିକାନ୍ ପୁଅଟିକୁ ବିଭାହୋଇଛି ବୋଲି ମୋର ବାନ୍ଧବୀ ଓ ତାର ସ୍ୱାମୀ ଉଭୟେ ମନଉଣା କରିଛନ୍ତି ।

ଦ୍ୱିପ୍ରହର ଭୋଜନ ରେ ଭାରତୀୟ ଖାଦ୍ୟ ନଥିଲା-ବିଭିନ୍ନ ପ୍ରକାର ପ୍ରଚୁର ଖାଦ୍ୟ ଶୃଂଙ୍ଖଳାର ସହ ତାହା ସମାପ୍ତ ହେଲା । ସେଠାରେ ମୋର ସଂପର୍କୀୟା ନଣନ୍ଦ କଲ୍ୟାଣୀ ଓ ତାଙ୍କ ଝିଅ ସାନୀସହ ଦେଖାହେଲା । ସାନୀ ବିବାହିତା, ଭାରତୀୟ ଯୁବକକୁ ବିବାହ କରିଛି । ସେ ବିଦେଶରେ ଜନ୍ମିତା ଓ ଲାଳିତା । ଖୁବ୍ ସୁନ୍ଦର ଆମେରିକାନ୍ ଇଂଲିଶ୍ କହେ, ଓଡ଼ିଆ ବି କିଛି କିଛି କହେ, ବ୍ୟବସାୟ କରେ । ସେଥିରେ ମଧ୍ୟ ସେ ପାରଂଗମ । ମତେ ପ୍ରିନ୍ସଟନ୍ ୟୁନିଭ୍ ବୁଲିଯିବା ପାଇଁ ଡାକିଲା । ଦିନ ତିନିଟାରେ ଆମେ ବାହାରିଲୁ । ସାନୀ ଏକ ବିରାଟ ଗାଡ଼ି ନିଜେ ଚଳାଇ ଡଲାସ୍‌ରୁ ନ୍ୟୁଜର୍ସି ଆସିଛି- ବାଟରେ ହଲ୍‌ଟ କରିଛି, ଦୁଇ ଦିନ ଡ୍ରାଇଭ୍ କରିଛି, ସାଙ୍ଗରେ କେବଳ ମାଆ । ଖୁବ୍ ଦ୍ରୁତଗତିରେ ଗାଡ଼ି ଚଳାଇ ସେ ଆମକୁ ଇଣ୍ଡିଆନ୍ ମାର୍କେଟ୍ ନେଲା । ବମ୍ବେ ଧରଣର ଦାମୀ ଶାଢ଼ୀ ଓ ସୁନା, ହୀରା ଗହଣାର ନାହିଁ ନଥିବା ବଜାର । ସାନୀ ହୋଟେଲ୍‌ରେ ଖାଇ ନଥିଲା । ତେଣୁ ଏଠାରେ ଭାରତୀୟ ରେଷ୍ଟୋରାଁରେ ଖାଇଲା ଓ ଆମକୁ ବି କିଛି ଖୁଆଇଲା । ଗୋଲାପଜାମୁ, ଦୋଷା, ସିଂଗଡା ଇତ୍ୟାଦି ସେଠାରେ ମିଳେ । ଆମର ପାଂଚ ଟଙ୍କିଆ ଗୋଲାପଜାମୁ ଠାରୁ ଟିକେ ସାନ ଆକାର ଗୋଲାପଜାମୁର ମୂଲ୍ୟ ସେଠାରେ ଏକ ଡଲାର୍ ।

ପ୍ରିନ୍ସଟନ୍ ୟୁନିଭ୍ ରାସ୍ତା ଦୀର୍ଘ, ପ୍ରଶସ୍ତ, ପରିଚ୍ଛନ୍ନ । ଘଞ୍ଚ ସବୁଜ ବୃକ୍ଷଲତା ଓ ମଝିରେ ମଝିରେ ଜଙ୍ଗଲ । ସାନୀର ସାହସ ମତେ ଆଚମ୍ବିତ କରୁଥାଏ । ଆମେ ଓଡ଼ିଶାର ଓଡ଼ିଆଣୀ କେତେ ଜଣ ଏପରି ସାହସୀ ଓ ପରିଶ୍ରମୀ ହୋଇପାରିବୁ ? କଲୋନୀ ସବୁ ସୁସଜ୍ଜିତ-ଚିତ୍ର ପରି । ପ୍ରକୃତରେ, ଆମେରିକାର ନାଗରିକ ସଚେତନତା ବିଶ୍ୱରେ ଅଦ୍ୱିତୀୟ । ଅଳିଆ ବା କାଗଜ ଟୁକୁରାଟେ କେଉଁଠି କେହି ଛାଡ଼ିଯିବେ ନାହିଁ । ସେଥିପାଇଁ ପ୍ରତ୍ୟେକ ସ୍ଥାନରେ ଡଷ୍ଟବିନ୍ ରହିଛି । ପ୍ରତିଷ୍ଠାନରେ ପରିଚ୍ଛନ୍ନ-ରେଷ୍ଟରୁମ୍- ଝାଡ଼ା ପରିସ୍ରା ଯିବା ପାଇଁ । ଆମେରିକା ଲୋକେ ଏହି ପରିଚ୍ଛନ୍ନତା ଓ ନାଗରିକ ସଚେତନତାକୁ ଗୁରୁତ୍ୱ ଦିଅନ୍ତି । ସବୁ ସ୍ଥାନରେ ପୁରୁଷ ଓ ମହିଳାଙ୍କ ପାଇଁ ସ୍ୱତନ୍ତ୍ର 'ଟଏଲେଟ୍' ଥାଏ । କ୍ୟୁ ଲାଗେ, କ୍ୟୁକୁ ସମସ୍ତେ ମାନନ୍ତି । ଏ ସଂପର୍କରେ କଥାଟିଏ କହେଁ । ଗୋଟିଏ ଚାରିବର୍ଷର ହେବ ଝିଅ, ମାଆ ସାମ୍ନାରେ କ୍ୟୁରେ ଛିଡା ହେଇଥାଏ, ଲେଡ଼ିଜ୍ ଟଏଲେଟ୍ ଆଗରେ । କ୍ୟୁ ଲମ୍ବିଛି-ତା ଆଗରେ ଚାରି ପାଂଚ ଜଣ ରହିଛନ୍ତି ।

ପଛରେ ତ ଅନେକ । ଝିଅଟି ତଳିପେଟରେ ହାତଚାପି ବଡ଼ ବ୍ୟସ୍ତ ହେଉଛି । ତା' ମାଆ କହିଚାଲିଥାନ୍ତି 'ୱାନ୍‌ମିନିଟ୍, ୱାନ୍ ମିନିଟ୍ ପ୍ଲିଜ୍' । ଅଥଚ କ୍ୟୁ ଚାଲିଥାଏ । ମୁଁ ତା' ଆଗରେ ଥାଏ । ମୋ ପାଳି ପଡ଼ିବାରୁ ମୁଁ ଝିଅକୁ ଛାଡ଼ିଦେଲି । ତା' ମାଆ ଧନ୍ୟବାଦ ଦେଲେ-। ତେବେ ସେମାନେ ଏପରି ସ୍ୱତନ୍ତ୍ର ଦାବୀ ବା ଆଶା କରନ୍ତି ନାହିଁ । ଶିଶୁ ଓ ବୃଦ୍ଧଙ୍କୁ କେହି ଯଦି ବିଚାର କରି ଛାଡ଼ି ଦିଏ, ଭଲ କଥା । ମତେ ଲାଗିଲା ଛୋଟ ଝିଅଟି କେତେ ବେଶି ଶୃଂଖଳା ଅଭ୍ୟାସ କରିଛି ! ସବୁଠାରେ ଶାରୀରିକ ଅକ୍ଷମଙ୍କ ପାଇଁ ଉତ୍ତମ ବ୍ୟବସ୍ଥା । ଏମାନଙ୍କ ପ୍ରତି ଅଧିକ ଯତ୍ନ । ଆମେରିକାର ଅକ୍ଷମ ନାଗରିକଙ୍କ ଆର୍ଥିକ ଦାୟିତ୍ୱ ମଧ୍ୟ ସରକାର ତୁଲାନ୍ତି । ଆଇନତଃ ପ୍ରତ୍ୟେକ ଛୋଟ ଶିଶୁଙ୍କୁ ପାଂଚବର୍ଷ ଯାଏଁ ଦେଶରୁ ମାସିକ ଦୁଇଶହ ଡ଼ଲାର ମିଳେ । ସେମାନଙ୍କ ଫଳ ଓ କ୍ଷୀର ପୁଷ୍ଟିକର ଖାଦ୍ୟ ପାଇଁ ସରକାର ଦେଇଥାନ୍ତି । ଅପରାହ୍ନ ପାଂଚଟାରୁ ଗଡ଼ି ଗଲାଣି । ପ୍ରିନ୍ସଟନ୍ ୟୁନଭ୍‌କୁ ମନପୂରାଇ ଦେଖିବା ପାଇଁ ବେଳ ଅଣ୍ଟିଲା ନାହିଁ । ସଂଧ୍ୟାରେ ସାଂସ୍କୃତିକ କାର୍ଯ୍ୟକ୍ରମ-ହୋଟେଲ୍‌ରେ ପହଞ୍ଚିଲା ବେଳକୁ ନଅଟା । ରାଜଶ୍ରୀର ଓଡ଼ିଶୀ ନୃତ୍ୟ କାର୍ଯ୍ୟକ୍ରମ ଥାଏ । ସିଧା ସେଠାରେ ବସିଲୁ । ରାଜଶ୍ରୀ ମୋ ଝିଅ ଅସିତାର ସହପାଠିନୀ, ବାଣୀ ବିହାରର ଝିଅ, ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ବଡ଼ ବୋହୂ ।

ଓଡ଼ିଶୀ ନୃତ୍ୟ, ଗ୍ରୁପ୍ ନୃତ୍ୟ, ହାସ୍ୟରସାତ୍ମକ ଅଭିନୟ ଆଦି ଆମୋଦଦାୟକ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଲା । ଏ ସବୁଥିରେ ଯଥାସଂଭବ ଓଡ଼ିଆ ଚଳଣିକୁ ଗୁରୁତ୍ୱ ଦିଆଯାଉଥାଏ । ଆମେ ରାତି ବାରଟା ସୁଦ୍ଧା ଶୋଇବାକୁ ଗଲୁ । ଶୁଣିଲୁ, ରାତି ଚାରିଟାଯାଏ ସେଦିନ ଗାଆଣବାଜଣା ଚାଲିଥିଲା । ସଂଗୀତଜ୍ଞ ସିକନ୍ଦର ଆଲାମ୍ ଓ ତାଙ୍କ ଝିଅ, ମୋର ଛାତ୍ରୀ ନାଜିଆ ସୟିଦ୍ ଗାଉଥିଲେ, ଅଥଚ ମୁଁ ରହିପାରିଲି ନାହିଁ । କାରଣ ପରଦିନ ପାଂଚତାରିଖ ସକାଳ ଆଠଟାରେ ମୋର କବିତା ଅଧିବେଶନ କାର୍ଯ୍ୟକ୍ରମ । କବିତା ଅଧିବେଶନର ଦାୟିତ୍ୱରେ ଥିବା ଡଃ ବିଜ୍ଞାନୀ ଦାସଙ୍କର ଭାଷା ରସବନ୍ତ ଓ ଅନର୍ଗଳ-ସେ କବିତା ବହିଟିଏ ବି ଛପାଇଥାନ୍ତି ସେଇଠି । ତାଙ୍କ ବଡ଼ ଝିଅ ମଧ୍ୟ ଇଂରାଜୀ କବିତା ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ପ୍ରାପ୍ତହେଲା ।

କବିତା ଅଧିବେଶନରେ ହଲଭର୍ତ୍ତି । କବିତା ସଂପର୍କରେ ମୋର କି, ନୋଟ ଆଡ୍ରେସ୍ ଦେବାର ଥିଲା ଓ 'ତନ୍ମୟଧୂଳି'ରୁ କବିତା ପଢ଼ିବାର ଥିଲା । ମୋର ବକ୍ତବ୍ୟ ଓ କବିତା ପ୍ରତି ଅନିବାସୀ ଓଡ଼ିଆଙ୍କ ଆଗ୍ରହ ଦେଖି ମୁଁ ଅଭିଭୂତ ହେଲି । ମୁଁ ମୋ

ବକ୍ତବ୍ୟରେ ସେମାନଙ୍କୁ ଜଣାଇଲି ଯେ, 'ଆପଣମାନେ ଉତ୍କଳମାତାର ବୁଦ୍ଧିମାନ ଓ ଐଶ୍ୱର୍ଯ୍ୟବନ୍ତ, ବିତ୍ତଶାଳୀ ସନ୍ତାନ । ବହୁ ପ୍ରତିବନ୍ଧକ ଓଡ଼ିଆ ଭାଷା ସାହିତ୍ୟ ସାମ୍ନାରେ ଉପସ୍ଥିତ । ସେମାନେ ତା'ର ଉନ୍ନତି କଳ୍ପେ କିଛି ଉପାୟ ଚିନ୍ତା କରନ୍ତୁ । ଚିନ୍ତାକଲେ ହିଁ ମାର୍ଗ ଦୃଶ୍ୟମାନ ହେବ ଓ ଆପଣମାନେ ସଫଳ ହୋଇପାରିବେ ।' ସେଠାରେ ସଚ୍ଚି ରାଉତରାୟ, ଗୁରୁପ୍ରସାଦ ଓ ରମାକାନ୍ତଙ୍କ ପ୍ରିୟ ପାଠକଥିଲେ । କିଛି ପ୍ରଶ୍ନୋତ୍ତର ମଧ୍ୟ ଚାଲିଲା । କବିତା ଅଧିବେଶନ ଅଢ଼େଇ ଘଣ୍ଟା ଚାଲିଲା । ଏବେ ମୁଁ ଅନ୍ତତଃ ମୁକ୍ତ । ଅନେକ ଅଧିବେଶନ ବିଭିନ୍ନ ହଲ୍‌ରେ ଚାଲିଥାଏ । ଅପରାହ୍ଣରେ ଅମରେନ୍ଦ୍ର, ଶୁଭକାନ୍ତ, ପ୍ରଶାନ୍ତ,ଅସିତା, ରାଜଶ୍ରୀ ଓ ଡଃ ଦିଗମ୍ବର ମିଶ୍ରଙ୍କ ଗହଣରେ ଆମେ କଫିକପ୍ ନେଇ ଗପ ଜମାଇଲୁ । ସାହିତ୍ୟ, ରାଜନୀତି, ସମାଜ ଓ ବାଣିଜ୍ୟ ସବୁ ବିଷୟରେ ଆଲୋଚନା ଚାଲିଲା । ସେଦିନ ସଂଧ୍ୟାରେ ଆମର ହୋଟେଲ ଛାଡ଼ିବା କଥା । ଅସିତାର ସହପାଠିନୀ ଇଂଜନିୟର ନିବେଦିତା ଆସିକି ଆମକୁ ଘରକୁ ନେଇଯିବ ।



# ଓ.ସା. ସମ୍ମିଳନୀରେ

ଜୁଲାଇ ପାଂଚ ତାରିଖ ପୂର୍ବାହ୍ନ ଆଠଟାରେ ଓ.ସା.ର କବିତା ଅଧିବେଶନ । ମୁଁ ନିମନ୍ତ୍ରିତ ଅତିଥି । ସମଗ୍ର ସମ୍ମିଳନୀରେ ଚାରିଦିନ ମଧ୍ୟରେ ଶିଳ୍ପ, ବାଣିଜ୍ୟ, ସମାଜସେବା ଇତ୍ୟାଦିର ବହୁ ଅଧିବେଶନ ଅନୁଷ୍ଠିତ ହେଉଥିଲେ ମଧ, ସାହିତ୍ୟ ନିମିତ୍ତ ଏଇ ଗୋଟିଏ 'କବିତା ଅଧିବେଶନ' । ତେଣୁ ଏଥିପାଇଁ ଆଗ୍ରହ ବି କମ୍ ନୁହେଁ । ପୂର୍ବଦିନ ଚାରି ତାରିଖ ପ୍ରିନ୍ସଟନ ୟୁନିଭରସିଟି ବୁଲା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ପରେ ବିଳମ୍ବ ହୋଇଥିଲା । ତେଣୁ ଖୁବ୍ ବ୍ୟସ୍ତ ଲାଗୁଥିଲା, କେମିତି ସକାଳୁ ଉଠିବାକୁ ପଡ଼ିବ । ଏମିତିରେ ମୁଁ ଖୁବ୍ ବିଳମ୍ବରେ ଶୁଏ, ପ୍ରାୟ ରାତି ଦୁଇଟାରେ ଓ ନିଦ ଭାଂଗେ ସକାଳ ଆଠଟା କି ନଅଟାରେ । ବିଗତ ତିରିଶବର୍ଷର ଅଭ୍ୟାସ, ରାତିରେ ଲେଖାପଢ଼ା କରିବାକୁ ଭଲଲାଗେ । ଦିନଯାଏ କଲେଜରେ, ପିଲାଙ୍କ ଜଂଜାଳରେ, ଘର କାମରେ । ତେଣୁ ଏ ସବୁ ସଭାସମିତିରେ ମୁଁ ସବୁବେଳେ ସତର୍କ । ଘରୁ ଯେଉଁ ଆଡ଼େ ବି ବାହାରେ ବିଭିନ୍ନ ସାହିତ୍ୟାନୁଷ୍ଠାନ, ସମ୍ମିଳନୀକୁ, ଅନ୍ୟ ଭାଷା ଭାଷୀ ବାନ୍ଧବୀମାନଙ୍କୁ କହିଥାଏ 'ପ୍ଲିଜ, ମତେ ସାତଟା ବେଳେ ଡାକିଦେବେ-କବାଟରେ ଟିକେ ଟିପା ମାରିଦେବେ ।' 'ମର୍ଣ୍ଣି ଟି' ମୁଁ ନିଏ ନାହିଁ କେବେ ।

ସେଦିନ କିନ୍ତୁ କନି ଶୀଘ୍ର ଉଠି ନତ୍ୟକର୍ମ ସାରୁଛି, ଅଥଚ ମୋତେ ଡାକିନାହିଁ । କବାଟରେ ଆବାଜ ହେଲା । ଉଠିଲି । ଦୁଆର ଖୋଲିଦିଏ ତ ବୁଇ (ରାଜଶ୍ରୀ) ସୁନ୍ଦର ସଜବାଜ ହେଇ, ହସ ହସ ମୁହଁରେ 'ସକାଳ' ଭଳି ଠିଆ ହେଇଚି । 'ମାଉସୀ, ଆପଣ ଏଇଲେ ଉଠୁଛନ୍ତି । ଆଠଟା ବାଜିବାକୁ ଦଶ ମିନିଟ୍ ଅଛି-ଅଧିବେଶନ କକ୍ଷ ସାମ୍ନାରେ କବିମାନେ ସୁସଜ୍ଜିତ ହୋଇ ଅପେକ୍ଷା କରିଛନ୍ତି ।' ବଡ ମୁସ୍କିଲ-ମୁଁ କହିଲି, 'ତୁ ଯା', ସେମାନଙ୍କୁ କହିବୁ, ମୁଁ ଯାଉଛି, ଦେଖ୍ ମୁଁ ପନ୍ଦର ମିନିଟ୍ ଭିତରେ ପହଞ୍ଚୁଛି ।' ବୁଇ ଫେରିଗଲା । ୟା ପରେ ଆଉ ନିତ୍ୟକର୍ମ, ପ୍ରସାଧନ ବା କଅଣ ! ଅତି ଶୀଘ୍ର ଯାହା ଯେମିତି ହେଲା । ଶାଢ଼ୀ ଖଣ୍ଡେ ଗୁଡେଇ ହେଇ ମୁଁ ବାହାରିଲି । ନହେଲେ କହିବେ - ଓଡ଼ିଆଣୀ ଆସିଚି-ସ୍ୱଭାବ କୁଆଡେ ଯିବ ? ଇଣ୍ଡିଆନ୍ ପଂକ୍ଚୁଆଲିଟି । ମୁଁ ହଲ୍‌ରେ ପହଂଚିଲା ବେଳକୁ ଆଠଟା ବାଜି ଦଶ ମିନିଟ୍ । ପରମ ଆଗ୍ରହରେ ସେମାନେ ମୋତେ ପାଛୋଟି ନେଲେ । ହଲ୍ ଭରପୁର । ମୋର ବକ୍ତବ୍ୟ ସବାଆଗ । ତା' ପରେ କବିତା ପାଠୋତ୍ସବ । ଓଡ଼ିଆ ଓ ଇଂରାଜୀରେ କବିତା ସବୁ ପଢ଼ା ହେଲା । ଅପେକ୍ଷାକୃତ

କମ୍ ବୟସର ପୁଅଝିଅ ଇଂରାଜୀ କବିତା ଆବୃତ୍ତି କଲେ । ଅନ୍ୟମାନେ ଓଡ଼ିଆରେ । କିଏ ନିଜ ଲେଖା, କିଏ ନିଜ ବାପା ମାଆଙ୍କ ଲେଖା ଆବୃତ୍ତି କଲେ । ବକ୍ତବ୍ୟ ପ୍ରଦାନ କାଳରେ ମୋତେ ବହୁତ ସହଜ ଲାଗୁଥିଲା । ସେଠାରେ କେତେକ ପ୍ରଶ୍ନୋତ୍ତର ମଧ୍ୟ ହେଲା । କବିତା ସମ୍ପର୍କରେ ସେମାନଙ୍କ ଜାଣିବାର ଇଚ୍ଛା ମୋତେ ପ୍ରକୃତରେ ଖୁବ୍ ଆନନ୍ଦ ଦେଲା ।

ମୋର 'କି ନୋଟ ଆଡ୍ରେସ ଓ 'ତନ୍ମୟଧୂଳି'ରୁ କବିତା ପଢ଼ିବାର କାର୍ଯ୍ୟକ୍ରମ । ସେମାନଙ୍କୁ କବିତା ସଂପର୍କରେ କ'ଣ କହିବି ପ୍ରକୃତରେ ! ତଥାପି ମୁଁ ମୋର ବକ୍ତବ୍ୟ ଆରମ୍ଭ କଲି ଏହିପରି- 'ଅନିବାସୀ ଓଡ଼ିଆ ବନ୍ଧୁଗଣ, ହିମାଳୟ ପରି ସୁଉଚ୍ଚ ଓ ପରିବ୍ୟାପ୍ତ ଓଡ଼ିଆ କାବ୍ୟପରଂପରାର କି ପରିଚୟ ବା ମୁଁ ଏତେ କମ୍ ସମୟ ମଧ୍ୟରେ ଆପଣଙ୍କୁ ଦେଇପାରିବି ? ଆପଣ, ଯେଉଁମାନେ ଅନେକ ଦିନ ଧରି ଓଡ଼ିଆ କବିତାର ପ୍ରତ୍ୟକ୍ଷ ସଂପର୍କରେ ନାହାଁନ୍ତି, ନାନା କାରଣରୁ ଯୋଗାଯୋଗ କ୍ଷୀଣ ହୋଇଯାଇଛି, ସୁଦୂରରେ ଥିବାରୁ-ପ୍ରତିନିୟତ ଓଡ଼ିଆ କବିତା, କବିତାର ଗତି ଓ ସ୍ଥିତିକୁ ମୁଁ କିପରି ବା ଉପସ୍ଥାପିତ କରିପାରିବି ?' ପ୍ରତିବାଦ ଆସିଲା-'ଆମେ ପଢୁ, ଆପଣ ସେପରି ମନେ କରନ୍ତୁ ନାହିଁ ଆଦୌ ।' ଅଗତ୍ୟା ମୁଁ ସୌଜନ୍ୟ ଦୃଷ୍ଟିରୁ କହିଲି 'ମନା କରୁନାହିଁ ହୁଏତ ପଢୁଥିବେ, ମାତ୍ର, କେତେଜଣ ? ଆପଣମାନେ ଆଗ୍ରହୀ ହେଲେ ବି ଆଗ୍ରହର ପରିତୃପ୍ତି ପାଇଁ ସୁବିଧା ସୁଯୋଗ ହିଁ ନଥିବ ।'

କେବଳ ଓଡ଼ିଆ ଭାଷାର କବିତା ନୁହେଁ, ସମଗ୍ର ଭାରତର ଆଞ୍ଚଳିକ ଭାଷାମାନଙ୍କରେ ରଚିତ କବିତାର ସ୍ୱରୂପ ଉଣା ଅଧିକେ ସେହି ସମାନ ଭାବଧାରାର ଅନୁଗାମୀ । ସମସାମୟିକ କବିତାର ପର୍ଯ୍ୟାଲୋଚନା କରିବାକୁ ଯାଇ ମୁଁ ଆପଣଙ୍କ ସମ୍ମୁଖରେ ମାତ୍ର ଦୁଇଟି ଦିଗକୁ ସ୍ପଷ୍ଟ କରିବାକୁ ଚାହେଁ । ପ୍ରଥମତଃ ବର୍ତ୍ତମାନର କବିତା ମଧ୍ୟରେ ମଣିଷ ନିଜକୁ ଖୋଜିବାକୁ ବ୍ୟଗ୍ର । ମଣିଷର ଅନ୍ତରଂଗତା ପ୍ରତି କବିତା ଅଧିକ ଉନ୍ମୁଖ । ଜଗତୀକରଣ ଦ୍ୱାରା ବ୍ୟକ୍ତି, ବସ୍ତୁ, ସ୍ଥାନ ଆଦି ସର୍ବସାଧାରଣ ହୋଇ ପଡିଲାବେଳକୁ, ମଣିଷ ତା' ନିଜ ଜୀବନ, ପ୍ରିୟଜନ, ପ୍ରିୟ ପରିବେଶ ତଥା ଅଭିଳାଷ ପ୍ରତି ଅଧିକ ନିବିଡ଼ ହେବାକୁ ଚାହୁଁଛି । ସବୁ ଗତାନୁଗତିକ, ପାରଂପରିକତା ଭାଙ୍ଗିପଡ଼ିବାର ଆଶଙ୍କା ବଳବତ୍ତର ହେବା ବେଳକୁ କବିତା ମାଧ୍ୟମରେ ସବୁକିଛିକୁ ନୂତନଭାବେ ଅର୍ଥାନ୍ୱିତ କରିବା ନିମିତ୍ତ କବିଗଣ ପ୍ରଯତ୍ନ କରୁଛନ୍ତି । ବ୍ୟକ୍ତିଗତତାକୁ ସାଧାରଣ କରିଦେବାର ଏଇ ଯୁଗରେ କବିଟି କାତର ହୋଇ ପଡୁଛି । ସଂପର୍କହୀନତା

ବ୍ୟାପିଯାଉଥିବାବେଳେ ସେ ନିଜ ସଂପର୍କର ଖିଅକୁ ଜାବୁଡ଼ି ଧରି ତା'ର ଅନନ୍ୟତାକୁ ପ୍ରତିଷ୍ଠା ଦେବାକୁ ତତ୍ପର ହୋଇ ଉଠୁଛି । ମଣିଷର ଅନ୍ତର୍ବେଦନା ଓ ମନୋଭାବ ଏ ଦିଗରେ କିପରି କ୍ରିୟାଶୀଳ, ତାହା କବିମାନଙ୍କ ରଚନାରେ ପ୍ରଦତ୍ତ ହୋଇଛି ।' ଏହାର ନଜିର୍ ଦେବାକୁ ଯାଇ ମୁଁ ମୋର ବକ୍ତବ୍ୟରେ କବି ସୀତାକାନ୍ତଙ୍କ 'ପ୍ରଦକ୍ଷିଣ' ତଥା ଅନ୍ୟ କବିଙ୍କ ରଚନାରୁ କେତେକ ଉଦାହରଣ ଉପସ୍ଥାପନ କଲି । ସେଠାକାର ଶ୍ରୋତାବର୍ଗ ଏକଦା ଯଦିଓ ଓଡ଼ିଆ କବିତା-ପ୍ରେମୀ ଥିଲେ, କିନ୍ତୁ ବର୍ତ୍ତମାନର କବିତାର ନୂତନ ଧାରା, ନୂତନ ସ୍ୱର ସଂପର୍କରେ କିଛିଟା ସୂଚନା ପ୍ରଦାନ କରିବାକୁ ମୁଁ ପ୍ରାସଙ୍ଗିକ ମନେକଲି ।

ବର୍ତ୍ତମାନ ଅର୍ଥାତ୍-୧୯୮୦ ପରବର୍ତ୍ତୀ କାଳର କବିତାରେ ସ୍ପଷ୍ଟ ହୋଇଥିବା ନୂତନତ୍ୱକୁ ମୁଁ ମୋ ବକ୍ତବ୍ୟର ଦ୍ୱିତୀୟ ଦିଗ ଭାବେ ଚିହ୍ନିତ କରିବାକୁ ଯଥାର୍ଥ ଭାବିଲି । କହିଲି-'ଏହି କାଳରେ ଓଡ଼ିଆ କବିମାନେ ନାରୀ ଅସ୍ତିତ୍ୱର ବାସ୍ତବତା ପ୍ରତି ଅଧିକ ସଚେତନ ହୋଇଛନ୍ତି । ନାରୀର ଅନ୍ତର୍ମୂଲ୍ୟ-ପ୍ରତିଷ୍ଠା, ନାରୀ ବ୍ୟକ୍ତିତ୍ୱର ବିଚାର ପ୍ରତି ନିବିଷ୍ଟତା ଏ ସମୟର କବିତାରେ ବେଶ୍ ଲକ୍ଷ୍ୟଣୀୟ । ଏହା ପାଶ୍ଚାତ୍ୟ ଦୃଷ୍ଟିରୁ 'ଫେମିନିଜିମ୍' ପ୍ରଭାବରେ ଅବଶ୍ୟ ନୁହେଁ, ଏହା ଅଧିକ ଭାବେ ମାନବିକତା ଓ ଯୁଗବାର୍ତ୍ତା ଦ୍ୱାରା ଉଦ୍‌ବୋଧିତ ।

ଏହି ପରିପ୍ରେକ୍ଷୀରେ କହିବାକୁ ହେଉଛି ଯେ, କେବେ ବି ନାରୀକୁ ବାଦ୍‌ଦେଇ କବିତା ରଚନା କରାଯାଇ ନାହିଁ । କେବେ ଦେବୀ, କେବେ ପ୍ରେୟସୀ, କେବେ ଛଳନାମୟୀ କେବେ ବା ସର୍ବଂସହା ଧରିତ୍ରୀ ଏଇସବୁ ନାରୀର ପ୍ରତୀକ ରୂପେ ସ୍ୱୀକୃତ ହୋଇଛନ୍ତି । କିନ୍ତୁ ଆଲୋଚ୍ୟ ସମୟର କବିଗଣ ଭିନ୍ନ ଭାବେ ସଚେତନ ଓ ସଂବେଦନଶୀଳ ହୋଇ ପଡିଛନ୍ତି । ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠାଲାଭ କରିଥିବା ଦୁଇଟି ନାରୀ ଚରିତ୍ର 'ପ୍ରତିମା ନାୟକ' ଓ 'ଅଳକା ସାନ୍ୟାଲ'କୁ ବ୍ୟବଚ୍ଛେଦ କଲେ ଏ କଥାର ସଠିକ୍ ଅବଧାରଣା କରିହେବ । ଆଧୁନିକ କବିତା କ୍ଷେତ୍ରରେ ପ୍ରମୁଖ ମାନ୍ୟତା ପ୍ରାପ୍ତ, ଉପରୋକ୍ତ କବିତାଦ୍ୱୟର କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଓ ଶ୍ରୀ ଗୁରୁପ୍ରସାଦ ମହାନ୍ତି ଆଧୁନିକ ନାରୀକୁ ନେଇ ଶ୍ଳେଷ ଓ ରସିକତା ତଥା 'ହାଲୋ ହାଏ' ସଂଭାଷଣରେ କବିତାକୁ ଆକର୍ଷଣୀୟ କରିଛନ୍ତି । ଶ୍ଳେଷ ଆଧୁନିକ କବିତାର ଗୋଟିଏ ବିଶିଷ୍ଟ ଗୁଣ । କିନ୍ତୁ ଜୀବନ ସଂଘର୍ଷର ଦୋମୁହାଣୀରେ ଛଟପଟ ନାରୀକୁ ନେଇ କବିଙ୍କର ସହାନୁଭୂତି ଓ ସମମର୍ମିତା ଏଥିରେ ପ୍ରକଟିତ ହୋଇନାହିଁ । ପଚାରିଲି, 'ଭଲଅଛ ?' 'କଣ୍ଢେ ତା'ର

ବିଷଣ୍ଣ ଗୋଧୂଳି ।' (ପ୍ରତିମା ନାୟକ) କିମ୍ବା 'ମୁଁ ତୁମର ସ୍ୱପ୍ନ ଦେଖେ ମୋର ଢ଼ିଲା ପାଇଜାମା, କାମିଜ୍‌ର ଅମରାବତୀରେ ।' (ଅଳକା ସାନ୍ୟାଲ) ଏଠାରେ ନାୟିକାର ଆତ୍ମିକ ଅସହାୟତାଠାରୁ କବିଚେତନାର ଦୂରତ୍ୱ ସହଜେ ପ୍ରତିପନ୍ନ ହୁଏ । ଆଧୁନିକ ନାରୀର ଏ ଚିତ୍ର ନୈର୍ବ୍ୟକ୍ତିକ ସତ୍ୟ, ମାତ୍ର ତା'ର ଅନ୍ତରାତ୍ମାକୁ , ଗ୍ଲାନିକୁ, ଲୁହ ବୁନ୍ଦାକୁ କବି ସ୍ପର୍ଶ କରିବାକୁ ଚାହିଁନାହାନ୍ତି । ଯଦିବା ରମାକାନ୍ତଙ୍କ 'ଚନ୍ଦ୍ରମାର ଚୂଡି'ରେ କବିଙ୍କର ପରୋକ୍ଷ ଦରଦ ମର୍ମସ୍ପର୍ଶୀ ହୋଇପାରିଛି । ସେ ଯୁଗର ଦୃଷ୍ଟି ସେହିପରି ହିଁ ଥିଲା । କିନ୍ତୁ ବର୍ତ୍ତମାନ କବି ନାରୀର ଅନ୍ତର୍ନିହିତ ସତ୍ତା ଉଦ୍‌ଘାଟନ କରିବା ସହିତ ତା'ର ଅନ୍ତରାତ୍ମାକୁ ଚିହ୍ନି ତା'ର ପରାକ୍ରମ ଓ ପରାଜୟ ଉଭୟକୁ ଉପଲବ୍‌ଧି କରୁଛି । କବିର ନାରୀ ବ୍ୟକ୍ତିତ୍ୱ ପ୍ରତି ଏହି ଧ୍ୟାନଶୀଳତାର ପୃଷ୍ଠପଟରେ ରହିଛି ନାରୀର ନିଜସ୍ୱ ସଚେତନତା ଓ ନିରୀକ୍ଷଣ ଶକ୍ତି ତଥା ପ୍ରକାଶ ଦକ୍ଷତା । ଚିରନ୍ତନ ନାରୀର ଅଭୀପ୍‌ସା ପୁରାଣ କଳ୍ପ ମାଧ୍ୟମରେ 'ଶ୍ରୀରାଧା' ଓ 'ଶବରୀ' ଆଦିକାବ୍ୟ ଚରିତ୍ରରେ ଚିହ୍ନିତ ହେଲାବେଳକୁ, ପଲ୍ଲୀର ନିରିମାଖି ଝିଅର ଅନ୍ତଃ ସୌନ୍ଦର୍ଯ୍ୟ ମଧ୍ୟ 'ଧାନ ସାଉଁଟା ଝିଅ' ଆଦି କବିତାରେ ବିଶିଷ୍ଟତା ଲାଭ କରିଛି । ପୁନଶ୍ଚ ବର୍ତ୍ତମାନ ଓଡ଼ିଆ କବିତା କ୍ଷେତ୍ରରେ ପଚିଶରୁ ଚାଳିଶ ବର୍ଷ ବୟସ ମଧ୍ୟରେ କେତେକ ନାରୀ ଅତ୍ୟନ୍ତ ମାର୍ମିକ, ଭାବଉଦ୍‌ବୋଧକ ଓ ବାସ୍ତବ ସଚେତନ ସ୍ୱର ପ୍ରକଟ କରୁଛନ୍ତି । ଏହା ଯେ ଏକ ନୂତନ ଦିଗର ସୂଚନା ଦେଉଛି, ସ୍ୱୀକାର ନ କରିବାର ଉପାୟ ନାହିଁ ।

ଓଡ଼ିଆ କବିତାରେ ୧୯୫୦ ବେଳକୁ ଏଲିଅଟ୍‌ଙ୍କ "Escape from personality, xxx escape from emotions" ଖୁବ୍ ପ୍ରଭାବ ବିସ୍ତାର କରିଥିଲା । ତାଙ୍କ ମତ ଥିଲା, କବିତାରେ ଆବେଗ ରହିବ ନାହିଁ । ଅଥଚ ଆବେଗ-ବିଯୁକ୍ତ ସଂରଚନା କବିତା ହୋଇ ନପାରେ, ଯଦିଓ କେବଳ ଆବେଗର ପ୍ରାଚୁର୍ଯ୍ୟ ମଧ କଦାପି କବିତା ନୁହେଁ । ଏହା ମୋର ବ୍ୟକ୍ତିଗତ ମତ । ଏହା ସତ୍ତ୍ୱେ Eliot ପ୍ରଭାବିତ ଆଧୁନିକ କବିମାନେ ଆବେଗକୁ ଅପ୍ରକଟ ରଖିବା ନିମିତ୍ତ ଯତ୍ନଶୀଳ ଥିଲେ । ଏହା ଥିଲା ସେହି ସମୟର କବିତାର ଯଥାର୍ଥ ସ୍ଥିତି, ମାତ୍ର ପରବର୍ତ୍ତୀ କାଳରେ କବିତା କ୍ରମଶଃ ଏକ ଭିନ୍ନ ରୂପ ଗ୍ରହଣ କରିଛି ।' ମୋର ବକ୍ତବ୍ୟ ସରି ଆସୁଥାଏ । ଉପସ୍ଥିତ ଶ୍ରୋତମାନଙ୍କଠାରୁ ଅନୁରୋଧ ଆସିଲା, ଗୁରୁପ୍ରସାଦଙ୍କ କବିତାଟିଏ ଆବୃତ୍ତି କିରବା ଲାଗି । ଦୈବକ୍ରମେ ମୋ ସ୍ମୃତି ମୋର ଅନୁକୂଳ ଥିବାରୁ ମୁଁ ସହସା ଗୁରୁପ୍ରସାଦଙ୍କ 'ଚଂପାଫୁଲ' କବିତାଟି ଆବୃତ୍ତି କରି ପାରିଲି । ପ୍ରକାଶ ଥାଉକି ସଚ୍ଚି ରାଉତରାୟଙ୍କ 'ଛୋଟ ମୋର ଗାଁଟି'

ଆବୃତ୍ତିରୁ କବିତା ପଠୋତ୍ସବ ଆରମ୍ଭ ହୋଇଥିଲା । ମୋର ସୌଭାଗ୍ୟ ଯେ, ଶ୍ରୋତାମାନେ ସଚ୍ଚି ରାଉତରା, ଗୁରୁପ୍ରସାଦ ଓ ରମାକାନ୍ତଙ୍କ କବିତା ସଂପର୍କରେ କିଛିଟା ଅବଗତ ଥିଲେ ଓ ସେ ଦିଗରେ କେତେକ ପ୍ରଶ୍ନୋତ୍ତର ମଧ୍ୟ ହେଲା । ଶେଷକୁ ଯୁବକବିମାନଙ୍କର ଏକ ଇଂରାଜୀ କବିତା ପ୍ରତିଯୋଗିତାରେ ପୁରୋଧା ରୂପେ ମୁଁ ପୁରସ୍କାର ବିତରଣ କଲି ।

ଏହା ବ୍ୟତୀତ ଅନିବାସୀ ଓଡ଼ିଆ ଭାଇ ଭଉଣୀ ମାନଙ୍କୁ ମୁଁ ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ ଯୋଜନାବଦ୍ଧ ଭାବେ କିଛି କରିବାକୁ ଅନୁରୋଧ କରିଥିଲି-ଏହା ପୂର୍ବରୁକହିଛି ।

କବିତା ଅଧିବେଶନ ପୂର୍ବ ରାତିରୁ ପେପୁ ମୋତେ କହିଥିଲା 'ବୋଉ, ତୁମ ପୋଏଟ୍ରିସେସନ୍‌କୁ ମୁଁ ଯାଇ ପାରିବି ନାହିଁ, ପ୍ଲିଜ୍ ଡୋଣ୍ଟ ମାଇଣ୍ଡ ।' କାରଣ ? ତା'ର ସେତିକିବେଳେ ଲାଗଲାଗ ଦୁଇଟା ପ୍ରତିଯୋଗିତାରେ ଭାଗନେବାକୁ ଅଛି । ଆମେ ମାଆ ଝିଅ ଜାଣି ନାହୁଁ । କି ପ୍ରତିଯୋଗିତା ? ଓ.ସା ର ବାର୍ଷିକ ପ୍ରତିଯୋଗିତା ବି କିଶୋର ଓ ଶିଶୁ ମାନଙ୍କ ପାଇଁ ଅନୁଷ୍ଠିତ ହେଉଥାଏ । ସେହି ପ୍ରତିଯୋଗିତାର ନୋଟିସ୍ ଦେଖି ପୂର୍ବଦିନ ପେପୁ ପ୍ରତିଯୋଗୀଭାବେ ନିଜ ନାଆଁ ଦେଇଥାଏ । ଆମେ ଜାଣି ନଥାଉ । କନିଟା ବଡ ବ୍ୟସ୍ତ ହେଲା । ମାଆ ପାଖରେ ରହିବ ନା ପୁଅ ପାଖରେ ? ଏତେ ଛୋଟ ପିଲାଙ୍କୁ ଆମେରିକାରେ ଏକା ଛାଡ଼ିବା ଠିକ୍ ନୁହେଁ । ତେବେ ଦୁଇଟି ଯାକ ପ୍ରତିଯୋଗିତା ଓ କବିତା ଅଧିବେଶନ ସେଇ ଗୋଟିଏ ହୋଟେଲ ପରିସରରେ ଅନୁଷ୍ଠିତ ହେଉଥାଏ । କନି ଯାହା ଏପଟ ସେପଟ ହେଉଥାଏ । କବିତା ଅଧିବେଶନ ସରିଲା ବେଳକୁ ଦିନ ଏଗାରଟା । ମୋର ସେ ପର୍ଯ୍ୟନ୍ତ ପ୍ରାତରାଶ ବି ହୋଇ ନଥାଏ । ସକାଳ ସାତଟାରୁ ହୋଟେଲ୍‌ରେ ଦଶଟା ଯାଏ ବ୍ରେକ୍‌ଫାଷ୍ଟ ଦିଆଯାଏ- ପ୍ରଚୁର ଓ ବିଭିନ୍ନ ପ୍ରକାରର । ଚା, କଫି, କ୍ଷୀର ଯେତେ ପିଇବ ପିଅ । କିନ୍ତୁ ମୁଁ ଯେ ପନ୍ଦର ମିନିଟ୍‌ରେ ନିଦରୁ ଉଠି ପ୍ରସ୍ତୁତ ହୋଇ ଯାଇଛି । ପାଣି ପିଇଛି କି ନାହିଁ କେଜାଣି ! ଡାଇନିଂ ବନ୍ଦ ହୋଇଯିବ ବୋଲି କନି ଯା' ଭିତରେ ଯାଇ ମୋ ପାଇଁ ଜଳଖିଆ ଆଣି ରୁମ୍‌ରେ ରଖିଛି । ପୁଣି ପେପୁ ଆଣିଥାଏ ପ୍ରତିଯୋଗିତା ଫଳାଫଳ । ତା'ର ଅଙ୍କ ଦୌଡ଼ରେ (Math. race) ଓ ଚାମୁଚ ଦୌଡ଼ (Spoon race)ରେ ଉଭୟରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ସେଇ ପାଂଚ ତାରିଖ ଅପରାହ୍ଣର ଉତ୍ସବରେ ତାକୁ ପୁରସ୍କୃତ କରାଯିବ ।

ଠିକ୍ ତା' ପରେ ପରେ ଆମେ ଲେଜ୍-ଉଡ୍ ସହରରକୁ ଯିବୁ କନିର ସାଂଗ, ନିବେଦିତାର ଘରକୁ । ନିବେଦିତାର ଦେଢ଼ ମାସର ଝିଅ । ଆମେ ବାରଣ କଲାରୁ ସେ ବ୍ୟସ୍ତ ହେଲା । କହିଲା 'କନି ଆସିଚି, ଏତେ ପାଖକୁ ଦେଢ଼ଘଣ୍ଟାର ଡ୍ରାଇଭ୍-ମୋ ପାଖକୁ ଆସିବ ନାହିଁ ବୋଲି କେମିତି ଭାବୁଛି ? ଆମର ଆଉ ତା'ହେଲେ ଦେଖାହେବ କେବେ ?' ଅତଏବ ତାକୁ ଅପେକ୍ଷା କରି ସେଇ ସୁସଜ୍ଜିତ 'ଡୋରାଲ୍ ଫରେଷ୍ଟାଲ' ହୋଟେଲର ଲାଉଞ୍ଜରେ ଗପସପ କଲୁ । କେତେ ପରିଚିତ ଅପରିଚିତ ଲୋକ ଦେଖାହେଲେ-ମୋ ବକ୍ତବ୍ୟ ପାଇଁ ଅଜସ୍ର ପ୍ରଶଂସା ଅଜାଡ଼ି ଦେଲେ ମୋ ଉପରେ । ସତରେ କ'ଣ ମୁଁ ଏମିତି କିଛି କହିଛି ? ଭଲ ଲାଗିଛି ସେମାନଙ୍କୁ ?



# ଲେଜ୍‌ଉଡ୍‌ର ଉଜ୍ଜ୍ୱଳ ଘର

ଅପରାହ୍ଣ ଦୁଇଟା ବେଳକୁ ପହଂଚିଲା ନିବେଦତା । ସାଥିରେ ତା ସ୍ୱାମୀ ନୀରୋଦ ଓ ତାଙ୍କ ଗଳାରୁ ଝୁଲୁଥାଏ ଛଅ ସପ୍ତାହର ଶିଶୁକନ୍ୟା । ପ୍ରାୟ ଦେଢ଼ ଘଣ୍ଟା ଡ୍ରାଇଭ୍‌ରେ ସେମାନେ ଆସିଥାନ୍ତି, ଆମକୁ ନେବାକୁ । ନିବେଦିତା ପାଂଚବର୍ଷ ଲାଗି ଆମେରିକାରେ ପି.ଏଚ୍.ଡି କଲା ଓ ତା' ପରେ ଏ ସନ୍ତାନ । ନିବେଦିତାର ଘଞ୍ଚକେଶ, ସେ ବବ୍‌ଡ଼ କରିଥାଏ-ପିନ୍ଧିଥାଏ ମିଡ଼ି । ବହୁଦିନପରେ ତାକୁ ଦେଖିଲି । ଯା'ହଉ, ଆମେ ହୋଟେଲ୍‌ରୁ ବିଦାୟ ନେବାକୁ ବସିଲୁ । ମୋ ଝିଅ, ରାଜଶ୍ରୀ ଓ ନିବେଦିତା ଏମାନେ ସହପାଠିନୀ-ବିହ୍ୱଳ ହୋଇ କୋଳାକୋଳି ହେଲେ, ଫଟୋ ନେଲେ । ଆମେ ଲେଜ୍‌ଉଡ୍ ଅଭିମୁଖେ ବାହାରିଲୁ । ରାସ୍ତାସାରା ସୁ-ସଜ୍ଜିତ, ସୁନ୍ଦର ପ୍ରକୃତି-ମଝିରେ ଜଂଗଲ-ତା'ପରେ ସହରର କୋଳାହଳ । ସହରଠୁଁ ଅଳ୍ପ ଦୂରରେ ନିବେଦିତାର ଘର । ନୀରୋଦ ସର୍ବ ପ୍ରଥମେ ଛୁଆଟିକୁ ଧରି ଉପର ମହଲାକୁ ଚାଲିଗଲେ-ତା'ର ପରିଚର୍ଯ୍ୟା କରିବେ । ଆମେ ତଳ ମହଲାରେ, ଗପସପ, ତା' ପରେ ଗୁପ୍‌ଚୁପ୍ ଠାରୁ କେତେ ପ୍ରକାର ଖାଇବା । ଦିନଯାକ ସ୍ୱାମୀ ସ୍ତ୍ରୀ ମିଶି ଆମପାଇଁ ଏତକ ରାନ୍ଧିବାଢ଼ି ରଖିଛନ୍ତି । ଖାଇବାବେଳ ହେଲା । ଝିଅକୁ ଖୁଆଇ ନୀରୋଦ ତଳ ମହଲାକୁ ଆସିଲେ । 'ଝିଅ ଏକା-ତୁମେ ସମସ୍ତେ ତଳେ-ୟେ' କି କଥା !' ମୋ ଆଶଙ୍କାରେ ନିବେଦିତା କହିଲା- 'ହେଇ ଦେଖନ୍ତୁ,ଏଠି ବେବି ମନିଟର ଲାଗିଛି-ଝିଅର ନିଃଶ୍ୱାସ ପ୍ରଶ୍ୱାସ ପର୍ଯ୍ୟନ୍ତ ଏଥିରେ ଶୁଣା ଯାଉଛି । ଆମେ ଲକ୍ଷ୍ୟ ରଖିଛୁ ।' ବାଃ-ଖୁବ୍ ଚମତ୍କାର ଲାଗିଲା ମୋତେ । ବିଜ୍ଞାନର ସହଯୋଗ ଏଠାରେ କେତେ ନିକଟତର ହୋଇପାରିଛି !

ନିବେଦିତା ତା' ସନ୍ତାନ ଜନ୍ମ କାଳର କଥା କହି ପାଖରେ କହୁଥାଏ-ସେଠି ପ୍ରବଳ ଯନ୍ତ୍ରଣା ନ ଭୋଗିବା ନିମିତ୍ତ ନାନାଦି ସୁବିଧା ଅଛି । କଷ୍ଟ ବେଶୀ ଜଣାପଡ଼େ ନାହିଁ । ମା' ବା ଶାଶୁ କେହି ଆସିବା ଅବସ୍ଥାରେ ନଥିବାରୁ ସବୁ ଦାୟିତ୍ୱ ନୀରୋଦଙ୍କୁ ନେବାକୁ ହୋଇଥିଲା । ସେ ନୟାଗଡ଼ର ଲୋକ, ସେ ବି ଇଂଜିନିଅର । ନୟାଗଡ ଷ୍ଟାଇଲ୍‌ରେ ସେ କେତେକଥା ରାନ୍ଧିଥିଲେ । ଆମ୍ବୁଲ ଓ ବେସର ଦେଇ ସେ ମାଛ ଓ ଭେଣ୍ଡି ରାନ୍ଧିଥିଲେ । ନିବେଦିତା ମୋ ଝିଅ ମାନଙ୍କ କଥା କେତେ କେଜାଣି ପଚାରିଗଲା । କେବେ ମୋ ବଡ଼ ଝିଅ ଲେନି ତାକୁ ଆମ ଘରେ ମାଂସ ତରକାରୀ ଖୁଆଇଥିଲା, ସେ ମନେ ରଖିଛି । ନୀରୋଦ ମଧ୍ୟ ଆମ ସଂଗେ ନିବେଦିତା ଅତୀତର ବିଶ୍ଳେଷଣ ଶୁଣୁଥାନ୍ତି ।

ରାତି ଏଗାରଟା ବେଳକୁ ମୁଁ ଶୋଇବାକୁ ଗଲି । 'ଆଉ ନୁହେଁ ତୁମେ ଗପୁଥାଅ ।' ଶୁଣିଲି ଅସିତା ଓ ନିବେଦିତା ରାତି ଦୁଇଟାରୁ ଅଧିକ ଯାଏ ଗପସପ କରିଥିଲେ ।

ସକାଳ ନଅଟାରେ ଆମେ ଷ୍ଟେସନ ଯିବୁ । ପାଖାପାଖି ଘଣ୍ଟାକର ଡ୍ରାଇଭ୍ । କୁନି ଝିଅ 'ନେହା'କୁ ତଳ ମହଲାରେ କାର୍ପେଟ୍ ଉପରେ ବିଛଣା କରାଯାଇ ଶୁଆଗଲା । କନି, ନିବେଦିତାଙ୍କ ଗପ ସରୁ ନଥାଏ । ମୁଁ ନାତୁଣୀ ପାଖେ ବସି ନୀରୋଦଙ୍କ ସହ କଥା ହଉଥାଏ । ସେ କହିଲେ, 'ମାଉସୀ ଦୁଇବର୍ଷ ହେଲାଣି ଆମକୁ ଯେ ଘର ଅନ୍ଧାର ଲାଗୁଥିଲା । ଏ ପିଲାଟି ଆସିଲା ପରେ ଲାଗୁଛି, ଘର ଆଲୁଅରେ ଝଲ୍‌ମଲ୍ କରୁଛି ।' ବିବାହ ପରେ ନିବେଦିତା ଏଠାକୁ ଆସି ପାଂଚବର୍ଷ ଧରି ପି.ଏଚ୍.ଡି କରୁଥିଲା । ପଢ଼ା ସରିଲା ଚାକିରୀ କଲା ଏବଂ ପିଲାଜନ୍ମ କଥା ସେମାନେ ଭାବିଲେ । ତାଙ୍କର ଏଇ ନିଷ୍କପଟ କଥା ମୋତେ ଅଭିଭୂତ କଲା । ସତକଥା, ତା' ପରେ ଏଇ ସନ୍ତାନ ଲାଭର ଯୋଜନା । ତେଣୁ ବିଳମ୍ବିତ ନିଶ୍ଚୟ-ତେବେ ଏଇ ଅନ୍ଧାରରେ ରହିବାଟା ବଡ କଷ୍ଟକର ହୋଇଥିବ ! ଅସିତାର ପୁଅକୁ ଆଠ ବର୍ଷ ହେଲାଣି, ନିବେଦିତା କ୍ୟାରିୟର ପାଇଁ ଏତେ ବିଳମ୍ବରେ ସନ୍ତାନ ଲାଭକଲା । ଆମେ କେତେଗୁଡ଼ିଏ ଫଟୋନେଲୁ । ଷ୍ଟେସନକୁ ଛାଡ଼ିବାକୁ ଆସିଲା ନିବେଦିତା । କି ଫୁର୍ତ୍ତି ! ଖୁବ୍ ସ୍ପିଡ୍‌ରେ ଡ୍ରାଇଭ୍ କରୁଥାଏ । ଜୀବନଧାରା ଏଠାରେ ଖୁବ୍ ଦାୟିତ୍ୱସଂପନ୍ନତା ଓ ସାହସିକତା ଦାବି କରେ ।

ମୋର ମନେପଡ଼ିଲା, କୋଡ଼ିଏ ବର୍ଷ ବୟସରେ ମୋର ପ୍ରଥମ ସନ୍ତାନ ଜନ୍ମ । ଜନ୍ମ ପରେ ଦେଢ଼ ମାସ ଯାଏ ଦୁର୍ବଳତା ଭୋଗିଥିଲି । ଏଇ କାଲିର କଥା । ଝିଅ ରମାଦେବୀ କଲେଜ୍‌ରେ ଯୁକ୍ତ ଦୁଇ ବିଜ୍ଞାନ ପଢୁଥିଲା-ଆମ ଘରକୁ ଆସୁଥିଲା ନିବେଦିତା । ସଶଙ୍କ, ନମ୍ର କନିର ପ୍ରିୟ ବାନ୍ଧବୀ, ଆଜି ଜୀବନ ସଂଗ୍ରାମରେ ସଫଳ ଓ ସାହସିନୀ । ନିବେଦିତା ପ୍ରାୟ ଅଧଘଣ୍ଟା ଯାଏଁ ଷ୍ଟେସନରେ ଆମ ପାଖରେ ରହିଲା-ଟ୍ରେନ୍ ଭିତରେ ପଶିଲା-ମୁଁ କହିଲି, 'ଆଲୋ, ଯାଆ, ତୋ ଝିଅ ଖୋଜିବ ।' ମୋ କଥା ସେ ଶୁଣିଲା ନାହିଁ । ମୋତେ ଲାଗୁଥାଏ, କାଳେ ଟ୍ରେନ୍ ଛାଡ଼ିଯିବ, ସେ ଓହ୍ଲାଇ ନ ପାରିବ । ପୂର୍ବରୁ ଆମେରିକାର ଟ୍ରେନ୍ ସମ୍ବନ୍ଧରେ ଅନେକ କଥା ଶୁଣିଥିଲି । କିନ୍ତୁ ସଚେତନ ନାଗରିକ ପାଇଁ ଆମେରିକାର ସବୁ ବ୍ୟବସ୍ଥା ଯେ ଯଥେଷ୍ଟ...ଏହା ମୋର ହୃଦ୍‌ବୋଧ ହେଲା । ଟ୍ରେନ୍ ଛାଡ଼ିଲା -ଷ୍ଟେସନ୍‌ରେ ନିବେଦିତା ବିଦାୟର ହାତ ହଲାଉଥାଏ । ମନେହେଲା ଯେମିତି ମୁଁ ମୋର ଗୋଟିଏ ଝିଅକୁ ସେଠାରେ ଛାଡ଼ି ଆସିଲି ।



# କୁହୁଡ଼ିର ସୁନ୍ଦରୀ

ଅନନ୍ତକାଳରୁ ଅପେକ୍ଷା କରି ରହିଥାଏ ସେ ସୁନ୍ଦରୀ, ବିଶ୍ୱବାସୀଙ୍କୁ ।

ଲା' ଗାଡ଼ିଆ ଏୟାରପୋର୍ଟ ନ୍ୟୁୟର୍କରୁ ସକାଳ ଛଅଟାରେ ପ୍ଲେନ୍ ଛାଡ଼ିଲା । ଭୋର ଚାରିଟାରୁ ଆମେ ଏୟାରପୋର୍ଟରେ ପହଞ୍ଚିଥାଉ । ଅସିତା, ଅକ୍ଷର ଓ ମୁଁ । କଫି ବାର୍‌ରେ କିଛି ଖାଇ ସାରିଥିଲୁ ସେତେବେଳକୁ । ଶେଷ ମୁହୂର୍ତ୍ତରେ ଆମ ପ୍ଲେନ୍ ଗେଟ୍ ବଦଳାଇଲା । ତେବେ ବଦଳିବା ଗେଟ୍‌ଟି ପୂର୍ବ ଘୋଷିତ ଗେଟ୍‌ର ବେଶି ଦୂରରେ ନଥିଲା । ପ୍ଲେନ୍‌ଟି ଦେଖିଲା ବେଳକୁ ଅତି ଛୋଟ-ଅଠରଟି ସିଟ୍, ସତରଜଣ ଯାତ୍ରୀ । ଏଇ ପ୍ଲେନ୍‌ଟି ମୋ ଦେଖିବା ଓ ଯାତ୍ରା କରିବା ପ୍ଲେନ୍ ଭିତରେ ସବୁଠାରୁ ଛୋଟ । ଆକାଶକୁ ଉଠିଲା ପରେ ପରେ ବର୍ଷା । ପ୍ଲେନ୍‌ର ଝରକା କାଚ ଉପର ଦେଇ ବର୍ଷା ଝରି ବୋହିଯାଉଥାଏ । ଶୀତ ବି ଲାଗୁଥାଏ । ଅବଶ୍ୟ ଆମେରିକାବାସୀଙ୍କ ପାଇଁ ଯେ ଗ୍ରୀଷ୍ମଋତୁ । କିନ୍ତୁ ପୂର୍ବ ଉପକୂଳରୁ ଆମେ ଚାଲିଥାଉଁ ଉତ୍ତରକୁ । ତଳକୁ ଚାହିଁଲା ବେଳକୁ ସୂର୍ଯ୍ୟାଲୋକ ଦିଶୁ ନଥାଏ-ମାନ୍ଦା, କୋହଲା ଦିଶୁଥାଏ । ଖାଲି ସବୁଜ ରଙ୍ଗର ଭୂଚିତ୍ର, କେଉଁଠି ଗାଢ଼, କେଉଁଠି ଫିକା, କେଉଁଠି ବା ମିଶାମିଶି । ନଦୀମାନଙ୍କ ଜଳଧାର ଖୁବ୍ କ୍ଷୀଣ । ଏତେ ଉପରୁ କ୍ଷୀଣତର ପ୍ରତୀତ ହେଉଥାଏ । ଦୀର୍ଘ ଭୂଚିତ୍ର ପରେ ଆସେ ଜଙ୍ଗଲ । ବଡ଼ ବଡ଼ ଗଛର ଗାଢ଼ ସବୁଜ ନୀଳ ଉପରେ ପ୍ରବଳ କୁହୁଡ଼ି ଭଳି ବଉଦ । ବାହାରକୁ ଅନାଇଁ ଆମ୍ଭହରା ହେଉ ନ ହେଉଣୁ ଆମର ଚିନ୍ତା ପଡ଼ିଲା ଯେ, ବଫ୍‌ଲୋରେ ତ ବର୍ଷା ହେଉଥିବ, ଆମେ ତେବେ ନାଏଗ୍ରା ଦେଖିବା କେମିତି ? ଆମ ଯୋଜନାରେ ମାତ୍ର ସେଇ ଜୁଲାଇ ସାତ ତାରିଖଟି ଥାଏ ନାଏଗ୍ରା ପାଇଁ ଉଦ୍ଦିଷ୍ଟ । ଅଥଚ, ସକାଳ ଆଠଟା ପାଖାପାଖି ହେଲାଣି, ବର୍ଷା ହିଁ ବର୍ଷା । ଦୁଇଘଣ୍ଟାର ଡ୍ରାଇଭ୍ କରି ପୁତୁରା ସୁନୁ ଆସିଥିବ 'ଇରି' ସହରରୁ ବଫ୍‌ଲୋ । ଯେ ବର୍ଷାରେ ସେ କି ହିନସ୍ତା ହେଉଥିବ । ଆମର ପୁଣି ବଫ୍‌ଲୋରେ ରହଣି ବ୍ୟବସ୍ଥା ହୋଇନାହିଁ । ମନ ମରିଯାଉଥାଏ । ପ୍ଲେନ୍ ବଫ୍‌ଲୋରେ ଓହ୍ଲାଇଲା ଆଠଟାରେ ।

ଆମେ ଲଗେଜ ଧରି ବାହାରକୁ ଆସିବାର ଉପକ୍ରମ କରୁ କରୁ କାଚ ଫାଟକର ଆର ପାଖରେ ଦେଖିଲୁ ସୁନୁ ଛିଡା ହୋଇଛି । ମୋ ପୁତୁରା(ବଡ଼ ଦେଢ଼ଶୁରଙ୍କ ପୁଅ, ଏଠାରେ ଡାକ୍ତର) ।'ଭୋର ପାଂଚଟାରୁ ଘରୁ ବାହାରିଲି ଯେ ବର୍ଷା, ବର୍ଷା । କାଳେ ଡେରି ହେଇଯିବ, ତୁମେ ପହଞ୍ଚି ମୋତେ ଦେଖିବ ନାହିଁ, ତେଣୁ

ମୋର ବ୍ୟସ୍ତତା ବଢ଼ିଗଲା ।' ଯାହେଉ, ଏଇ ମାତ୍ର ବର୍ଷା ଛାଡ଼ିଛି । ଆମେ ବଫ୍‌ଲୋରୁ ନାଏଗ୍ରା ଅଭିମୁଖେ ବାହାରିଲୁ । ବାଟ ସାରା ମ୍ୟାପ୍ ଦେଖି ଦେଖି ଯିବାକୁ ହେଉଥାଏ । ସୁନୁ ଅବଶ୍ୟ ଇରିରୁ ନାଏଗ୍ରାକୁ ବହୁବାର ଆସିଛି । ମାତ୍ର ଏଇ ରାସ୍ତା ଅଲଗା । ପ୍ରଶସ୍ତ ରାସ୍ତା, ବିଭିନ୍ନ ଦିଗକୁ । ରାସ୍ତାକଡ଼ରେ ନିର୍ଦ୍ଦେଶ, ମ୍ୟାପ୍‌ରେ ଚିତ୍ର । ସୁନୁ ଆମକୁ ଗୋଟେ ଭଲ ରେଷ୍ଟୋରାଁକୁ ନେଇଗଲା । ସବୁ ରେଷ୍ଟୋରାଁରେ ପରିଚ୍ଛନ୍ନ ଶୌଚାଳୟ । ଆମେ ସେଠାରେ ଗପସପ କରି ପ୍ରାତଃକାର୍ଯ୍ୟ ସାରି ପ୍ରାୟ ଘଣ୍ଟାକ ପରେ ବାହାରିଲୁ । ରାତି ଅଧରୁ ଉଠିଥିବା ଅନିଦ୍ରାରୁ ପ୍ରାୟ ମୁକୁଳିଗଲୁ, ନାଏଗ୍ରା ଦେଖିବାର ଉତ୍ସାହରେ ।

ମୋ ଝିଅର ବାସସ୍ଥାନ ଆମେରିକାର ଦକ୍ଷିଣ, ଟେକ୍ସାସ ରାଜ୍ୟର ଡାଲାସ୍‌ସ୍ଥିତ ଆର୍ଲିଂଟନ୍ ୟୁନିଭ କ୍ୟାମ୍ପସ୍‌ରେ । ଅଥଚ ଆମେ ଉତ୍ତର ଆମେରିକାର ଉତ୍ତର-ପୂର୍ବ ଶେଷ ପର୍ଯ୍ୟାୟକୁ ଆସିଛୁ । ଝିଅମାନେ ସୁନୁକୁ କହି ଏ ଯୋଜନା ସ୍ଥିର କରିଥିଲେ । ଏଣେ ଅସିତା, ମତେ ଓ ତା'ର ଆଠବର୍ଷର ପୁଅକୁ ନେଇ ଏଡେ ଶୃଙ୍ଖଳାର ସହ ଟୁର୍ କାର୍ଯ୍ୟକାରୀ କଲା ଯେ, ଅନେକ ଦର୍ଶନୀୟ ସ୍ଥାନ ଦେଖିବାର ସୁଯୋଗ ମିଳିଗଲା । ଯା' ହଉ, ପ୍ରକୃତି ବି ସହଯୋଗ କରି ସେଦିନ ବଉଦର ପର୍ଦ୍ଦା ଟେକି ସୂର୍ଯ୍ୟଙ୍କ ମୁହଁ ଦେଖାଇ ଦେଲା । ଦିନ ପ୍ରାୟ ଏଗାରଟା ବେଳକୁ ଆମେ ନାଏଗ୍ରା ପରିଦର୍ଶନ ନିମନ୍ତେ ଟିକେଟ କଲୁ । ଇରିହ୍ରଦ, ଓଣ୍ଟାରିଓ ହ୍ରଦ ଓ ମିଶିଗାନ ଏବଂ ହଡସନ ଚରିଟି ହ୍ରଦର ଜଳ ପ୍ରବଳ ପ୍ରମତ୍ତ ଭାବେ ମାଡ଼ି ଚାଲିଛନ୍ତି । ପରେ ପରେ ପ୍ରପାତ । ଗୋଟେ ଲିଫ୍‌ଟରେ ଉଠି, ପୁଣି ଓହ୍ଲାଇ ଆମେ ପ୍ରପାତର ପାଣିଧାରଠୁଁ କିଛି ଦୂରରେ ପହଞ୍ଚିଲୁ । ଚାରିକଡ଼େ ବଡ ବଡ଼ ପଥର ଖଣ୍ଡ । ଅଥଚ ତା ଭିତରେ ଗୋଟେ ଛଅ ସାତ ଫୁଟ ଲମ୍ବ ସାପ, ବ୍ୟାସରେ ଦୁଇଇଞ୍ଚ ହେବ । ଦୁଇ ଚାରି ଜଣ ଯୁବକ ସାପଟିକୁ ପଥର ଓ କାଠ ଧରି ପିଟୁଥାଆନ୍ତି । ସେ ଅର୍ଦ୍ଧମୃତ ହୋଇ ଲଡ଼ବଡ଼ ହଉଥାଏ ତଥାପି । ଆଶ୍ଚର୍ଯ୍ୟ କଥା ତ ! ଯେ ଲୋକ ଗହଳି ଭିତରେ ଏ ସାପ ଆସିଲା କୁଆଡୁ ! ମୋର ରହଣିକାଳ ତିନି ମାସରୁ ଉର୍ଦ୍ଧ୍ୱ ହୋଇଥିଲେ ବି ବଣ ପାହାଡ଼ ବୁଲିଥିଲେ ବି, ଜୀବନ୍ତ ସାପ ମୁଁ ଆଉ କୋଉଠି ଦେଖିନାହିଁ । ଯଦିଓ ସାପ ଯାଆ ଆସ କରିବାର ଶୁଣିଛି ।

ନାଏଗ୍ରା ପ୍ରପାତ ବିଶ୍ୱବିଖ୍ୟାତ, ଏଡ଼େ ବିପୁଳ, ଦୀର୍ଘ ଓ ତୀବ୍ର ପ୍ରପାତ ବୋଧହୁଏ ବିଶ୍ୱରେ ବିରଳ । ଆମେରିକା ଯିବ, ନାଏଗ୍ରା ନଦେଖି ଫେରିବ ! ନାଏଗ୍ରାର ମହିମା ଶ୍ରବଣ କରିଥିଲି ପୂଜ୍ୟଗୁରୁ ସ୍ୱର୍ଗତ ପ୍ରଫେସର କୁଂଜବିହାରୀ ଦାଶଙ୍କଠାରୁ । ପ୍ରଥମଥର ଆମେରିକା ଭ୍ରମଣରେ ଯାଇ ସେ ନାଏଗ୍ରା ଦେଖିଥିଲେ । ଆହୁରି କେତେ

ବନ୍ଧୁଙ୍କଠାରୁ ଶୁଣିଥିଲି ନାଏଗ୍ରାର ବର୍ଣ୍ଣନା । ବଡ଼ଝିଅଠାରେ ଦେଖିଥିଲି ଫଟୋ ଓ ଶୁଣିଥିଲି ଏହି ପ୍ରପାତ ସମ୍ବନ୍ଧରେ । ଏବେ ଚକ୍ଷୁ କର୍ଣ୍ଣର ବିବାଦ ତୁଟିବ-ଦୃଶ୍ୟ ଦର୍ଶକ ହେବେ ସାମ୍ନାସାମ୍ନି-କେମିତି ପ୍ରପାତ ! ପ୍ରପାତ କହିଲେ ଦିଶିଯାଏ ଡୁଡୁମା ଜଳ ପ୍ରପାତ, ପାଂଚ ବର୍ଷ ବାଳିକାର ଆଖିରେ ଧୂଆଁ, ଧୂଳି, ଇନ୍ଦ୍ରଧନୁ, କାହିଁ ଉପରୁ ଡ଼େଇଁ ପଡିଚି ମାଛକୁଣ୍ଡ ନଦୀ । ପରେ, ପ୍ରପାତ କହିଲେ ପଶ୍ଚିମ ଘାଟର 'ଦୁଧସାଗର' ପ୍ରପାତ । ଆହୁରି କେତେ ପ୍ରପାତ ମୟୂରଭଂଜ ବରେଇପାଣି, ଯୋରନ୍ଦା, ଦେବକୁଣ୍ଡ, କୋରାପୁଟ ବିଷମକଟକ, କଳାହାଣ୍ଡିର ଫୁଲୁରିଝରଣ, ଦେବଗଡ଼ର ପ୍ରଧାନପାଟ, ବଲାଂଗୀରର ହରିଶଂକର ଛୋଟବଡ଼ କୋଉଠି କେତେ ପ୍ରପାତ । କିନ୍ତୁ ଯେ ନାଏଗ୍ରା, ତା'ର ଉପର ମୁଣ୍ଡରୁ ପର୍ଯ୍ୟଟକମାନେ ତାକୁ ଦେଖନ୍ତି ଓ ବହୁ ତଳକୁ ଓହ୍ଲାଇ ତାର ପ୍ରପାତ ମୁଖ ପର୍ଯ୍ୟନ୍ତ ଯାଆନ୍ତି । ଅନ୍ୟଠାରେ ପ୍ରପାତମାନେ ଉତ୍ସମୁଖର ନିମ୍ନତମ ଭୂମିରୁ ବା ମଧ୍ୟ ଭୂମିରୁ ଦେଖିବାକୁ ମିଳିଥାନ୍ତି । ଉତ୍ସମୁଖ ଥାଏ ଆଦୃଶ୍ୟ । କିନ୍ତୁ ଏଠାରେ ଭାଙ୍ଗିପଡ଼ିବା ପୂର୍ବରୁ, ପ୍ରପାତ ସୃଷ୍ଟି ହେବା ପୂର୍ବରୁ ବ୍ୟଗ୍ର ଭାବେ ଧାଉଁଥିବା ପ୍ରଖର ସ୍ରୋତ ସହିତ ସାକ୍ଷାତ ହୋଇପାରେ । ସ୍ରୋତର ଏଇ ତୀବ୍ରତା ଓ ବ୍ୟଗ୍ରତା ଓ ତା ସହିତ ବିପୁଳତା ବାସ୍ତବିକ ଦର୍ଶନୀୟ । ଖଳଖଳ ଗଳଗଳ ଶବ୍ଦରେ ନୀଳ ସବୁଜ ଜଳରାଶି ଧାଇଁ ଚାଲିଚି-ଭାଙ୍ଗିପଡୁଚି ଘନଘୋର ନାଦରେ ଅନ୍ଧ ଭାବରେ-ବିବାହ-ଓଢ଼ଣୀର ଆକାର ହୋଇଥିବା ଏହି ନାଏଗ୍ରା (ଆମେରିକାର ଅଂଶରେ) ଚଳମାନ ବରଫପର୍ବତ ପରି ଗଦା ହେଉଛି  ଗହ୍ବରରେ, ଅଥଚ ପ୍ରକୃତିର ଏଇ ଭୀମଲୀଳାକୁ  ଭୟ କରେନା ମଣିଷ-ବିଜ୍ଞାନ ବଳରେ ସେ ବଳୀୟାନ୍ । ବିରାଟ ଲଞ୍ଚରେ ଚଢ଼ି ସେ ଚାଲି ଯାଉଛି ପ୍ରପାତର ସାମ୍ନାକୁ-ଭୀମଭୟଙ୍କର ଗର୍ଜନରେ ଭାଙ୍ଗିପଡୁଥିବା ଜଳରାଶିର ମୁହଁ ପାଖକୁ । ଭୀତି ସଂଚାରକ ଏଇ ନାଏଗ୍ରା ପ୍ରପାତର  ଗହ୍ବର ମୁଖକୁ ପହଂଚିଲେ ଡ଼ର ଡ଼ର ମାଡ଼େ, ପାଣି ତୋଡ଼ ଓ ଛିଟିକାରେ ଆଖି ବୁଜି ହେଇଯାଏ । ଦୃଶ୍ୟର ଅବ୍ୟବହିତପରେ, ଟିକେ ପରେ ମୋର ମନେ ପଡୁଥାଏ ହରିଶଙ୍କର ପ୍ରପାତ-ଯେଉଁଠି ବହୁବର୍ଷ ତଳେ ଲୁଗାକୁ ଅଣ୍ଟାରେ ଭିଡି ମୁଁ ମନଇଚ୍ଛା ଗାଧେଇଥିଲି -ସ୍ରୋତ ସହିତ ବାରବାର ଖସି ପଡୁଥିଲି ତଳକୁ । ତା'ର ଶିଉଳି ଲଗା ପଥର କାଛିଦେଇ । ସାଂଗରେ ଥାନ୍ତି ମୋର ସ୍ୱାମୀ, ପାପା'ନୀ, ନୀଳମଣିବାବୁ, କବି ପ୍ରମୋଦ ମହାନ୍ତି । ସତରେ କବି ରାଧାନାଥଙ୍କ ଅଂଗେ ନିଭାଇବା ଦୃଶ୍ୟ ଯେ ।

'ଗୁରୁ ପ୍ରାୟେ ତାଙ୍କୁ ଦୂରୁ କରିଭୀତି
ସଖୀ ପ୍ରାୟ ତୋତେ ସ୍ମରୁ ଥିଲି ନିତି'
ସଖୀ ଯଦି ହରିଶଂକର ପ୍ରପାତ, ଗୁରୁ ହିଁ ହେବ ନାଏଗ୍ରା ।

ତା ସ୍ରୋତରେ ଶରୀର ଅବଗାହନ ସଂଭବ ନୁହେଁ । ଭୀତି ସଞ୍ଚାରକ ହେଲେ ବି ମଣିଷ ନିରାପଦ ସେଠାରେ । ସୂର୍ଯ୍ୟ କିରଣରେ ଅସଂଖ୍ୟ ଛୋଟ ବଡ଼ ଇନ୍ଦ୍ରଧନୁ-ଗଢ଼ିହେଉଛି ପୁଣି ମିଳେଇ ଯାଉଛି । ଦୃଶ୍ୟ ସହ ଦର୍ଶକ ଏକ ଓ ଅଭିନ୍ନ ହୋଇଗଲେ, ବୋଧହୁଏ ରହସ୍ୟ ଅନ୍ତର୍ଦ୍ଧାନ ହୋଇଯାଏ । ଏତେ ନିକଟରେ ନାଏଗ୍ରା । ପାଣି ଛାଟରେ ଓଦା ଲଞ୍ଚ ଯାତ୍ରୀମାନଙ୍କ ହୋ ହଲ୍ଲା । ନୀରବରେ କୋଳାହତରହିତ ହୋଇ, ଧ୍ୟାନସ୍ଥ ହୋଇ କ୍ଷଣକ ପାଇଁ ଅନୁଭବ କରି ହେଲା ନାହିଁ ସେ ଦୃଶ୍ୟ-ଆଖି ନେଇ ହୃଦୟ ପାଖରେ ସମର୍ପି ଦେବାପରେ, ହୃଦୟ ଧ୍ୟାନସ୍ଥ ହୋଇ ରହି ପାରିଲା ନାହିଁ- ସବୁ ବିରଳ ସୁନ୍ଦର ଅନୁଭବର ପରିଣତି ହିଁ ଅତୃପ୍ତି ଅବା !

ବିରାଟ ଲମ୍ବା କ୍ୟୁ । ମୋତେ ପ୍ରଥମେ ପ୍ରଥମେ ବଡ଼ ଅଧୈର୍ଯ୍ୟ ଲାଗୁଥିଲା । ଏତେ ଲମ୍ବା କ୍ୟୁ-କେତେବେଳେ ତୁମେ ତା'ହେଲେ ପହଞ୍ଚିବ, ତୁମ ପାଳି ପଡ଼ିବ ! କିନ୍ତୁ ଆମେରିକାର ଏଇ ନିୟମ କେଡ଼େ ସହଜ ଓ ଆବଶ୍ୟକ ତା' ସମୟକ୍ରମେ ଜାଣିଗଲି । ତୁମ ଆଗରେ ଯେତେ ଲମ୍ବା କ୍ୟୁ ଥାଉ ନା କାହିଁକି, ଦଶପନ୍ଦର ମିନିଟ୍ ଭିତରେ ତୁମ ପାଳି ପଡ଼ିଯିବ । ସମସ୍ତେ ସଚେତନ । ଆମକୁ ସେଠାରେ ଗୋଟେ ଗୋଟେ ନୀଳ ରଂଗ ପଲିଥିନ୍‌ର ପାଦ ଯାଏଁ ଲମ୍ବା ପୂରା ହାତବାଲା ପୋଷାକ ମିଳିଲା । କାରଣ ଆମେ ଲଞ୍ଚରେ ପ୍ରପାତ ମୁହଁ ସାମ୍ନାକୁ ଯିବୁ । ବରଫ ସ୍ରୋତ ଭଳି, ଘଞ୍ଚ ଧୂଆଁଭଳି ଦିଶୁଥିବା ଭୟଙ୍କର ବେଗରେ ଲମ୍ଫ ଦେଉଥିବା ନାଏଗ୍ରା ପ୍ରପାତ ମୁହଁକୁ ଯିବାକୁ କୌତୂହଳ ଥିଲେ ବି, ତାହା ଯେ ଆଦୌ ଭୀତି ସଞ୍ଚାର ନ କରେ, ନୁହେଁ । ସେଇ ପୋଷାକ ପିନ୍ଧି ଲଞ୍ଚର ବାଲ୍‌କୋନିରୁ ତିନ୍ତିବୁଡି ଆମେ ପ୍ରପାତ ଦେଖୁଥାଉ । ବିଶ୍ୱର ଏକ ଦର୍ଶନୀୟ ସ୍ଥାନ । ଅସିତା କିନ୍ତୁ ଲଞ୍ଚର ସବା ଉପରେ ରହି କ୍ୟାଂକଡର୍‌ରେ ଫଟୋ ନେଉଥାଏ । ଘୋର ଗର୍ଜନରେ ଭାଙ୍ଗି ପଡୁଥାଏ ଆକାଶ ପୃଥିବୀ ସତେ କି ! ଟଳମଟଳ ଲଞ୍ଚ, ଆମେ ପୂରା ଓଦା । ପୋଷାକଟି ଜାଣ ବାଆକୁ ବତା । ଦୂରରୁ ଦିଶୁଥାଏ ପ୍ରପାତର କାନାଡାସ୍ଥ ଅଂଶ । ଏହାର ନାମ 'ଘୋଡାର ଜୋତା', ଏପଟର ଆମେରିକାସ୍ଥ ଅଂଶଟି 'ବଧୂର ଓଢ଼ଣୀ' । ଆକାର ଅନୁସାରେ ଏ ଦୁଇଟି ଅଂଶର ନାମକରଣ ହୋଇଛି । ଆମେରିକା ଓ କାନାଡ଼ାର ସୀମାରେ ଏଇ ପ୍ରପାତ । କାନାଡ଼ାର ସୀମା ଟପିବାରେ ଆଜିକାଲି ନାନା କଟକଣା । ସେଠାକୁ ଗଲେ 'ଭିସା' କରିବାକୁ ହେବ, ସମୟ ଦରକାର । ଆମ ହାତରେ ସମୟ କମ୍ । ସମୟ ଅଭାବ ପାଇଁ ସବୁ ସୁନ୍ଦର ସ୍ଥାନ, ଆକର୍ଷଣୀୟ ଅନୁଭବକୁ ଅଧା ରଖିବାକୁ ପଡ଼େ । ବର୍ଷା ବନ୍ଦ, ବାଦଲ

ଅପସରି ଯାଇଛି ଏତେବେଳକୁ । ମଧ୍ୟାହ୍ନ ବାରଟା-ସୂର୍ଯ୍ୟ ବୋଧେ ଏଥର ପ୍ରପାତ ଉପରକୁ ଅନାଇଦେଲେ-ଅପୂର୍ବ ଶୋଭାର ଇନ୍ଦ୍ରଧନୁ ଖେଳିଗଲା-ଖଣ୍ଡ ଖଣ୍ଡ ଯୋଡ଼ି, ଲମ୍ୱା, ବକ୍ର, ଅସଂଖ୍ୟ ଇନ୍ଦ୍ରଧନୁ-ସୂର୍ଯ୍ୟାଲୋକର କରାମତି-ଏ ଅନନ୍ୟ ଲୀଳାର ପଟାନ୍ତର ନାହିଁ ସତରେ ! ପରିଦର୍ଶମାନଙ୍କର ଆନନ୍ଦ ଧ୍ୱନି, ଚିତ୍କାର । ଆମଠୁଁ ଟିକେ ଛଡ଼ାରେ କାନାଡାପଟ ପ୍ରପାତର ଯାତ୍ରୀ ଗଣ । ତାଙ୍କ ପୋଷାକର ରଂଗ ହଳଦିଆ । ସ୍ଥଳଭାଗ ସିନା ଦୁଇଭାଗ, ଜଳ କିନ୍ତୁ ଦୁଇଭାଗ ହୋଇପାରି ନାହିଁ । କେବଳ ଯାହା ଫେରି, ଲଞ୍ଚ, ଯାତ୍ରୀଙ୍କ ପୋଷାକର ରଂଗରେ ପ୍ରଭେଦ । ଆମେ ଅଧା ଓଦାହୋଇ କୂଳକୁ ଆସିଲୁ । ଟୟ ଟ୍ରେନ୍ ଅଛି-ଟିକେଟର ଦାମ୍ ବେଶ୍ ଚଢ଼ା । ସେଥିରେ ବସି ଆମେ ନାଏଗ୍ରା ପ୍ରପାତର  ନିକଟବର୍ତ୍ତୀ ସ୍ଥାନସବୁ ଦେଖିଲୁ । ତା' ଉପ୍ର ବକ୍ଷରେ ନିର୍ମିତ ପୋଲ ଉପରେ ଗଲୁ । ବହୁ ଦୂରରୁ ପ୍ରପାତ ଅଭିମୁଖେ ଧାଇଁଥିବା ଗଦଗଦ୍ ଜଳସ୍ରୋତର ଦୁଇକଡ଼ରେ ଘୂରିଲୁ । କେତେ ବଡ଼ ବଡ଼ ଗଛ ସେ ପାଣିତୋଡ଼ରେ ଉପୁଡ଼ି ପଡ଼ିଥିବାର ଦେଖିଲୁ । ଦେଖିଲୁ ମଧ୍ୟ ତୀରର ବୃକ୍ଷଗୁଡିକୁ ସୁରକ୍ଷା ଦେବାର ବିଭିନ୍ନ ଉପାୟ । ସେ ଦିଗରେ ଆମେରିକା ସରକାର ଓ ବେସରକାରୀ ସଂସ୍ଥାମାନେ ସଜାଗ । ପ୍ରାୟ ଦୁଇଟା ବେଳକୁ ଆମେ ନାଏଗ୍ରା ଛାଡ଼ିଲୁ । ଇରି ଅଭିମୁଖେ ବାହାରିଲୁ । ଇରି ହ୍ରଦ ମୋର ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ସବୁଠୁଁ ପ୍ରିୟ ।



# ବାଲିରେ ମୋ ଲେଖା ଥିବ, ମୁଁ ନଥିବି...

'ଇରି' ସହର ଦିଗରେ ଦ୍ରୁତ ଡ୍ରାଇଭ୍ କରି ଆମେ ଚାଲିଥାଉ । ପ୍ରଶସ୍ତ, ପରିଛନ୍ନ ରାସ୍ତାର ଦୁଇକଡ଼ରେ ବହୁଜାତିର ଫୁଲ-ତଳୁ ଚାରି ପାଂଚ ଫୁଟ ଉପରକୁ ଉଠାଣିରେ ଫୁଟିଥାଏ-ସେବତୀଗଛପରି ଉଚ୍ଚା ଗଛ ସବୁ, ବିଭିନ୍ନ ରଂଗ, ତା' ଉପରକୁ ନିଘଞ୍ଚ ଜଂଗଲ-ଜଂଗଲ ଅର୍ଥାତ୍ ବଡ଼ ବଡ ସବୁଜ ଗଛ ଖୁନ୍ଦାଖୁନ୍ଦି-ସତେ କି ପ୍ରତିଦନ ପ୍ରଚୁର ପାଣିଢ଼ାଳି କିଏ ସେ ସବୁର ଯତ୍ନ ନେଉଛି । ଦୁଇଘଣ୍ଟାର ଯେ ଡ୍ରାଇଭ୍ ଭିତରେ, ପ୍ରାୟ ଦେଢ଼ଘଣ୍ଟା ଧରି ଆମେ ଅତିକ୍ରମ କରିଚାଲିଲୁ ଅଂଗୁର କ୍ଷେତ । ରାସ୍ତା ଦି' ପାଖରେ ମାଇଲ୍ ମାଇଲ୍ ବ୍ୟାପୀ ଅଂଗୁର କ୍ଷେତ । ସବୁଜ, ଘଞ୍ଚ, ଧାଡ଼ି ଧାଡ଼ି, ଟିକେ ଧିମେଇଁ ଯାଇ ଆମେ ସେ ସବୁ ଦେଖିଲୁ । ଲମ୍ବା, ବଡ଼ ବଡ଼ ବୁଦା ସଯତ୍ନ ଲାଳିତ କ୍ଷେତ । ଅଥଚ ପାଖକୁ ଯାଇ ହାତ ଲଗାଇବା ସୁବିଧା ନାହିଁ । ରାସ୍ତାରେ ବେଶି ସଂଖ୍ୟାରେ ଗାଡ଼ି ନଥିଲେ ବି, ଏଠାଭଳି ଯୋଉଠି ସେଠି ତୁମେ ମୁଖ୍ୟ ରାସ୍ତାରେ ଗାଡ଼ି ଅଟକାଇ ପାରିବ ନାହିଁ, ଯା' ହଉ 'ଇରି' ଉପସାଗର କୂଳରେ ଅବସ୍ଥିତ ଇରି ସହର ପ୍ରତି ଆମର ଉତ୍କଣ୍ଠା ବଢୁଥିଲା । ଇରି ଛୋଟ ସହରଟିଏ । ମୁଖ୍ୟ ସହର ଟପି ଆମେ ସହରତଳି ଅଞ୍ଚଳକୁ ପଶିଲୁ । ଖୁବ୍ ଛଡା ଛଡାରେ ବଂଲୋ ଭଳି ଘର । ସୁନୁର ଘର । ତା' ସ୍ତ୍ରୀ 'ଯେଷ୍ଟା' (ଇଣ୍ଡିଆନ୍-କାନାଡ଼ିଆନ୍ ଝିଅ) ଓ ତାର ଦୁଇବର୍ଷର ଝିଅ ଅଂଜ୍ଲି ଘରେ ନଥାନ୍ତି । ସେମାନେ କେତେ ଦିନ ପାଇଁ ଯେଷ୍ଟାର ଭଉଣୀ ଘରକୁ ଯାଇଥାନ୍ତି । ସୁନୁ ଆମକୁ ବାଟରେ କହିଥିଲା ଯେ, 'ତୁମେମାନେ ଆସିବ ବୋଲି ମୁଁ ଗତକାଲି ରବିବାର ଛୁଟିଦିନରେ ବଗିଚାରୁ ତିନି ଘଣ୍ଟା ଧରି ଘାସ କାଟିଛି । ମେସିନ୍ ଅଛି, ହେଲେ ସବୁକାମ ତ ହାତରେ କରିବାକୁ ପଡ଼େ ।'

ସୁନୁଘରେ ପହଂଚିଲା ବେଳକୁ ଅପରାହ୍ଣ ଚାରିଟା । ଅବଶ୍ୟ, ସଂଧ୍ୟା ତ ହୁଏ ଆଠଟାରେ-ଚିନ୍ତା ନଥିଲା । ଘରେ ପଶୁ ପଶୁ ପ୍ରଥମ ସାକ୍ଷାତ 'କୁକି' ସହିତ-କଳା,ମୋଟା ବିରାଡ଼ିଟିଏ । ବିବାହ ପୂର୍ବରୁ ଯେଷ୍ଟା ଏଇଟିକୁ ପାଳିଥିଲା । ତେଣୁ 'କୁକି' ବଡ଼ ଯତ୍ନରେ ଥାଏ । ପେପୁର ବିରାଡ଼ିକୁ ପ୍ରାଣେ ଭୟ । ଏଣେ ବିରାଡ଼ି ଗୋଡ଼ ପାଖକୁ ଲାଗି ଆସୁଥାଏ । ତାର ସ୍ୱତନ୍ତ୍ର ରହିବା ଘର, ଶୋଇବା ସ୍ଥାନ ଓ ଖାଇବା ବାସନ ଥାଏ । ବର୍ତ୍ତମାନ ସୁନୁର ଉପର ମହଲାରେ ମୋ ପାଇଁ ରୁମ୍ ଓ କନି, ପେପୁଙ୍କ ପାଇଁ ଅଲଗା ବଖରା । ସୁନୁ ଖାଇବା ଯୋଗାଡ଼ରେ ଲାଗିଲା । ପୂର୍ବରାତିରେ ସେ ରାନ୍ଧି ରଖିଥିଲା ।

ତେଣୁ ବର୍ତ୍ତମାନ ସବୁ ଖାଇବା ଗରମ କରି, ବାଇଗଣ ଭାଜି ଆମକୁ ଖାଇବାକୁ ବାଢ଼ିଲା । ମୁଁ ଆଶ୍ଚର୍ଯ୍ୟ, 'ହଇରେ ସୁନ୍ନୁ, ତୁ ଏତେ ସୁଆଦ ରନ୍ଧା କୋଉଠୁ ଶିଖିଲୁ ?' ତା'ର ଉତ୍ତର 'ମାମିଙ୍କ ଠାରୁ (ତାର ମାଆ, ମୋର ବଡ଼ ଜାଆ) ଶିଖିଛି ।' ଖିଆପିଆପରେ ଭାଇ ଭଉଣୀ ଭଣଜା ଗପସପରେ ମାତିଲେ-ବେଳ ଅଣ୍ଟୁ ନଥାଏ ତାଙ୍କୁ । ମୁଁ କିନ୍ତୁ ଶୋଇବାକୁ ଚାଲିଗଲି । ବର୍ଷା ଛାଡ଼ି ଯାଇଥିଲେ ବି ଶୀତ ଟିକେ ଟିକେ ଥାଏ । ସୁନ୍ନୁ ନାନାପ୍ରକାର କାର୍ଯ୍ୟକ୍ରମ ରଖିଥାଏ-'ବାର୍ବିକ୍ୟୁ' କ୍ରିବ ବୋଲି ଗୁଡ଼େ କୁକୁଡ଼ା ମାଂସ ଫ୍ରିଜ୍‌ରେ ଖୁନ୍ଦିଥାଏ । ଖୁଡ଼ୀ ଆସିଛନ୍ତି, କାହାକୁ କାହାକୁ ଡ଼ାକିବ । କିନ୍ତୁ ମୁଁ ସୋମ ଓ ମଂଗଳବାର ଦୁଇଦିନ ତା' ଘରେ ରହିଲି । ସେ ଦୁଇଦିନ ମୁଁ ଆମିଷ ଖାଏନା । ତା' ରାନ୍ଧଣାର ନଡ଼ିଆରସ ଦିଆ ବଡ଼ ଚୁଂଗୁଡ଼ି ବି ମୁଁ ଖାଇଲି ନାହିଁ । ତା'ର ବ୍ୟସ୍ତତା କହିଲେ ନସରେ । 'ଖୁଡୀ ତ କିଛି ଖାଉ ନାହାନ୍ତି ।'

ରାତି ଆଠଟା ବେଳକୁ ସୁନ୍ନୁ ଭଲ ଭଲ ଗଜଲ ଲଗାଇଲା-ଲତା, ଆଶା, ରଫି, କୃଷ୍ଣମୂର୍ତ୍ତି ଇତ୍ୟାଦିଙ୍କର । ଅଥଚ ଘର ସାରା ବୁଲିବୁଲି ଦେଖିବା ଗପସବ ବି ସରୁନଥାଏ । ପେପୁର ଦୃଷ୍ଟି 'କୁକି' ଉପରେ-'ହେଇ ଆସିଲା, ଆସିଲା' ତା'ର ପ୍ରାପ୍ୟ ଆତ୍ମୀୟତା ଆମଠାରୁ ପାଇବ ନାହିଁ ଜାଣି, କୁକି କ୍ରମଶଃ ଆଡ଼େଇ ହେଇ ରହିଲା । ରାତିରେ ଖିଆପିଆ ପରେ ଭଉଣୀ ବାସନ ଧୋଇଲା ଓ ଭାଇ ଏଣେ ଭଉଣୀ, ଭଣଜାଙ୍କ ଲୁଗାପଟା ସଫା କଲା । ସବୁ ମେସିନ୍‌ରେ । ମାତ୍ର ମତେ ସେ ଦୁହେଁ କୌଣସି କାମରେ ସହଯୋଗ କରିବାକୁ ଦେଲେ ନାହିଁ । ତା' ପରଦିନ ସୁନ୍ନୁ ସକାଳେ ଦୁଇଘଣ୍ଟା ପାଇଁ ହସ୍‌ପିଟାଲ୍ ଗଲା । ସେ ଦିନ ସଂଧ୍ୟା ପରେ ଆମେ ସୁନ୍ନୁର ହସ୍‌ପିଟାଲ୍ ଦେଖିବାକୁ ଗଲୁ । ଇରି ସହର ମଧ୍ୟ ପରିକ୍ରମା କଲୁ । ତା'ର ହସ୍‌ପିଟାଲ- 'ସେଣ୍ଟ ଭିନ୍‌ସେଣ୍ଟ ହେଲ୍‌ଥ ସେଣ୍ଟର' । ସେ ସାଇକିଆଟ୍ରିଷ୍ଟ । ଦେଶର ଗୋଟିଏ ସାଧାରଣ ହସ୍‌ପିଟାଲ ହେଲେ ବି ସେଇଟା ଖୁବ୍ ବିରାଟ, ଶୃଂଙ୍ଖଳିତ ଓ ପରିଚ୍ଛନ୍ନ । ଆଧୁନିକତାର ସକଳ ସୁବିଧା ସୁଯୋଗ, ଏଲିଭେଟର, ସ୍ନାକ୍‌ସ ଦୋକାନ ସବୁ ରହିଛି । ସେଠାରୁ ଇରି ହ୍ରଦ ଅପରପାର୍ଶ୍ୱରେ ଥିବା ସହର ଅଞ୍ଚଳକୁ ଗଲୁ । ଗୁଡ଼ିଏ 'ସି-ଗଲ୍' ସହର ଅଞ୍ଚଳରେ ପାଣି ଉପରେ ଭାସୁଥାନ୍ତି । ଲୋକେ ନିଜ ଗାଡ଼ିରେ ନିଜ ବୋଟ୍ ଆଣି ନୌକାବିହାର କରୁଥାନ୍ତି । ଘରକୁ ଫେରିଲାବେଳେ ରାତ୍ରି ଭୋଜନ ପାଇଁ ଗୋଟେ ରେସ୍ତୋରାଁକୁ ଗଲୁ । ପେପୁର ପିଜା ଦରକାର । ପ୍ରକୃତରେ ଆମେରିକାରେ ମୁଁ ଖାଇଥିବା ପିଜା' ଭିତରେ ଏଠିକାର ଯେ ପିଜା ସବୁଠାରୁ ସ୍ୱାଦିଷ୍ଟ । ଅବଶ୍ୟ ସୁନ୍ନୁ ବରାଦ ଦେଇ କରାଇଥିଲା ।

ପରଦିନ ସକାଳବେଳା କିନ୍ତୁ ସୁନୁର ଡାକ୍ତରଖାନା ଯିବା ପରେ ଆମେ ତା' ବଗିଚାରେ ବୁଲିଲୁ । ମେପଲ୍ ଗଛ ଭର୍ତ୍ତି-କିଛି ଫୁଲ ଗଛ, କିନ୍ତୁ ଫୁଲ ନଥାଏ-ଛୋଟ କିଆରୀଟିଏ କରିଥାଏ ସୁନୁ-କିଛି ଧନିଆଁପତ୍ର ଓ ଗୋଟେ ପାଣିକଖାରୁ ଗଛ ମାଡ଼ିଥାଏ । ଦିନ ଦୁଇଟା ବେଳେ ଇରି ହ୍ରଦ କୂଳକୁ ଗଲୁ । ଘରୁ ପାଂଚ ମିନିଟ୍‌ର ଡ୍ରଇଭ୍ । କେହି ତାକୁ 'ଇରିବେ' କହିଲେ, କେହି କହନ୍ତି 'ଲେକ୍', ମତେ କିନ୍ତୁ ଲେକ୍ ଭଳି ପ୍ରତୀତ ହୁଏ । ଶୀତଦିନେ ସେଠାରେ ପ୍ରବଳ ତୁଷାର ପାତ ହୁଏ । ସେଦିନ ଥାଏ ପ୍ରଚୁର ଖରା । ଇରିରେ ମନେପଡ଼ିଲା ଚିଲିକା, ସନ୍ତସନ୍ତିଆ, ଆଇଁଷିଣା ଗନ୍ଧରେ ଅସୁନ୍ଦର ଏକଦା ସୁନ୍ଦରୀ ଚିଲିକା । ସାରା ଉପକୂଳ ପ୍ରଶସ୍ତ, ପରିଚ୍ଛନ୍ନ । ଇରି ହ୍ରଦ ଗୋଟିଏ ଦିଗରେ ଆଟ୍‌ଲାଣ୍ଟିକ ମହାସାଗରକୁ ଲାଗିଛି । ଧୀରେ ଲହଡୀ ଆସୁଛି ଖୁବ୍ ଉପରକୁ ମଧ ଉଠେ ନାହିଁ ସେ ଲହଡୀ । ଧୀରେ ଅର୍ଥାତ୍ ପୁରୀ ସମୁଦ୍ରଠାରୁ ଅଳ୍ପ ବେଗରେ ଓ ଅଳ୍ପ ସଂଖ୍ୟକ ମଧ୍ୟ । କେତେକ ଲୋକ ରଂଗିନ୍ ଚେୟାରରେ ବସି ଖରା ପୁହାଁଉଛନ୍ତି । କେତେକ ଯୁବକ-ଯୁବତୀ ଦୂରରେ ବୋଟ୍‌ରେ ଅଭ୍ୟାସ କରୁଛନ୍ତି । କିଛି ଦୂରରେ ଜଗିବା ପାଇଁ ସିକ୍ୟୁରିଟି ମଧ୍ୟ ଅଛନ୍ତି । ମାତ୍ର ଆମେ ଯେଉଁଠି ପହଞ୍ଚିଲୁ, ସେ ବେଳାଭୂମିଟି ନିରୋଳା । ଖାଲି ଗଦାଏ ।-ଗଲ୍ ବସୁଥାନ୍ତି । ମଣିଷ ଦେଖିଲେ ଦଳବାନ୍ଧି ଉଡ଼ି ପଳାଉଥାନ୍ତି । ପୁଣି ଅଳ୍ପ କେତୋଟି ବସୁଥାନ୍ତି ପାଣି କୂଳରେ । ପେପୁ ତାଙ୍କ ପାଖକୁ ଦୌଡୁଥାଏ ଖେଳ ଚାଲିଥାଏ- ଜୋତା ମୋଜା ଖୋଲି ସମୁଦ୍ର ପାଣିରେ ପଶିବା, ଲହଡ଼ୀକୁ ଛୁଇଁବା ।

କୂଳ ଉପରେ ଦେଖିଲି ଗୋଟେ ବଡ଼ ମାଛ ମରି ପଡ଼ିଛି-ବାଲି ସରସର । ଶୁଖି ଯାଇଛି-ଆହୁରି ଆଠ ଦଶ ଇଂଚ ଲମ୍ବର ପାଂଚ ଛଅଟା ମାଛ ସେଇ ଜାଗାରେ ବିଭିନ୍ନଠିଁ ମରି ପଡ଼ିଥାନ୍ତି । ଅଥଚ ଟିକେ ବି ଗନ୍ଧ ନଥାଏ ପୁଣି କେହି ବି ସେମାନଙ୍କୁ ଖୁଂପି ଖାଇ ନାହିଁ-ମାଛି ନାହାନ୍ତି କି ବୁଲା କୁକୁର ତ ନାହାନ୍ତି । ବ୍ଡ଼ କୌତୁକ ଲାଗିଲା । ଦଶ ବାର ଫୁଟ ଛଡ଼ାରେ 'ସି ଗଲ' ମାନେ । ପାଖକୁ ଗଲେ ଉଡ଼ିପଳାଉଥାନ୍ତି । ମୁଁ ବସି ବସି ବେଳାଭୂମିରେ ନାଆଁ ଲେଖିଲି-'ଅକ୍ଷର' । ସୁନୁ, ଅସିତା, ରଂଜନ । ସମଗ୍ର ପରିବେଶ ଯେପରି ମୋ ଭିତରେ କୋଉଦିନୁ ବାନ୍ଧି ହୋଇ ରହିଥିବା ଏକ ସତ୍ତାକୁ ଆହ୍ୱାନ କରିଥିଲା- ସେ ମୁକୁଳି ଯାଉ, ଉଡ଼ିଯାଉ ଏଇ ସି ଗଲ ମାନଙ୍କ ସହିତ, ମାତି ଯାଉ ମତେ ଛୁଁ ଖେଳରେ । ଦୁଇବାହୁ ଶୂନ୍ୟକୁ ଲମ୍ବାଇ ମୁଁ ଉଡ଼ିବାକୁ ଚାହୁଁଥିଲି । ଉନ୍ମୁକ୍ତ ଆକାଶରେ ବଡ଼ ବଡ଼ ଖଣ୍ଡ ଧଳାବଉଦ, ମଧୁର ଖରା, ପଶ୍ଚାତ ଭାଗରେ ସବୁଜ ବନାନୀ, ସାମ୍ନାରେ

ଜଳରେ ଉତ୍ତୁଙ୍ଗ ଫେଣର ଲମ୍ବା ଲମ୍ବାହାର । ଘନନୀଳ, ଅତ୍ୟଧିକ ଥଣ୍ଡା ଇରି ର ଜଳ । କୂଳରେ ମୋର ବାଲି ଉପରେ ଲେଖା ଅକ୍ଷର । ପାଖରେ ମୁଁ । ଲହଡୀ ତ ଲିଭାଇ ପାରୁ ନାହିଁ ମୋ ଲେଖା ! କିଏ ଲିଭିବ ଆଗ ? ମୁଁ ନା ମୋ ଲେଖା ଅକ୍ଷର ? ମତେ ଲାଗିଲା, ନିଶ୍ଚେ, ଆଗେ ଲିଭିବି ମୁଁ, ରହିଥିବ ଅକ୍ଷର-ମହାପ୍ରକୃତିର ବିସ୍ତାରିତ ଉପକୂଳରେ, ଆବେଗରେ ଲିଖିତ ଅକ୍ଷର, ପ୍ରକୃତରେ ତା' ଲିଭିବ ନାହିଁ ।



# 'କୁଇନ୍ସ'ର ଇଂରାଜୀ ବଧୂ

ନ୍ୟୁୟର୍କରେ ପ୍ଲେନ୍ ଲାଗିଲା ବେଳକୁ ଦିନ ବାରଟା ପାଖାପାଖି । ପ୍ରତିଦିନ ଆମର ଯାତ୍ରା ଯୋଜନାକୁ ନିୟନ୍ତ୍ରିତ କରିଥାନ୍ତି ଆର୍ଲିଂଟନ୍‌ରେ ରହୁଥିବା ମୋ ବ୍ରାଇଁ ରଂଜନ୍ । ରାତିରେ ପ୍ରାୟ ଆମ ରହଣି ସ୍ଥାନକୁ ଫୋନ୍ କରନ୍ତି ଓ ଆମେ କଥାବାର୍ତ୍ତା ହେଉ । ଆମେ ପହଂଚିବା ଆଗରୁ ଆମ ରହିବା ସ୍ଥାନ ସହ ଫୋନ୍ ଯୋଗାଯୋଗ କରିଥାନ୍ତି । କିନ୍ତୁ ଆଜି କଥା ଅଲଗା । ଆମ ରହଣି ଯୋଜନାରେ ଏ ସ୍ଥାନ ନଥିଲା । 'ଇରି' କୁ ଫୋନ୍ କରି କନି (ଅସିତା)ର ଜଣେ ସହପାଠୀ ଜିଗର ଲଗାଇଲା-ଗୋଟିଏ ଦିନ ମୋ ଘର କୁଇନ୍ସ ସିଟିରେ । କନି ମୋ ମତାମତ ନେଇ ହଁ କରିଥିଲା । ଏଣେ ନ୍ୟୁୟର୍କ ଏୟାର୍‌ପୋଟ୍ରୁ ସିଧା ଓ୍ୱାସିଂଟନ୍ ଡି.ସି. ଯିବାକଥା । ସେଇ ଅନୁସାରେ ଓ୍ୱାସିଂଟନ୍ ଘୂରିବାର ଯୋଜନା ଥିଲା କିନ୍ତୁ ନୂଆ ଗୋଟେ ସିଟି ଦେଖିବାର ଲୋଭରେ ମୁଁ ରାଜି ହେଇଥିଲି । ଜାଣିଥିଲି ଓ୍ୱାସିଂଟନ୍ ରହଣିରୁ ଗୋଟେ ଦିନ କମିଯିବ । ତେଣୁ ଲା' ଗାଡ଼ିଆ ଏୟାରପୋର୍ଟରୁ ଆମେ କୁଇନ୍ସ ଯିବୁ-ବେଶିଦୂର ନୁହେଁ, ମାତ୍ର ଯାହା ଘରକୁ ଯିବୁ ମୁଁ ତାକୁ ଦେଖିନି କେବେ । ସେ ବ୍ରଜରାଜନଗରର ପିଲା-କନି ସହିତ ଆର.ଇ.ସି(ରାଉରକେଲା ଇଂଜିନିୟରିଂ କଲେଜ୍)ରେ ପଢୁଥିଲା । ତା'ପରେ ଆମେରିକା ଆସି ଏମ୍.ବି.ଏ କରି ଖୁବ୍ ଭଲ ଚାକିରୀଟେ ଏଠି କରୁଛି । ତା'ର ନାମ ଅରୁଣ ଶର୍ମା । ତାର ସ୍ତ୍ରୀ ମହାରାଷ୍ଟ୍ରୀ ମାଆ ଓ ଇଂଲିଶ୍ ବାପାଙ୍କ ଠାରୁ ଜନ୍ମ । ଅଥଚ ନାଁ ତା'ର ବୈଶାଳୀ । ଅପରିଚିତା ବୈଶାଳୀ ମଧ କନିକୁ ଫୋନ୍‌ରେ ବହୁତ ଅନୁରୋଧ କରିଥିଲା । କନି ଆଶା କରିଥିଲା, ଅରୁଣ ଏୟାରପୋର୍ଟ ଆସିବ । ଅଥଚ ଆମେ ଓହ୍ଲାଇବା ପରେ ପ୍ରାୟ କୋଡ଼ିଏ ପଚିଶ ମିନିଟ୍ ଅପେକ୍ଷା କଲୁ । କନି ମଧ୍ୟ ତାକୁ ଫୋନ୍ କଲା, ଅଥଚ ଘରେ ବା ଅଫିସ୍‌ରେ ଅରୁଣକୁ ପାଇଲା ନାହିଁ । ଘରେ ତା' ସ୍ତ୍ରୀ ମଧ୍ୟ ନାହିଁ । କ୍ରମେ ଏୟାର ପୋର୍ଟର ସେ ଗେଟ୍‌ଟି କିଛିଟା ନିରୋଳା ହୋଇ ଆସିଲା । ମୁଁ ତ ଆଗେ ଅଧୈର୍ଯ୍ୟ ହୋଇପଡ଼େ । ମାତ୍ର କନି ଚାଲି ଚାଲି ବୁଲୁଥାଏ ।-ପ୍ଲେନ୍ ଲ୍ୟାଣ୍ଡିଂ ଠାରୁ ଲଗେଜ୍ କ୍ଲେମ୍ ଆଡ଼କୁ ଆସୁଥାଏ ଝିଅଟିଏ । ଏକା ଏକା ଚାରିଆଡ଼କୁ ଅନେଇଁ ଅନେଇଁ ଆସୁଥାଏ କାହାକୁ ଖୋଜି ଖୋଜି । କନି ତା'ର ସାମ୍ନା ସାମ୍ନି ହେଲା ଓ ପଚାରିଲା- ଦୁହେଁ ପୂର୍ବରୁ ଅଦେଖା ଥିଲେ ବି ପରସ୍ପରକୁ ଚିହ୍ନିଲେ, କୋଳାକୋଳି ହେଲେ । ସେ ଝିଅଟି ବୈଶାଳୀ । ଅରୁଣର ଛୁଟି ମିଳିଲା ନାହିଁ- ସେ ଗାଡ଼ି ଦେଇ ପଠାଇଛି ଓ କନିର ବର୍ଣ୍ଣନା ଦେଇଦେଇଛି । ବୈଶାଳୀ ଦୀର୍ଘାଙ୍ଗୀ, କୃଶକାୟା, ଦେହର ବର୍ଣ୍ଣ ଓ ମୁହଁର ଗଠନ ଠିକ୍ ସୁନ୍ଦରୀ ଭାରତୀୟ ଝିଅଟି ଭଳି । ବେଶଭୂଷା

ଉଗ୍ର ନୁହେଁ । ବେକରେ ଚେନ-କାନରେ ଫୁଲ, ଆଙ୍ଗୁଠିରେ ମୁଦି, ଡାହାଣ ପାଦରେ ସୁନାର ପଟେ ପାଉଁଜି, ବାଆଁ ପାଦରେ ନାହିଁ । ଅଧା ପ୍ୟାଣ୍ଟ ଓ ଟି ସାର୍ଟ, ବାଳଖୋଲା । ସଂଭ୍ରମ ସହକାରେ ସେ ଆମକୁ ପାଛୋଟି ନେଲା ତା' ଘରକୁ-ଚାବି ଖୋଲିଲା । ଆମେ ଚା' ଓ ଜୁସ୍ ଇତ୍ୟାଦି ପିଇ ସାରିଲା ବେଳକୁ ସେ ଲଞ୍ଚ ଦେଲା-ଛେନାର ସ୍ୟାଣ୍ଡ ଉଇଚ୍, ଆଳୁ ପରଟା, କହିଲା, ଭାତ ରାତିକୁ ରନ୍ଧାହବ, ସେ ଭାତ ରାନ୍ଧି ଜାଣିନି । ଯାହା ଜାଣିଛି, କରିଚି । ଖାଇ ସାରି ଆମେ ଗୋଟେ ରେଷ୍ଟୋରାଁକୁ ବାହାରିଲୁ-ଅରୁଣର ନିର୍ଦ୍ଦେଶ ଥାଏ ସେ ପ୍ରାୟ ଚାରିଟା ବେଳକୁ ସେଠି ପହଁଚିବ-ଆମେ କଫି ପିଇବୁ ଏକାଠି । ଆମେ ରେଷ୍ଟୋରାଁରେ ପହଂଚି ଦେଖିଲୁ ଅରୁଣର ଯୋଜନା ଅଭିନବ । ଏକ ବିରାଟ ଫୁଲତୋଡ଼ା ମୋତେ ଧରାଇ ସେ ପ୍ରଣାମ କଲା । ତା' ସ୍ତ୍ରୀ ମଧ୍ୟ ଇସାରାରେ ପ୍ରଣାମ କଲା । ଯଦିଓ ପ୍ରଣାମ କରିବା ତାକୁ ଜଣା ନଥାଏ । କାହିଁକି 'ଅସିତା ତାକୁ ପୂର୍ବରୁ ଜଣାଇଲା ନାହିଁ ଯେ ସେ ନ୍ୟୁୟର୍କ ଆସୁଛି ।' ଅରୁଣର ଅଭିଯୋଗ । ପ୍ରକୃତରେ 'ଓସା'ର ସାଂଗ ମାନଙ୍କଠାରୁ ଅସିତା ଆସିବାର ଖବର ପାଇ ସେ ପତ୍ତା ନେଇଥିଲା । ଦୁଇ ବନ୍ଧୁଙ୍କର ଚଉଦ ବର୍ଷ ପରେ ଆର୍.ଇ.ସି ରେ ପଢ଼ିସାରିଲା ପରେ ଏଠି ଦେଖା । ଯଦିଓ ଦିହେଁ ପରସ୍ପରର କିଛି କିଛି ଖବର ରଖିଥିଲେ ।

କୁଇନ୍ସ ବହୁ ପ୍ରକାର ବୃକ୍ଷଲତା ପରିପୂର୍ଣ୍ଣ ସୁସଜ୍ଜିତ ସହର । ସ୍ନୋ ଫ୍ଲାଓ୍ୱାର୍‌ର ରଂଗ ବହୁ ପ୍ରକାର । ମୁଁ ପ୍ରଥମେ ଏକବର୍ଷ ତଳେ ସ୍ନୋ ଫ୍ଲାଓ୍ୱାର ଦେଖିଥିଲି । କଡ଼େଇକେନାଲ ପର୍ବତ ଉପରେ ଗେଷ୍ଟହାଉସ୍‌ରେ । ଏଠାରେ କିନ୍ତୁ ଅଗଣିତ ରଂଗ, ଲାଲ୍, ଭାଓଲେଟ୍, ଧଳା, ହଳଦୀ, ଧୂସର, ନୀଳ, କପର ସଲ୍‌ଫେଟ୍, ମ୍ୟାଜେଣ୍ଟା, ଗୋଲାପି ବହୁ ରଂଗର ସ୍ନୋ ଫ୍ଲାଓ୍ୱାର ଫେଣ୍ଟା ଫେଣ୍ଟି ବଡ ଆକର୍ଷଣୀୟ । ସେଇ ସହରରେ ବି ଆମେ ଚାଲି ଚାଲି ବୁଲିଲୁ । ଚାଲିକି ବୁଲିବାରେ ଗୋଟେ ସ୍ୱତଂତ୍ର ନିଜସ୍ୱ ଭାବ ଥାଏ । ବୈଶାଳୀ ବିଶ୍ୱାସ କରିପାରୁ ନଥାଏ ଯେ, ଅରୁଣର ଏଇ ସହପାଠିନୀଟି ସହ ପାଠପଢ଼ାପରେ ଆଉ ଥରେବି ଅରୁଣର ସାକ୍ଷାତ ହୋଇନାହିଁ । ଘରକୁ ଫେରିଲୁ । ସହରର ମୁଖ୍ୟ ଅଞ୍ଚଳରେ ଯେ ଘର । ତେଣୁ ଛୋଟ ଘର, ପ୍ରାୟ ମୋ ଝିଅର ୟୁନିଭ୍ ଘର ଭଳି । ସାଜସଜ୍ଜା ରୁଚିକର । କେତୋଟି ଭଲ ପେଣ୍ଟିଂ ଥାଏ କାନ୍ଥରେ । ଏଥର ଚା, କଫି, ଜୁସ୍, କୁଲ୍‌ଡ୍ରିଂକ୍ ସହ ଗପ ଚାଲିଲା ।

ଏଣିକି ଅରୁଣର ରନ୍ଧାକାମ । ଆମ ମାଆ ଝିଅଙ୍କୁ ସେ ରନ୍ଧା ଘରକୁ ଛାଡ଼ିଲା ନାହିଁ । ତା' ସ୍ତ୍ରୀ ତାକୁ ସାହାଯ୍ୟ କଲା-ଅରୁଣର ବାପା ସିନା ବ୍ରଜରାଜନଗର ପେପର୍

ମିଲ୍‌ରେ ଚାକିରୀ କରିଥିଲେ, ସେମାନେ ଗୁଜୁରାଟୀ, ନିରାମିଷାଶୀ । ତେଣୁ ବୈଶାଳୀ ମଧ୍ୟ । ଏତିକି ବେଳେ ବୈଶାଳୀର ଜଣେ ବାନ୍ଧବୀ ପହଂଚିଲା-ଅଳ୍ପ ଉଚ୍ଚା ଖୁବ୍ ସୁନ୍ଦରୀ ଦିଲ୍ଲୀର ଝିଅ, ନାଁ ତା'ର ସୋନାଲୀ, ସେ ବି ଉଚ୍ଚ ଶିକ୍ଷିତା-ଏବେ ପଢ଼ା ସରିଛି, ଚାକିରୀ ବି ଅଛି । ସେ ପ୍ରଣାମ୍ କଲା, କହିଲା ଆପଣ ମାନଙ୍କୁ ଦେଖିବାକୁ ବୈଶାଳୀ ମତେ ଡାକିଛି । କଥାହେଲା ସେ ଜଣେ ଭାରତୀୟ ଯୁବକକୁ ବିବାହ କରିବାକୁ ଚାହେଁ । ସେଠିକା ବିଦେଶୀ ପିଲା ତା'ର ପସନ୍ଦ ନୁହେଁ । ଭାରତୀୟ ଯୁବକ କାଳେ ଭଲ ସ୍ୱାମୀ ହୁଅନ୍ତି । କେଜାଣି ! ସୋନାଲୀର ତ' ବିଶ୍ୱାସ । ଖାଇବା ଆଗରୁ ପିଇବା ପର୍ବ । ଅରୁଣ, ବୈଶାଳୀ, ସୋନାଲୀ ୱାଇନ୍ ନେଲେ । ମୁଁ, କନି ଓ ପେପୁ ଜୁସ୍ ନେଲୁ । ଗପସପ ଚାଲିଲା । ଆଠ ବର୍ଷର ନାତି ନଜର ରଖିଥାଏ । ତା' ମାଆ ୱାଇନ୍ ନଉଚି କି ନାହିଁ-ମୁଁ ଦେଖି ଆଚମ୍ଭିତ ହେଲି-ଏପରିକି ମାଆର ଜୁସ୍‌ରୁ ଢ଼ୋକେ ପିଇଲା ବାଆଁରେଇକି ! କନି କହିଲା, 'ଦେଖୁନ, ମୋ ଗାର୍ଡ଼ିଅନ୍' । କନି, ମୁଁ, ଅରୁଣ ଓଡ଼ିଆରେ କଥାହେଲୁ- ବୈଶାଳୀ ସହ ସମସ୍ତେ କଥା ହେଲା ବେଳକୁ ଇଂଲିଶ୍‌ରେ କଥା ହେଉ । ଅରୁଣ କହିଲା, ଆଗରୁ ନ ଜଣାଇଲେ ଆମକୁ ଛୁଟି ମିଳେନା, ତେଣୁ କାଲି ମଧ୍ୟାହ୍ନରେ ବୈଶାଳୀ ଆପଣଙ୍କୁ 'ପୋର୍ଟ ଅଥରିଟି' ବସ୍‌ଷ୍ଟାଣ୍ଡରେ ଛାଡ଼ିଦେବ । ଆପଣ ବ୍ରେକ୍‌ଫାଷ୍ଟ ଖାଇ ପ୍ୟାକିଂ ଲଞ୍ଚ ନେଇ ଯିବେ । ନ ହେଲେ ବଡ଼ ହଇରାଣରେ ପଡ଼ିବେ ।' ସେମାନେ ଗପ କଲେ । ମୁଁ ତ ଅଳସେଇ ମୁଁ ମୋର ଶୋଇପଡ଼ିଲି । ରଂଜନ୍ ଆମ ସାଂଗେ କଥା ହେଲେ । ଆମେ ମଧ୍ୟ ୱାଶିଂଟନ୍ ଡି.ସି.କୁ ଜଣାଇଲୁ ଆସନ୍ତା କାଲି ଆମେ ପହଂଚୁଛୁ ।

ଦଶଟା ବେଳେ ଅରୁଣ ଘର ଛାଡ଼ିଲେ । ବୈଶାଳୀ ମୋ ପାଇଁ ପେପୁ ପାଇଁ କିଛି ପ୍ରେଜେଣ୍ଟ ରଖିଦେଲେ । ତା' ପରେ ଲଞ୍ଚ ତିଆରି କରିବା ପାଳି ବୈଶାଳୀର । କେଡ଼େ ଆଗ୍ରହରେ ସେ ସେଦିନ ଅଫିସରୁ ଛୁଟିନେଲା । ତା'ର ପାର୍ଟ ଟାଇମ୍ ଅଫିସ୍ । ସେଦିନ ଆଫ୍ଟର ନୁନ୍ ଅଫିସ୍ କରିବ । ତା'ର ବାପା ଇଂଲଣ୍ଡରୁ ତିଆରି କରି ପଠାଇଥିବା ଗାଜର ଓ ଅଦା ଆଚାର ଆମକୁ ଖାଇବାକୁ ଦେଲା ଓ ବାଟକୁ ଦେଇଥିବା ଜଳଖିଆ ପ୍ୟାକେଟ୍‌ରେ ବି ଆଚାର ଦେଲା । କାଳେ ଆମେ ହଇରାଣ ହେବୁ, ଆମକୁ ସେ ବସ୍‌ଷ୍ଟାଣ୍ଡ (ପୋର୍ଟ ଅଥରିଟି) ରେ ବସ୍‌ରେ ଉଠାଇ ଫେରିବ । ବୈଶାଳୀ ଆମର ବହୁତ ଯତ୍ନ ନେଲା-ଆନ୍ତରିକ ବ୍ୟବହାର ଦେଖାଇଲା । ତା'ର ସ୍ନେହ, ସମ୍ମାନରେ ମୁଁ ଅଭିଭୂତ ହୋଇପଡ଼ିଲି । ଭିନ୍ନ ଏକ ସଂସ୍କୃତିରେ ବଢ଼ିଥିବା ଝିଅ ସ୍ୱାମୀ ପ୍ରତି ତା'ର ସଂଭ୍ରମ ଓ ଆମ ପ୍ରତି ପାରିବାରିକ ଆତ୍ମୀୟତା-ପୂରା ଭାରତୀୟ ବଧୂଭଳି ପ୍ରତୀତ ହେଲା । ବୈଶାଳୀ-ଯଦିଓ ପୋଷାକ ଓ

ଭାଷା ତା'ର ଭିନ୍ନ, ମୋତେ ଲାଗିଲା, କିଏ କହେ ଯେ ବିଦେଶୀ ଝିଅମାନେ ଶାଶୁ, ଶ୍ୱଶୁରଙ୍କୁ ଲୋଡ଼ନ୍ତିନି, ମାନନ୍ତିନି-ବୈଶାଳୀତ ଆମକୁ ଏତେ ଯତ୍ନ କରିପାରିଲା ! ଅରୁଣର ବିଭାଘର ଗୁଜୁରାଟ୍‌ରେ ନିଜଘରେ ହୋଇଥିଲା ଓ ବୈଶାଳୀ ସେଠାରେ କିଛିଦିନ ରହିଥିଲା । ଭାରତରୁ ଆସି ବୈଶାଳୀର ପୂର୍ବ ଦୁଇ ପୁରୁଷ ବ୍ରିଟେନ୍‌ରେ ରହିଥିଲେ ମଧ୍ୟ ସେ ଭାରତୀୟତାକୁ ଆପଣାର କରିବାକୁ ଦ୍ୱିଧାବୋଧ କରି ନଥିଲା । ପୋର୍ଟ ଅଥରିଟିରେ ଗ୍ରେ ହାଉଣ୍ଡ ବସ୍‌ରେ ଉଠାଇ ଦେଇ, ସେ ହାତହଲାଇ ବିଦାୟ ସମ୍ଭାଷଣ ଜଣାଇଥିଲା ।

❑❑❑

# ଗ୍ରେ' ହାଉଣ୍ଡ ବସ୍‌ଯାତ୍ରା

ଗ୍ରେ' ହାଉଣ୍ଡ ବସ୍ ସର୍ଭିସ୍ ସାରା ଆମେରିକାରେ ଗମନାଗମନ ପାଇଁ ଏକ ବିଶ୍ୱସ୍ତ ସଂସ୍ଥା । ଏଠାରେ ମୋର ପ୍ରଥମ ବସ୍ ଯାତ୍ରା । ଆମ ଦେଶର ଲଗ୍‌ଜୁରୀ କୋଚ୍ ଠାରୁ ଅଧିକ ସୁବିଧା ଜନକ, ପରିଚ୍ଛନ୍ନ ଏବଂ ଶୌଚାଳୟ ମଧ୍ୟ ଥାଏ । ଆମର ଚାରିଘଣ୍ଟା ବସ୍‌ଯାତ୍ରା-ନ୍ୟୁୟର୍କ ପୋର୍ଟ ଅଥରିଟିରୁ ୱାଶିଂଟନ୍ ଡି.ସି. । ଏଠାରେ ଆମର ଶୁଭକାନ୍ତ ବେହେରାଙ୍କ ଘରେ ରହିବାର ବ୍ୟବସ୍ଥା ଥାଏ । ସାରା ବସ୍ ଯାତ୍ରାରେ ଆମେରିକାର ଚିତ୍ରଳ ପ୍ରକୃତି, ଗଛ ବୃଛ, ମଝିରେ ଜଂଗଲ-ଏପରିକି ସେ ବସ୍ କେଉଁଠି ମଧ୍ୟ ପାଂଚ ମିନିଟ୍ ଅଟକି ନାହିଁ । କୋଉ ବାଟ ଦେଇ ଯାଉଛି, କେତେ ସମୟ ହେଲା-ବରାବର ସ୍କ୍ରିନ୍‌ରେ ଦେଖାଉ ଥାଏ । ବୈଶାଳୀର ହାତରନ୍ଧା ଖାଇ, ସଫ୍ଟ ଡ୍ରିଙ୍କ୍ ପିଇ, ଗପସପ କରି, ମଝିରେ ମଝିରେ ଘୁମେଇଁ ପଡ଼ି ଆମେ ୱାଶିଂଟନ୍‌ରେ ପହଞ୍ଚିଲୁ । ବୁଇ(କନିର ସହପାଠିନୀ, ଶୁଭକାନ୍ତଙ୍କ ପତ୍ନୀ ରାଜଶ୍ରୀ) ଆମକୁ ଘରକୁ ନବାକଥା । ଆମେ ଫୋନ୍ କଲୁ । ବୁଇ ଘରୁ ବାହାରିଲା-ଆସିବ ବସ୍‌ରେ, ସେଠୁ ଭୂଇଁତଳ ଟ୍ରେନ୍‌ରେ, ତା' ପରେ ତା' ସ୍ୱାମୀଙ୍କ ଅଫିସ୍‌ରେ ପହଞ୍ଚିବ । ସେଠୁ ସ୍ୱାମୀ ସ୍ତ୍ରୀ ଆସି ଆମକୁ ନେବେ । ବୁଇ ଡ୍ରାଇଭିଂ କରେ ବି । ତାଙ୍କର ଗୋଟିଏ ଗାଡ଼ି । ଏଣେ ଅଫିସ୍ ସରିବ ପାଂଚଟା ବେଳେ । ତେଣୁ ଆମକୁ ଅଧଘଣ୍ଟାଏ ଖଣ୍ଡେ ଅପେକ୍ଷା କରିବାକୁ ପଡ଼ିଲା । ଅବଶ୍ୟ ଆମେରିକାର ସାଧାରଣ ଲୋକଙ୍କ (ଉଚ୍ଚବିତ୍ତ ନୁହେଁ) ଜୀବନ୍ ଜାଣିବାକୁ ଯେ ଗୋଟେ ଅବସର । ଅଧିକାଂଶ କଳାଲୋକ, କିଛି ଅଣ ଆମେରିକୀୟ ଆମଭଳି, କିଛି ଗୋରା ଲୋକ । କନି ଖୁବ୍ ଜାଗ୍ରତ ଥାଏ ଓ ପୁଅକୁ ମତେ ହୁସିଆର କରିଥାଏ । ଏଠି ବହୁତ ଚୋର । ପଟ୍ କିନା ଜିନିଷ ଉଠାଇ ନେବେ-ପିଲା ଚୋରି ବି ହୁଏ । ୧୯୯୯ରେ ମୋର ବଡ଼ ଝିଅ ଲେନି ରୋଟାରୀ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମରେ ଯାଇଥିଲା ଆମେରିକା । ନ୍ୟୁୟର୍କ ସିଟି ବିଷୟରେ ତାକୁ ଜାଗତିଆର୍ କରାଯାଇଥିଲା-ସେ ସହରରେ ବହୁତ କଳାଲୋକ, ପ୍ରକୃତରେ ଓ ସେମାନେ ନାନାପ୍ରକାର ବଦ୍‌ମାସୀ କରନ୍ତି । ତେବେ ଆମେ ଯିବା ପୂର୍ବରୁ ସେ କଥା ମଧ୍ୟ ଜାଣିଥିଲୁ । ତେଣୁ ପ୍ରାଣପଣେ ନିଜ ଜିନିଷଧରି, ପାସ୍‌ପୋର୍ଟ, ଟିକେଟ୍, ଡଲାର୍‌କୁ ନଜର ଦେଇ ଆମେ ବସିଥାଉ । କଫି ଓ ଜୁସ୍ ପିଇଲୁ । ଚୀନା, କୋରିଆନ୍ ଓ ଥାଇ ଲୋକେ କିଛି ଆମ ସହିତ ଥାଆନ୍ତି-ଅତିଛୋଟ ପିଲାବି-କିଏ କିଏ ଯାତାୟତ କରିବାକୁ ଅପେକ୍ଷା କରିଥାନ୍ତି-ତା'ର ଭିତରେ ଅନେକ ବିଚିତ୍ର କଥାବି ଥାଏ । ଝିଅଟିଏ ପୁଅଟିଏ କିଏ କାହା କୋଳରେ ଶୋଇଥାନ୍ତି, କିଏ ପେଟ ଭିତରେ ହାତ ପୂରାଇ

ଆଉଁସୁ ଥାଏ । କିଏ ବା ଚୁମା ଦିଆ ଦେଇ ହେଉଥାନ୍ତି । ତେବେ ଏସବୁ ଦୃଶ୍ୟ ବସଷ୍ଟାଣ୍ଡ ଅପେକ୍ଷା ଦର୍ଶନୀୟ ସ୍ଥାନମାନଙ୍କରେ, ମୋଟର ଲଞ୍ଚ ଭିତରେ ଓ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ପଡ଼ିଆରେ ବେଶୀ ଭାବରେ ଦେଖିବାକୁ ମିଳୁଥାଏ । ମୁକ୍ତ ଜୀବନ । ନାରୀଙ୍କର ଶରୀରର ତିନିଭାଗ ଖୋଲା-ନିଜର ଆବେଗ ପ୍ରଦର୍ଶନରେ ବି ସେମାନେ ଖୁବ ଖୋଲା । କେଉଁଠି ବୟସ୍କ ବ୍ୟକ୍ତି ସଦ୍ୟ ଷୋଡ଼ଶୀଟିଏ ବା କେଉଁଠି ଯୁବକଟିଏ ଆବେଗ ବିନିମୟ କରୁଥାନ୍ତି । ପାଂଚବର୍ଷ ଭିତରେ ଛୁଆଙ୍କର (ଗୋଟିଏ ନିର୍ଦ୍ଦିଷ୍ଟ ଓଜନର ପିଲା ମଧ୍ୟ ହେବା ଦରକାର) ପ୍ରାମ୍ ଠେଲାଗାଡ଼ିଥାଏ । ସେଥିରେ ସେମାନେ ବସି ସ୍ଥାନରୁ ସ୍ଥାନାନ୍ତରକୁ ଯାଆନ୍ତି । କାର୍ ସିଟ୍‌ରେ ମଧ ଛୋଟ ଚେୟାର୍‌ଟେ ଫିକ୍ସ ହୋଇଥାଏ, ପିଲା ବସିବ । କାର୍‌ର ସାମ୍ନା ସିଟ୍‌ରେ ତେର ବର୍ଷ ନହେଲେ ପିଲାଙ୍କୁ ବସିବା ମନା । ଜନ ଜୀବନର ଗତାଗତ ନିରୀକ୍ଷଣ କରୁ କରୁ ବୁଇ ଆସି ପହଂଚିଲା । ତା' ଘର ୱାଶିଂଟନ୍ ଡି.ସି ର ମୁଖ୍ୟ ସହର ବାହାରେ, ସେ ସ୍ଥାନଟି ଅପେକ୍ଷାକୃତ ବସତି ପାଇଁ ଯୋଗ୍ୟ-ବେଥେସ୍‌ଡ଼ା' । ଏମ୍ବାସିର ପ୍ରାୟ ଅଧିକାଂଶ ଘର ସେଇଠି ଏବଂ ବହୁ ମାନ୍ୟଗଣ୍ୟ ନାଗରିକଙ୍କ ନିବାସ ସ୍ଥଳୀ ।

ବୁଇର ଘରଟି ଖୁବ୍ ପ୍ରଶସ୍ତ, ସାଜସଜ୍ଜା ଉନ୍ନତ ଧରଣର, ଶୁଭକାନ୍ତ ଯେଉଁ ଯେଉଁ ଦେଶରେ ଚାକିରୀ କରିଆସିଛନ୍ତି, ସେ ସବୁ ଦେଶର ଖୁବ୍ ଭଲ ସାଜରେ ଘରଟି ସୁସଜ୍ଜିତ । ଶୁଭକାନ୍ତ କେବଳ ବିଦେଶ ସଚିବ ନୁହନ୍ତି, ଜଣେ ସାହିତ୍ୟ ସ୍ରଷ୍ଟା ଓ ଗବେଷକ ମଧ୍ୟ । ନିଜ ଗବେଷଣା ପାଇଁବହୁ ଉପାୟନ ଓ ସମ୍ମାନ ସେ ପାଇଥିବାର ନଜିର୍ ସବୁ ଦେଖିଲୁ । ଏଥର ଖାଦ୍ୟ ପ୍ରସ୍ତାବ-ଟେବୁଲ୍ ସାରା ବିଭିନ୍ନ ଖାଦ୍ୟ-ଘରତିଆରି । ବାଣୀବିହାରର ଝିଅଟିଏ ତା' ପାଖରେ ଥାଏ, ରନ୍ଧାବଢ଼ାକରେ । ତା' ସହଯୋଗରେ ବୁଇ କରିଛି ପିଆଜି, ବରା, କେକ୍, ପୁଡ଼ିଂ, ମିଠା ଇତ୍ୟାଦି । କିଏ ଭଲା ଏତେ ଖାଇ ପାରିବ ? ଆମେ ସବୁ ମୁସାଫିର୍, ସେତେ ବେଳକୁ ଆଠ ଦିନ ହେବ ଘର ଛାଡ଼ିଲୁଣି । ଯଦିଓ ସବୁଠି ଘରର ସ୍ପର୍ଶ ହିଁ ମିଳୁଥାଏ ନିବିଡ଼ ଭାବେ । ବୁଇର ବରାବର ଆପତ୍ତି 'ମାଉସୀ କିଛି ଖାଉ ନାହାନ୍ତି' । ପୁତୁରାର ଅଭିଯୋଗ 'ଖୁଡ଼ୀ କିଛି ଖାଉ ନାହାନ୍ତି ।' ଖୁଡ଼ୀର ବୟସ କେତେ, ସାମର୍ଥ୍ୟ କେତେ, ସେ କଥା ପଛକୁ ଥାଉ । ସହଜେ ତ କନି ସଦାବେଳେ ଲଗେଇ ଥାଏ, 'ବୋଉ କିଛି ଖାଉନି ।' ମୁଁ କହେ, 'ତୁମ ଆମେରିକାରେ ଏତେ ଜିନିଷ ମିଳେ ବୋଲି, ମୁଁ କ'ଣ ସବୁ କିଛି ଖାଇପାରିବି ?' ବୁଇ ଘରେ ତିନି ଦିନ ରହିଣି ଭିତରେ, ମୋ ଖାଇବା ନେଇ ତା'ର ବ୍ୟସ୍ତତା, ମୋତେ ଚମତକୃତ କଲା । ମୁଁ କହିଲି, 'ବୁଇ, ତୁ ବୋଧେ ମୋର ମାଆ-ମୋ ଖାଇବା ନେଇ ଏତେ ବ୍ୟସ୍ତ ହେଇ ପଡୁଚୁ ଯେ-ତୋର ଏତେ ନଜର ମୁଁ କ'ଣ ଖାଇଲି ନ ଖାଇଲି ।' ସେ ଦିନ ସଂଧ୍ୟାଟି ମୁଁ ଓ ବୁଇ ଚାଲି

ଚାଲି ବେଥେସ୍‌ଡାରେ କିଛି ବୁଲିଲୁ । ଅସିତାର ବୁଇର ସେଇ ରାତିଅଧଯାଏ ଗପ-ମୁଁ ମୋର ଶୋଇ ପଡ଼ିଲି । ବୁଇର ଝିଅ ଅମୃତା ପେପୁ ସହିତ ସାଂଗ ହେଇ ଖେଳି ନାଚି, କୁଦି ଆଉ ଶୋଉ ନଥାଏ । ପୁଅ ଗୁଲୁ (ଅନନ୍ୟ) ଗଂଭୀର, ଖୁବ୍ ଭଲ ପଢ଼େ, ଦୁମ୍ ଦୁମ୍ ଦୌଡ଼େ ନାହିଁ ।

ପରଦିନ ଆମର ଦିନସାରା ଭ୍ରମଣ ଓ ତା' ପରେ ସଂଧ୍ୟାରେ ରାଷ୍ଟ୍ରଦୂତ ଲଳିତ ମାନସିଂହଙ୍କ ଘରେ ନିମନ୍ତ୍ରଣ ଥାଏ । ଶୁଭକାନ୍ତ ନିମନ୍ତ୍ରଣଟିଏ ଦେଇ କହିଥାନ୍ତି-'ପଣ୍ଡିତ ଯଶରାଜ ଗାଇବେ-ପାର୍ଟି ଅଛି-ଆପଣମାନେ ନିଶ୍ଚୟ ଯିବେ ।' ଶୁଭକାନ୍ତ ଆମେରିକାରେ ଥିବା ଏମ୍ବାସିର ସାଂସ୍କୃତିକ ବିଭାଗ ଦାୟିତ୍ୱରେ ଥାଆନ୍ତି ।

ସେ ଦିନ ଆମେ ଦଶଟା ବେଳକୁ ବାହାରିଲୁ ୱାଶିଂଟନ୍ ଡି.ସି । ପୂର୍ବରୁ ଭାବିଥିଲୁ କଣ୍ଡକ୍‌ଟେଡ୍ ଟୁର୍‌ରେ ଯିବୁ-ଟୁରିଷ୍ଟ ବସ୍‌ରେ । କିନ୍ତୁ ତାହା ଖୁବ୍ କ୍ଳାନ୍ତିପ୍ରଦ ଓ ଗୋଟିଏ ଦିନରେ ଅନେକ ସ୍ଥାନ ଦେଖି ଦେଖି କୌଣସି ସ୍ଥାନର ମହତ୍ତ୍ୱକୁ ଅନୁଭବ କରିହେବ ନାହିଁ । ଏଇଥି ପାଇଁ ସେ ପ୍ରସ୍ତାବ ତ୍ୟାଗ କଲୁ । ଅଳ୍ପ ସ୍ଥାନ ପଛେ ଦେଖିବୁ, କିନ୍ତୁ ସମୟ ଦେଇ ଦେଖିବୁ ଓ ଖୁବ୍ କ୍ଳାନ୍ତ ହେବାଯାଏଁ ରହିବୁ ନାହିଁ । ପୂର୍ବରୁ ମଧ୍ୟ ଅଭିଜ୍ଞତା ଥାଏ । ଥରେ ମୁଁ ଓ ମୋର ଚାରିଝିଅ ଦିଲ୍ଲୀ ବୁଲିବାକୁ ଯାଇଥିଲୁ । ବଡ଼ଝିଅ ସେତେବେଳେ ନାଗପୁର ଟ୍ରେନିଂରେ ଥାଏ । ଟୁରିଷ୍ଟ ବସ୍‌ରେ ବସିଲୁ । ସାନ ଦୁଇଟି ଝିଅ ଅତି ପିଲାଦିନେ ଦିଲ୍ଲୀ ଆସିଥିଲେ । ସେ ଦୁହିଁଙ୍କର ଦିଲ୍ଲୀ ସ୍ମରଣରେ ନାହିଁ । ତେଣୁ ଆମେ ଟୁରିଷ୍ଟ ବସ୍‌ରେ ଯିବାକୁ ସ୍ଥିର କଲୁ । ବସ୍‌ଟି ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ବିଭିନ୍ନ ସ୍ଥାନ ବୁଲାଇ ଦେଖାଇଲା । ଲାଲ୍‌କିଲ୍ଲାରେ ବୁଲିସାରି ଆମେ ଲନ୍ ଉପରେ ବସି ଦଶ ମିନିଟ୍ ଗପସପ ହେଇଛୁ କି ନାହିଁ, ଫେରିଲା ବେଳକୁ ଟୁରିଷ୍ଟ ବସ୍‌ଟି ଆମକୁ ଛାଡ଼ି ଅନ୍ୟମାନଙ୍କୁ ନେଇ ପଳେଇ ଗଲାଣି । କାନମୁଣ୍ଡା ଆଉଁସି ଦୁଇଟା ଅଟୋରିକ୍ସାରେ କରୋଲ୍‌ବାଗ୍ ଫେରିଲୁ । ଆମର ଜଣେ ନିଜ ଲୋକଙ୍କ ଘରେ ସେଠି ରହୁଥାଉ । ତେଣୁ ସ୍ଥିର ହୋଇଥାଏ, ଟୁରିଷ୍ଟ ବସ୍‌ରେ ବୁଲିବା ଆମ ଦ୍ୱାରା ହେବନାହିଁ । ଯାଇଥିଲି ଥରେ ଜୟପୁର, ରାଜସ୍ଥାନ । ସେଠାରେ ମଧ୍ୟ ମୋର ବାନ୍ଧବୀର ଝିଅ ମିନି (ନନ୍ଦିତା-ଆଇ.ଇ.ଏସ୍ ଚାକିରିରେ ଅବସ୍ଥାପିତ) ଆମକୁ ବାରଣକଲା-'ମଉସା ମାଉସୀ ଟୁରିଷ୍ଟ ବସ୍‌ରେ ଯିବେନାହିଁ । ଆମ ଗାଡ଼ିରେ ଯିବେ ।'



# ୱାଶିଂଟନ୍ ଡି.ସି.ର କବରସ୍ଥାନ

ଆମେ ଯିବୁ ଯେ, ବେଥେସ୍‌ଡ଼ାରୁ ବସ୍‌ରେ ମେଟ୍ରୋଷ୍ଟେସନ୍, ସେଠାରୁ ଟ୍ରେନ୍‌ରେ ସ୍ମିଥ୍ ସୋନିଆନ୍ -କାଳେ ବାଟ ଭୁଲିବୁ ପୁଣି ସଂଧ୍ୟା ପାଂଚଟା ସୁଦ୍ଧା ଫେରିଲେ ଆମ୍ବାସାଡ଼ର୍‌ଙ୍କ ଘରକୁ ଯିବାର କାର୍ଯ୍ୟକ୍ରମ । ବୁଇ ଗୁଲୁକୁ ବହୁତ ପଟେଇ, ଲାଞ୍ଚ ଯାଚି କହୁଥାଏ ଆମ ସାଂଗେ ଯିବାକୁ । ଶେଷକୁ ଗୁଲୁ (ତା'ର ବାରବର୍ଷର ପୁଅ) ରାଜି ହେଲା ଓ ଆମର ଗାଇଡ୍ ହେଇ ଚାଲିଲା । ପ୍ରକୃତରେ ଗୁଲୁ ସାଂଗରେ ନଥିଲେ, ସହର ବୁଲି ଆମେ ଠିକଣା ଜାଗାସବୁ ସହଜରେ ଦେଖି ପାରିନଥାନ୍ତୁ ।

ଗୁଲୁ ଖୁବ୍ ଭଲ ଗାଇଡ୍-ଆମକୁ ସ୍ମିଥ୍‌ସୋନିଆନ୍, ଲିଂକନ୍ ପ୍ୟାଲେସ୍, ପ୍ରଜାପତି ବଗିଚା ଆଦିକୁ ନେଇଗଲା । ମନମୁତାବକ ଦେଖି ଦେଖି ଲିଟରେଚ୍‌ର ପଢ଼ି ପଢ଼ି ସବୁ ଗ୍ରହଣ କରୁଥାଉ । ଲିଂକନ୍‌ଙ୍କ ବାଣୀ, ତାଙ୍କ କାର୍ଯ୍ୟକଳାପ, କଳାଲୋକଙ୍କ ପାଇଁ ଦରଦ, ସେମାନଙ୍କୁ ନାଗରିକ ଅଧିକାର ଦେଇ, ମର୍ଯ୍ୟାଦା ଦେବା, ସମାନ ସୁଯୋଗ ଦେବାପାଇଁ ତାଙ୍କର ଦୃଢ଼ ପଦକ୍ଷେପ ମାନବିକତାର ସଚେତନ ପ୍ରୟାସକୁ ଉପଲବ୍ଧି କରୁ କରୁ ଲିଂକନ୍ ଜଣେ ମହାନ୍ ବ୍ୟକ୍ତିତ୍ୱ ବୋଲି ଅନୁଭବ କରିହେଉଥାଏ । ଜାତୀୟ ଏକତାକୁ ଅର୍ଥାନ୍ୱିତ କରିବା, ମର୍ଯ୍ୟାଦା ପ୍ରଦାନ କରିବା ନିମିତ୍ତ ସେ ପ୍ରଣୋତ୍ସର୍ଗ କରିଥିଲେ । ବହୁ ଫଟୋ ଚିତ୍ରରେ ସୁ-ସଂରକ୍ଷିତ ସେଇ ସ୍ମୃତି ସୌଧ ବାସ୍ତବିକ ମନରେ ଗଭୀର ରେଖାପାତ କଲା । ମାନବତାର ପୂଜାରୀ ମରଣଜୟୀ ଲିଂକନ୍‌ଙ୍କ ବିରାଟ ପ୍ରତିମୂର୍ତ୍ତି ତଳେ ତାଙ୍କ ଆତ୍ମୋତ୍ସର୍ଗ ସଂପର୍କରେ ଲେଖାଥିଲା-

"In this temple/As in the hearts of the People/For whoom, who saved this Union/The memory of Abraham lincoln/ is enshrined for ever."

ଆମେରିକୀୟମାନେ, ଗୋରା, କଳା ଓ ଅଣ ଆମେରିକୀୟ ମାନେ ଅଧିକାଂଶ ଆମେରିକୀୟ ପୋଷାକ ହିଁ ପିନ୍ଧିଥାନ୍ତି, ପିଲାଙ୍କୁ ଧରିଥାନ୍ତି ପ୍ରାମ୍‌ରେ, ମୁଖ୍ୟତଃ ସ୍ୱାମୀ ଓ ସ୍ତ୍ରୀ, କଦବା କ୍ୱଚିତ୍ ବାପ କିମ୍ବା ମାଆ ସାଂଗରେ ଥାଆନ୍ତି । ପଥ ଘାଟରେ ବହୁ ସଂଖ୍ୟାରେ ମେଦବହୁଳ ନାରୀ ଓ ପୁରୁଷ ଭେଟ ପଡୁଥାଆନ୍ତି ।

ଆମେ ପାଂଚଟା ବେଳକୁ ଶୁଭକାନ୍ତଙ୍କ ଅଫିସରେ ପହଂଚିଲେ, ସେ ଆମକୁ ଡ୍ରାଇଭ୍‌କରି ଘରକୁ ନେଇ ଆସିବେ, କଥାଥିଲା । ଆମେ ପହଂଚିଲାବେଳକୁ ଶୁଭକାନ୍ତଙ୍କ କାମ ଆହୁରି ସରିନଥାଏ । ତେଣୁ ଆମେ ଇଣ୍ଡିଆନ୍ ଏମ୍ବାସି ସାମ୍ନାରେ ବୁଲାବୁଲି କରୁଥାଉ ।

ଇଣ୍ଡିଆନ୍ ଏମ୍ବାସି ସାମ୍ନା ମହାତ୍ମାଗାନ୍ଧୀଙ୍କ ପ୍ରତିମୂର୍ତ୍ତି-ତାଙ୍କ ଜୀବନ, ଆତ୍ମୋତ୍ସର୍ଗ ଓ ବାଣୀ ସେହି ମଣ୍ଡପରେ ଲିପିବଦ୍ଧ ହୋଇଥାଏ । ଆମେ ସେଠାରେ ଜାତିର ଜନକଙ୍କ ଉଦ୍ଦେଶ୍ୟରେ ସ୍ନେହ ଓ ସଂଭ୍ରମ ଜଣାଇଲୁ ଓ ନିଜର କ୍ଲାନ୍ତି ଅପନୋଦନ କଲୁ । ସାତଟା ବେଳକୁ ରାଷ୍ଟ୍ରଦୂତଙ୍କ ଘର । ପ୍ରଥମେ ପାର୍ଟି, ନାନା ଜାତିର ଭାରତୀୟ ଖାଦ୍ୟ ଦୋଷା, ଇଡିଲି, ବରା ଠାରୁ ଡାଲ୍‌ମା, ମଟର ତରକାରୀ, ଗୋଲାପ ଜାମୁ ପର୍ଯ୍ୟନ୍ତ । ତା ସହିତ ବିଭିନ୍ନ ପ୍ରକାରର ଫଳମୂଳ । ଏସବୁ ପରେ ସଂଗୀତ ଆସର । ପଣ୍ଡିତ ଯଶ୍‌ରାଜଙ୍କୁ ପ୍ରଥମେ ଦେଖିଲି-ୱାଶିଂଟନ୍ ଡି.ସି. ରାଷ୍ଟ୍ରଦୂତଙ୍କ ଘରେ । ବହୁ ପ୍ରସିଦ୍ଧ ଭାରତୀୟ ବ୍ୟକ୍ତି ନିମନ୍ତ୍ରିତ ହୋଇଥାନ୍ତି । ତା' ସହିତ କେତେକ ଆମେରିକୀୟ ମଧ୍ୟ ଅତିଥି ଭାବେ ଆସିଥାନ୍ତି । ଆସର ଆରମ୍ଭରେ ଶ୍ରୀଯୁକ୍ତ ଲଳିତ ମାନସିଂହ ଯଶ୍‌ରାଜ୍‌ଙ୍କୁ ସ୍ୱାଗତ ଜଣାଇ ତାଙ୍କ ପ୍ରତିଭା ବିଷୟରେ କହିଲେ । ଯଶ୍‌ରାଜଙ୍କ ଦଳରେ ବାଦକ ବୃନ୍ଦ ଥାଆନ୍ତି ଓ ଜଣେ ବଂଗୀୟ ଗାୟିକା ଥାଆନ୍ତି । ପ୍ରଥମେ ସେ ଗାଇଲେ 'ଭଜ ଗୋବିନ୍ଦଂ, ସ୍ମର ଗୋବିନ୍ଦଂ, ଗୋବିନ୍ଦଂ ଭଜ ମୂଢ଼ ମତେ' ଗୀତ ଗୋବିନ୍ଦ ବି ଗାଇଲେ ସେ । ସ୍ୱରର ଗମ୍ଭୀରତା, ଉତ୍ସର୍ଗପଣ ଓ ତାଳ ଲୟର ମିଳିତ ଛନ୍ଦ ପରିବେଶକୁ ଗମ୍ଭୀରକରି ତୋଳିଲା । କାନ୍ଦିବାର ସ୍ୱର, ପାଗଳର ସ୍ୱର, ସାଧକର ସ୍ୱର ଯୁଗପତ୍ ମିଶିଯାଇ ସ୍ଥାନ ଓ କାଳକୁ ଭୁଲାଇ ଦେଲା । ଜଣେ ପ୍ରସିଦ୍ଧ ଗାୟକ କିପରି ଗାୟନ କାଳରେ ଭାବାତୀତ ଅବସ୍ଥାକୁ ଯାଇପାରନ୍ତି ସ୍ୱର, ନାଦ, ବାଦ୍ୟ, ସ୍ୱର୍ଗୀୟ ପୁଲକ ଦେଇପାରେ, ତାହାର ଏକ ନିଦର୍ଶନ, ମୋ ଅଭିଜ୍ଞତାରେ ରହିଗଲା । ଆଜିଯାଏ, ଯାହା ବା ସଂଗୀତ ଆସର ମୁଁ ଉପଭୋଗ କରିଛି-ତନ୍ମଧ୍ୟରୁ ଗାୟିକା ସୁନନ୍ଦା ପଟ୍ଟନାୟକଙ୍କର ସର୍ବୋତ୍ତମ ଥିଲା । ଏବେ ପଣ୍ଡିତ ଯଶରାଜ୍ ଆହୁରି ଆହୁରି ବିହ୍ୱଳ କରିପକାଇଲେ । ଏତେ ଗଭୀରତାର ଉପଲବ୍ଧି ବାସ୍ତବିକ୍ ଖୁବ୍ ତୀବ୍ର ଓ କଠୋର । କାରଣ ସଂଗୀତ ଆସର ପରେ ପରେ ମୋତେ କିପରି ଆବିଷ୍ଟ ଲାଗିବାକୁ ଆରମ୍ଭ କଲା । ମନେ ହେଲା, ସେହି ସଂଗୀତର ଗଭୀର ଆବେଗକୁ ଅବଧାରଣ କରିବା ଏତେ ସହଜ ନୁହେଁ । ସେ ଦିନ ମୁଁ ଖୁବ୍ ଶୀଘ୍ର ଶୋଇବାକୁ ଚେଷ୍ଟା କରି ମଧ୍ୟ ପାରିଲି ନାହିଁ । ପରଦିନ ସାଂଗରେ ଗୁଲୁ ଆଉ ଗଲା ନାହିଁ । ମୁଁ, ଝିଅ ଓ ନାତି ବାହାରିଲୁ । ଆଜି ଯିବୁ 'ଏଆର୍ ଏଣ୍ଡ ସ୍ପେସ୍ ମ୍ୟୁଜିଅମ୍', 'ୱାର ମ୍ୟୁଜିମ୍' ପୁଣି 'ହ୍ୱାଇଟ୍ ହାଉସ୍' ଇତ୍ୟାଦି ।

ବସ୍‌ରୁ ଓହ୍ଲାଇ, ଭୂଇଁତଳେ ଟ୍ରେନ୍‌ରେ ଯିବୁ । ଏସ୍‌କେଲଟରରେ ଖସିଲା ବେଳକୁ ଦେଖିଲୁ ଟ୍ରେନ୍‌ଟେ ଠିଆ ହେଇଛି-ଚଢ଼ିବୁ, ଚଢ଼ିବୁ ନାହିଁ ଭାବୁଛୁ-ପେପୁ ଚଢ଼ିଯାଇଚି, ଦ୍ୱାର ବନ୍ଦ ହେବାକୁ ଲାଗିଲା । ଆଗରେ କନି ଓ ପଛରେ ମୁଁ । କନି ହୁଏତ ଦୁଇପାଖ ଦ୍ୱାରକୁ

ଠେଲି ଧରି ଚଢ଼ିଯାଇ ପାରିଥାନ୍ତା, ମାତ୍ର ମୁଁ ଚଢ଼ି ପାରି ନଥାନ୍ତି । ଆମେ ଜାଣିଥିଲୁ, ମୋ ବଡ଼ ଝିଅ ଲେନି ଆମେରିକାରେ ଭୂଇଁତଳ ଟ୍ରେନ୍‌ରେ ଯିବାବେଳେ ସବୁ ଭାରତୀୟ ସହଯାତ୍ରୀଙ୍କୁ ହରାଇ, ବିଳମ୍ବିତ ସଂଧ୍ୟାରେ ଏକା ନ୍ୟୁୟର୍କ ସହରରେ ପହଂଚିଥିଲା । ବହୁ ଶଂକିତ ଅବସ୍ଥାରେ ପଡ଼ିଥିଲା । ଏହିପରି ସେ ଉଠିଗଲା ପରେ ସହଯାତ୍ରୀମାନେ ଉଠିପାରିଲେନାହିଁ । ବହୁ ପଛରେ ଥିଲେ । ଟ୍ରେନ୍‌ଦ୍ୱାର୍ ବୁଜିଗଲା । ତେଣୁ କନି ଓ ମୁଁ ବରାବର ଲକ୍ଷ୍ୟକଲୁ ଯେ, ଦ୍ୱାର ବୁଜିଗଲା ବେଳକୁ ଖୁବ୍ ଜୋର୍‌ରେ ଦୁଇହାତରେ ଦୁଇପଟ ଦ୍ୱାର ଚାପିଧରିଲେ କେଇ ସେକେଣ୍ଡ (ଠିକ୍ ଜଣେ ଚଢ଼ିଯିବା ବା ଓହ୍ଲାଇ ଯିବା ସମ୍ଭବ) ଯାଏଁ ଦ୍ୱାର ଅଟକି ରହେ । ତା' ପରେ ପୁରା ବନ୍ଦ୍ ହେଇଯାଏ । ମୋ ପାଖରେ ଟିକେଟ୍, ପାସ୍‌ପୋର୍ଟ ବା ଡଲାର୍ କିଛି ନଥାଏ । କନି ହଠାତ୍ ଦୁଇପଟ ଦ୍ୱାରକୁ ଆଡ଼େଇ ଧରି 'ପେପୁ ଓହ୍ଲେଇ ଆ' ପାଟିକଲା । ଭିତରେ ଥିବା ଅନ୍ୟ ଯାତ୍ରୀ ମାନେ ବି ତା' ସହିତ ଦ୍ୱାରକୁ ଅଟକାଇଲେ । ପେପୁ ତତ୍‌କ୍ଷଣାତ୍ ଓହ୍ଲାଇ ଆସିଲା-ଦ୍ୱାରରେ ଭିଡ଼ ନଥିଲା । କନିର ଝାଳ ବୋହିଗଲାଣି ସେତେବେଳକୁ । 'ମୋ ପୁଅ କୁଆଡ଼େ ଯାଇଥାନ୍ତା-ନହେଲେ ମା' କୁଆଡ଼େ ଯାଇଥାନ୍ତା ।'-କନିର ବ୍ୟସ୍ତତା । ଯା' ହଉ, ଲେନିଠାରୁ ଶୁଣା ଅଭିଜ୍ଞତା ଆମକୁ ସାହାଯ୍ୟ କଲା । ଆମେ ପରବର୍ତ୍ତୀ ଟ୍ରେନରେ ଗଲୁ । ମ୍ୟାପ୍ ଦେଖି ଦେଖି ଉଦ୍ଦିଷ୍ଟ ସ୍ଥାନରେ ଓହ୍ଲାଇଲୁ ।

'ଏୟାର ଏଣ୍ଡସ୍ପେସ୍ ମ୍ୟୁଜିଅମ୍'ରେ ଉଡ଼ାଜାହାଜ ନିର୍ମାଣର ପ୍ରାଥମିକ ପର୍ଯ୍ୟାୟ ଠାରୁ ଆରମ୍ଭ କରି 'ସ୍ପେସ୍ ସଟଲ୍' ଓ କଲମ୍ବିଆ ଯାନ ପର୍ଯ୍ୟନ୍ତ ସବୁ ଥାଏ । ତଳେ ଲେଖାହେଇ ଥାଏ ସେ ସବୁର ପରିଚୟ । ରାଇଟ୍ ବ୍ରଦର୍ସଙ୍କ ପ୍ରାଥମିକ ଉଡାଜାହାଜ ସହିତ କ୍ରମୋନ୍ନତ ଆଜିର ଉଡ଼ାଜାହାଜ ଓ ମହାକାଶଯାନ, ମହାକାଶଚାରୀଙ୍କ ଚିତ୍ର, ମୂର୍ତ୍ତି, ପୋଷାକ, ଟେକ୍‌ନିକ୍ ବିଷୟରେ ଟିକିନିଖି ବର୍ଣ୍ଣନା ଓ ସେଗୁଡ଼ିକର ପ୍ରଦର୍ଶନ ଭିତରେ ନିଜକୁ ହଜିଗଲାଭଳି ଲାଗୁଥାଏ । କଲମ୍ବିଆର ମଡ଼େଲ୍ ଓ କଳ୍ପନାଙ୍କ ସମେତ ମହାକାଶଚାରୀଙ୍କ ସଂପର୍କରେ ଖୁବ୍ ଆବେଗପୂର୍ଣ୍ଣ, ଦୃପ୍ତ ବିବରଣୀ ଲେଖାଥାଏ । ଆମେରିକାରେ ସ୍କୁଲମାନଙ୍କରେ ସେଇଟି ଗ୍ରୀଷ୍ମଛୁଟି ସମୟ ହେତୁ ବହୁ ପର୍ଯ୍ୟଟକ ଆସିଥାନ୍ତି ଓ ସବୁଠାରେ ଲମ୍ବା କ୍ୟୁ ଲମ୍ବିଥାଏ ।

ସେଠାରୁ 'ଯୁଦ୍ଧ ମ୍ୟୁଜିୟମ୍' ପ୍ରଥମ ମହାଯୁଦ୍ଧ ଠାରୁ ଦ୍ୱିତୀୟ ମହାଯୁଦ୍ଧ ପର୍ଯ୍ୟନ୍ତ । ଆମେରିକାର ଯୋଦ୍ଧା, ପାଇଲଟ୍ ମାନଙ୍କର ଫଟୋ, ବିବରଣୀ, ମୃତ୍ୟୁ ଇତ୍ୟାଦିର ଚିତ୍ର ଖୁବ୍ ମର୍ମସ୍ପର୍ଶୀ । ସେଠାରେ ବହୁ ଆମେରିକୀୟ ମହିଳା ପାଇଲଟ୍ ଓ ଯୋଦ୍ଧାଙ୍କ ନାମ

ଅଛି- ଯେଉଁମାନେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସକ୍ରିୟ ଅଂଶଗ୍ରହଣ କରି ମୃତ୍ୟୁ ବରଣ କରିଛନ୍ତି -ସେମାନଙ୍କ ନାମ, ଯୁଦ୍ଧ ଉଡ଼ାଜାହାଜର ନାମ, ତାଙ୍କର କୃତି ଓ ମୃତ୍ୟୁର ସମୟ ନିର୍ଦ୍ଦେଶ କରାଯାଇଛି । ସବୁ ଲିଟରେଚରକୁ ପଢ଼ି ଦେଖି ଦେଖି ଅନୁଭବ କରି ଲାଗିଲେ ଗୋଟିଏ ଦର୍ଶନୀୟ ସ୍ଥାନକୁ ଗୋଟିଏ ଦିନ ବି ଅଣ୍ଟିବ ନାହିଁ । ମଣିଷର ଜୀବନ କାଳର ସୀମିତତା ଓ ତା'ର ଇଚ୍ଛା ଆଗ୍ରହର ଦୀର୍ଘତା ବାସ୍ତବିକ୍ ସବୁଠୁ ବଡ ବିଡ଼ମ୍ବନା । ୟା' ପରେ 'ହ୍ୱାଇଟ୍ ହାଉସ୍', 'ଫେଡ଼େରାଲ୍ ବ୍ୟାଙ୍କ' ଇତ୍ୟାଦି ଦେଖିଲୁ । ସନ୍ତ୍ରାସବାଦୀ ଆକ୍ରମଣ ପରେ 'ହ୍ୱାଇଟ୍ ହାଉସ୍'ର ଖୁବ୍ ନିକଟକୁ କେହି ଯାଇପାରିବେ ନାହିଁ । ବାଟ ବନ୍ଦ ଓ ବ୍ୟବସ୍ଥା ନିଷିଦ୍ଧ ମଧ । ପାଚେରୀ ବାହାରୁ ଗ୍ରିଲ୍‌ଡ ଫାଟକ ଦେଇ ଯାହା ଦେଖିବା କଥା । ପ୍ରାୟ ଅଧାକିଲୋମିଟର ଦୂରରୁ 'ହ୍ୱାଇଟ୍ ହାଉସ୍'କୁ ଦେଖିଲୁ, ଫଟୋ ଉଠାଇଲୁ । ସବୁ ପର୍ଯ୍ୟଟକ ଦୂରରୁ ହିଁ ଦେଖିବାକୁ ପାଇଲେ । ବିଶ୍ୱର ଶକ୍ତିଶାଳୀ ରାଷ୍ଟ୍ରର ମୁଖ୍ୟଙ୍କ ଘର ଓ ଅଫିସ୍ । ବିରାଟ ହତା, ସୁସଜ୍ଜିତ, ସୁନ୍ଦର ।

ସେଦିନ ସଂଧ୍ୟାରେ ନିମନ୍ତ୍ରଣ ଥାଏ । ମେରୀଲାଣ୍ଡ ଯିବାକୁ ହେବ । ୱାଶିଂଟନ ଡି.ସି. ଠାରୁ ମେରୀଲାଣ୍ଡ ଖୁବ୍ ଦୂର ନୁହେଁ, ସେଠାରେ ବିଶିଷ୍ଟ ଓଡ଼ିଆ ପ୍ରଶାନ୍ତ ବିଶ୍ୱାଳଙ୍କ ଘର । ମୁଁ ପୂର୍ବରୁ କହିଛି, ନ୍ୟୁୟର୍କରେ ତାଙ୍କ ସହ ଅମରେନ୍ଦ୍ରଙ୍କର 'ଥାଇ' ହୋଟେଲ୍ ଭୋଜିରେ ଆମର ସାକ୍ଷାତ ହୋଇଥିଲା-ପୁଣି ଓସା ସମ୍ମିଳନୀରେ ବି । ଆମେ ୱାଶିଂଟନ୍‌ରେ ପହଂଚିବା ପୂର୍ବରୁ ଶୁଭକାନ୍ତଙ୍କ ସହ ତାଙ୍କ ପ୍ରୋଗାମ୍ ଫିକ୍ସ୍ଡ । ସେ ଗାଡ଼ି ନେଇ ଆସିଲେ । ତାଙ୍କ ସହ ମୁଁ ଓ ତିନିଟି ପିଲା ଏବଂ ଶୁଭକାନ୍ତଙ୍କ ସହ ବୁଇ ଓ କନି । ଦୁଇଟି ଗାଡ଼ିରେ ଯାଇ ପହଂଚିଲୁ । ତାଙ୍କ ପତ୍ନୀ ଦିଲ୍ଲୀର ଝିଅ । ଅଣ ଓଡ଼ିଆ-ମାତ୍ର, ବାରି ହୁଅନ୍ତି ନାହିଁ । ଘରେ ଓ ଖାଦ୍ୟରେ ପୂରା ଓଡ଼ିଆ ରୁଚି । ସେ ଦିନ ପ୍ରଶାନ୍ତ ନିଜେ ବି କିଛି ଆମିଷ ଖାଦ୍ୟ ତିଆରି କରିଥିଲେ । ଓଡ଼ିଆ ଢ଼ାଞ୍ଚାରେ । ତାଙ୍କର ପୁଅଟିଏ, ଝିଅଟିଏ, ସାତ ବର୍ଷ ଓ ଚାରି ବର୍ଷର । ମୋର ଶନିବାର । ମୁଁ ନିରାମିଷ । ପ୍ରଶାନ୍ତ ଓ ତାଙ୍କ ସ୍ତ୍ରୀ କେତେ ଯେ ବ୍ୟସ୍ତ ହେଲେ-ତାଙ୍କ ରାନ୍ଧିବା କାଳେ ଅକାରଣ ହେଇଗଲା । ମୁଁ କହିଲି 'ଆପଣମାନେ ପିଲାଛୁଆ ମିଶି ଆଠଜଣ, ମୁଁ ଜଣେ । ମୋ ଠିଁ କ'ଣ ଅଛି । ନିରାମିଷ କ'ଣ ଖାଦ୍ୟ ନୁହେଁ ?'

କିଛି ଓଡ଼ିଆ ଗୀତ, ଅକ୍ଷୟ ମହାନ୍ତିଙ୍କ ଗୀତ, 'ସିନ୍ଦୁର ବିନ୍ଦୁ' ସିନେମା ଗୀତ ଠାରୁ ଛାନ୍ଦ, ଚଂପୂ ସହିତ 'ଶେଷ ଶ୍ରାବଣ', 'କା' ଆଦି ସିନେମା ଗୀତ ଚାଲିଥାଏ । କିଛି ସମୟ ପାଇଁ ଭୁଲି ହେଇ ଯାଉଥାଏ ଯେ ୟେ ଆମେରିକା ନୁହେଁ ଓଡ଼ିଶା । ଡିନର

ପରେ ପ୍ରସ୍ତାବ ଉଠିଲା ମେରୀଲାଣ୍ଡ ସହରର ରାତିକୁ ଉପଭୋଗ କରିବା ପାଇଁ ଗୁଡ଼ାଏ ବୁଲିବା । ମାତ୍ର ଶୁଭକାନ୍ତ ଅମଙ୍ଗ ହେଲେ, ସେ କ୍ଳାନ୍ତ । ମୋର ଭାରି ଇଚ୍ଛାଥାଏ । ବୁଲିବାର ସାମାନ୍ୟ ସୁଯୋଗ ମୁଁ ହାତଛଡ଼ା କରିବାକୁ ଚାହେଁ ନାହିଁ । ମଧ୍ୟରାତ୍ରି, ନିରୋଳା ମେରୀଲାଣ୍ଡ ସହର କାଳେ ଭାରି ଆକର୍ଷଣୀୟ । ଅଥଚ୍ ମୁଁ ଆଉ ନିଜ ଇଚ୍ଛା ବ୍ୟକ୍ତ କଲି ନାହିଁ ।

କିନ୍ତୁ ସେଇଠି ଗୋଟିଏ ଯୋଜନା ହେଲା । ଆମେ ଦୁଇ ପରିବାର ଆସନ୍ତା କାଲି ଦିନଟା ଆର୍ଲିଂଟନ୍ ସିମେଟାରି ଯିବୁ । ଦୁଇଟି ଯାକ ପରିବାର ଏ ଯାଏଁ କେହି ସେ ଦର୍ଶନୀୟ ସ୍ଥାନଟି ଦେଖି ନ ଥାନ୍ତି । ଆମ ଦେଖିବା ଯୋଜନାରେ ବି ଏ ସ୍ଥାନଟି ନଥିଲା । ଟିକେ ଦୂର, ଶୁଭକାନ୍ତଙ୍କୁ ରାସ୍ତାବି ମାଲୁମ୍ ନ ଥାଏ । ତେଣୁ ଆମେ ଜୁଲାଇ ତେର ତାରିଖ ରବିବାର ସକାଳୁ ନ୍ୟୁୟର୍କ ଫେରିବାର ଯୋଜନା ଥାଏ । କିନ୍ତୁ ବର୍ତ୍ତମାନ୍ ଆମର ପ୍ରୋଗ୍ରାମ୍ ବଦଳିଲା । ଆମେ ଭର୍ଜିନିଆ ରାଜ୍ୟରେ ଅବସ୍ଥିତ ସିମେଟାରୀ ଦେଖି ସାରି ସଂଧ୍ୟା ପାଂଚଟାରେ ବସ୍ ଧରିବୁ ଓ ନଅଟା ରାତିରେ ପହଂଚିବୁ ନ୍ୟୁୟର୍କରେ । ପ୍ରଶାନ୍ତ ଅମରେନ୍ଦ୍ରଙ୍କୁ ଫୋନ୍‌ରେ ଏ କଥା ଜଣାଇଦେଲେ । ବେଥେସ୍‌ଡାରୁ ବାହାରିଲୁ ଭର୍ଜିନିଆର ସୀମାନ୍ତସ୍ଥ ସିମେଟାରୀକୁ । ବାଟରେ ପଡ଼ିଲା 'ପୋଟୋମାକ୍' ନଦୀ 'କି' ବ୍ରିଜ୍-ଯାହାର ଡାହାଣରେ ୱାଶିଂଟନ ଡି.ସି.ଓ ବାଁରେ ଭର୍ଜିନିଆ ରାଜ୍ୟ । କିଛି ବାଟ ଚାଲିଲୁ-ପ୍ରଚୁର ଫୁଲ ଓ ସବୁଜ ଲନ୍ ତଥା ସଯତ୍ନ ବର୍ଦ୍ଧିତ ଗଛଲତା । ସେଇଟି କବର ସ୍ଥାନ । ଖୁବ୍ ପ୍ରଶସ୍ତ ଓ ଦୀର୍ଘ-ଆଖି ନ ପାଇବା ଯାଏ ଲମ୍ବିଛି । ଛୋଟ କବର ଉପରେ ଛୋଟ ସ୍ମୃତିସ୍ତମ୍ଭ, କେଉଁଠି ବା ସ୍ମୃତିସ୍ତମ ଅପେକ୍ଷାକୃତ ବଡ଼-ସୈନ୍ୟଙ୍କ ଉପରିସ୍ଥ ମାନଙ୍କ ଚାକିରୀର କ୍ରମାନୁସାରେ ତିଆରି । କିନ୍ତୁ ସବୁ କବରରେ ମୃତ ବ୍ୟକ୍ତିଙ୍କ ନାମ ଓ ମୃତ୍ୟୁର କାଳ ଲିଖିତ । ସବୁ ଗୁଡ଼ିକ ଯୁଦ୍ଧର ମୃତ୍ୟୁ । ଭିତରେ ନିହତ ରାଷ୍ଟ୍ରପତି ଜନ୍ କେନେଡ଼ିଙ୍କ କବର ସ୍ଥାନ । ତାଙ୍କ ନିକଟରେ ତାଙ୍କ କନ୍ୟାର ଓ ଜାକେଲିନ୍ ଓନାସିସ୍‌ଙ୍କର କବର । ପ୍ରଚୁର ଗୋଲାପରେ ସଜ୍ଜିତ । ପାଖାପାଖି ରବର୍ଟ କେନେଡ଼ିଙ୍କ କବର । କେନେଡ଼ିଙ୍କ Cemeteryରେ ତାଙ୍କର ଅନେକ ବାର୍ତ୍ତା ଲେଖା ହୋଇଥାଏ । ସେଥିରୁ ଗୋଟିଏ- "And so my fellow Americans, ask not what your country can do for you/ Ask what you can do for your country" ବହୁ କବର ସ୍ଥାନ ସତେଜ ଗୋଲାପରେ ସୁସଜ୍ଜିତ । କେଜାଣି କେତେ ସମୟ ଲାଗନ୍ତା, ଗୋଟିଗୋଟି ଦେଖିଲେ ! ଆମେ ବିହଙ୍ଗ ଦୃଷ୍ଟି ପକାଇବା କଥା ଯାହା । ଏତିକି ବେଳକୁ ଦିନ ଗୋଟାଏ ପାଖାପାଖି-ପ୍ରଶାନ୍ତ କହିଲେ,'ଆମେ ଭାଗ୍ୟବାନ୍-ଏବେ ଆମେ ପନ୍ଦର ମିନିଟ୍ ଭିତରେ

ଦେଖିପାରିବା ପହରା ଦେଉଥିବା ସୈନ୍ୟର ପାଳି ବଦଳିବ ।' ଏତେ ବଡ଼ କବର ସ୍ଥାନରେ ଚବିଶ ଘଣ୍ଟା ପହରା ଦିଅନ୍ତି ସୈନ୍ୟ ଜଣେ ଲେଖାଁ । ପ୍ରତି ଘଣ୍ଟାରେ ଜଣକୁ ଜଣ ବଦଳୁ ଥାନ୍ତି । ଜଣେ ଏକ ଘଣ୍ଟା ଡ୍ୟୁଟି ସାରି ଫେରେ, ଆଉ ଜଣେ ତା' ଠାରୁ ଦାୟିତ୍ୱ ନିଏ । ଏହି କବର ସ୍ଥାନ ଭିତରେ ଗୋଟିଏ ବଡ଼ ଅଟ୍ଟାଳିକା ଅଛି-ତା' ସାମ୍ନାରେ ଗୋଟିଏ ଛୋଟ ଟେଲିଫୋନ ବୁଥ୍‌ପରି ଆକାରର ଘର । ବାୟୁ ଚଳାଚଳ ପାଇଁ ଛିଦ୍ର ଅଛି-ଦ୍ୱାର ବି ଅଛି । ତା' ଭିତରେ ଜଣେ ସୈନ୍ୟ ଘଣ୍ଟାଏ ରହିବ ଓ ତା ପରେ ଆଉ ଘଣ୍ଟାଏ ଆଉ ଜଣକ ରହିବାର ପାଳି । ଏପରି ଚବିଶ ଘଣ୍ଟାରେ ଚବିଶଜଣ ପହରା ଦେବେ । ଏହା ଗୋଟିଏ ବିରଳ ଓ ଆକର୍ଷଣୀୟ ଦୃଶ୍ୟ । ସେଠାରେ ସବୁ ନିସ୍ତବ୍ଧ, ପରିଚ୍ଛନ୍ନ, ସୁନ୍ଦର । ପ୍ରଚୁର ଫୁଲ ସଜ୍ଜା, କାର୍ପେଟ ପଡ଼ିଥାଏ । ଜଣେ କଳାପୋଷାକ ଧାରୀ ସୈନ୍ୟ କାନ୍ଧରେ ବନ୍ଧୁକଧରି ପ୍ରାୟ ଶହେ ଫୁଟ ରାସ୍ତା କାର୍ପେଟ୍ ଉପରେ ଚାଲୁଥିବ । ମାର୍ଚ୍ଚ କରୁଥିବ, ଯାଉଥିବ, ଆସୁଥିବ ଅଟେନ୍‌ସନ୍ ଭଙ୍ଗୀରେ । ଏହା ମଧ୍ୟରେ ଆଉ ଜଣେ ସୈନ୍ୟ ଯଥାରୀତି ଆସିବ । ସେ ପୂର୍ବସୈନ୍ୟ ଠାରୁ ଚାର୍ଜ୍ ନବ । ତା' ପରେ ଏକ ଘଣ୍ଟା ଯାଏଁ ସେଇ ବୁଥ୍ ଭିତରେ ସୈନ୍ୟଟି ଠିଆହୋଇ ରହିବ । ଏକ ଘଣ୍ଟା ପୂରିବାର ପାଂଚ ମିନିଟ୍ ଆଗରୁ ବାହାରି ମାର୍ଚ୍ଚ କରିବ ଓ ଆଉ ଜଣକୁ ଚାର୍ଜ ଦବ । ସେ ପୁଣି ପାଂଚ ମିନିଟ୍ ଭିତରେ ବୁଥ୍‌ରେ ଯାଇଁ ଠିଆ ହେବ । ରାତିରେ ବି ଏଇଆ ଚାଲେ । ରାତିରେ ତ ଟୁରିଷ୍ଟ ନଥିବେ । ବିଚରା ସୈନ୍ୟ ଜଣକ ଏକାକୀ ଏଡ଼େ ବିରାଟ କବର ସ୍ଥାନରେ ଘଣ୍ଟାଏ ହେଉପଛେ, କେମିତି ରହିବ ? ବୋଧେ ପାଖରେ ଅଟ୍ଟାଳିକା ଭିତରେ କେହି ରହୁଥିବେ । ସେଠାରେ ଲେଖାଥାଏ "Here rests in honoured glory an American soldier" ଏଇଠି ଚଗଲାମି ପାଇଁ କନିର ତାଡ଼ନାରେ ପେପୁ କାନ୍ଦିଲା-ଆମେ ସମସ୍ତେ କହିଲୁ 'କାନ୍ଦ ନା, ପୋଲିସ୍ ଧରିବେ ।' ସେ ବି ଚୁପ୍ ହେଇଗଲା । ସେ ଜାଣିସାରିଥାଏ-ଆମେରିକାରେ ପିଲାଟିଏ ଘରେ ହେଉ ବାହାରେ ହେଉ, କାନ୍ଦିଲେ କେହି ପଡୋଶୀ ବା ପାଖଲୋକ ପୋଲିସ୍‌କୁ ଫୋନ୍ କରି କାନ୍ଦିବା ଜଣାଇ ଦବ ଯଦି, ପୋଲିସ୍ ସାଂଗେ ସାଂଗେ ପିଲାକୁ ନେଇଯିବ, ବାପ, ମା ପେନାଲ୍‌ଟି ଦେଇ ପିଲାକୁ ଆଣିବେ । ଆମ ସାଥିରେ ଦୁଇଟି ପିଲା । ଗାଡ଼ି ଠେଲି ଠେଲି ତାଙ୍କ ବାପା ମା' ମାନେ ଚାଲି ଥାନ୍ତି । ଗୋଟେ ବୁଇର ଝିଅ ଓ ଅନ୍ୟଟି ପ୍ରଶାନ୍ତଙ୍କ ଝିଅ-ଅବଶ୍ୟ ତାଙ୍କ ବାପା କିମ୍ୱା ମା ହିଁ ଗାଡ଼ିକୁ ଠେଲି ଠେଲି ଚାଲିଥାନ୍ତି । କେବଳ ବୟସ ନୁହେଁ, ପିଲାର ଓଜନ କମ୍ ଥିଲେ ମଧ୍ୟ ତାଙ୍କୁ ଠେଲା ଗାଡ଼ିରେ ନେବାକୁ ହୁଏ ।

ନ୍ୟୁୟର୍କ 'ପୋର୍ଟ ଅଥରଟି' ବସ୍‌ଷ୍ଟାଣ୍ଡରେ 'ଗ୍ରେହାଉଣ୍ଡ' ବସ୍ ପହଞ୍ଚିଲା ବେଳକୁ ରାତି ଦଶଟା ପାଖାପାଖି । କାରଣ ରାସ୍ତା ମଝିରେ ଥରେ ଡ୍ରାଇଭର ଯାତ୍ରୀମାନେ ବାହାରକୁ ଯିବେ ବୋଲି ଗୋଟିଏ ସ୍ଥାନରେ ବସ୍ ରଖି ଦଶ ମିନିଟ୍ ପାଇଁ ପଦାକୁ ଯିବାକୁ ଯାତ୍ରୀଙ୍କୁ କହିଲା । ସେଠାରେ ଟଏଲେଟ ଓ ଖାଦ୍ୟ ଦୋକାନ୍ ବି ଥିଲା । ଯାତ୍ରୀମାନେ ଅଧଘଣ୍ଟାକରୁ ଅଧିକ ସମୟ ନେଇଗଲେ । ତେଣୁ ପହଂଚିବା ଡେରିହେଲା । ମତେ ଅଡୁଆ ଲାଗୁଥାଏ । ଜଣେ ତରୁଣୀ, ଜଣେ ବୃଦ୍ଧା, ଜଣେ ବାଳକ । ଡଲାସରୁ ଆସିଲା ବେଳେ ରଂଜନକୁ କହିଥିଲି, 'ତୁମକୁ ତ ଛୁଟି ମିଳିଲା ନାହିଁ । କନିଟା ପିଲାଲୋକ, ଜଣେ ବୃଦ୍ଧା ଓ ଜଣେ ବାଳକକୁ ନେଇ ଏତେ ଜାଗା ଯିବ, ହଇରାଣ ହବନି ତ ।' ରଂଜନ୍ ଆଶ୍ୱାସନା ଦେଇଥିଲେ 'ଆପଣଙ୍କ ଯତ୍ନନେବା ତ ବଡ଼କଥା । ଏକା କୋଉଠିକୁ ଆମେ ଛାଡ଼ିପାରିବୁ ନାହିଁ । କନି ସବୁ ଠିକ୍ ଚଳାଇନବ ।' ବସ୍‌ରୁ ଓହ୍ଲାଇଲା ବେଳକୁ ରାସ୍ତା କଡ଼ରେ ଟ୍ୟାକ୍ସି କ୍ୟୁରେ ରହିଛି । ଜଣେ ବସ୍ ମେଣ୍ଟେନାନ୍ସର ଲୋକ ଗୋଟି ଗୋଟି ଟ୍ୟାକ୍ସି ଛାଡୁଛନ୍ତି । ଆମ ପାଳି ଆସିଲା । ଆମେ ନିର୍ଦ୍ୱନ୍ଦ୍ୱରେ ମାନ୍‌ହାଟନ୍ ଅମରେନ୍ଦ୍ରଙ୍କ ଘରେ ପହଂଚିଗଲୁ ।

ଅମରେନ୍ଦ୍ର ସାଗ୍ରହ ଡ଼ାଇନିଂ ଟେବୁଲ୍‌ରେ ବସିଲେ । ବହୁପ୍ରକାର ଖାଦ୍ୟ । ସେ ଖୁସି ହେଇ ଖାଦ୍ୟ ଉପରେ ଟିପ୍‌ଣୀ ଦେଲେ । କହିଲେ 'ଇଣ୍ଡିଆରୁ ଛେଳିମାଂସ ଆସିଛି-ଖାଆନ୍ତୁ । ଆଉ ମୁଁ ଏ ଶାଗ ଭାଜିଚି, ଆପଣଙ୍କ ପାଇଁ ସ୍ପେଶିଆଲ୍ ।' ଛେଳିମାଂସ ମୁଁ ଖାଏନାହିଁ । ଶାଗ ଖାଇଲି । ଅମରେନ୍ଦ୍ର ପଚାରିଲେ, 'ଭଲ ହେଇନି, ମୁଁ ରାନ୍ଧିଚି ?' ଅଗତ୍ୟା ସେ ଅଲଣା ଖଡ଼ାଶାଗ ଖାଉ ଖାଉ ମୋ ଉତ୍ତର ହେଲା, 'ହଁ, ହଁ, ଖୁବ୍ ଭଲ ହେଇଚି ।'



# ଘୂର୍ଣ୍ଣିବାତ୍ୟା ଓ ଉତ୍ତର-ପୂର୍ବ ଆମେରିକା

ପ୍ରକୃତି କିପରି ମାରାତ୍ମକ ଓ ପ୍ରଚଣ୍ଡ ହୋଇପାରେ, ଆମେ ଓଡ଼ିଶାର ମହାବାତ୍ୟାରୁ ଅବଗତ ହୋଇଛେ । ଯେଉଁ ଇରି ଉପସାଗର କୂଳରେ ଆମେ ମାଳ ମାଳ ସିଗଲ୍, ଭଦ୍ର, ସଂଭ୍ରାନ୍ତ, ଲହରୀ ଓ ଘନ ସବୁଜ ବୃକ୍ଷ ବେଷ୍ଟିତ ଉପକୂଳର ସୌନ୍ଦର୍ଯ୍ୟରେ ବିଭୋର ହୋଇଥିଲୁ, ସେଇ 'ଇରି'ର ତାଣ୍ଡବ ଲୀଳା ଦେଖିବାକୁ ମିଳିଲା ବିଳମ୍ବିତ ଅଗଷ୍ଟ ମାସରେ । ପ୍ରତିଦିନ ପରି ରଂଜନ ସେଦିନ ଅଫିସରୁ ଫେରି ମୋତେ ଖବର ଦେଲେ । ଆମର ରୁଟିନ୍ ହେଲା ଅଫିସ୍‌ରୁ ରଂଜନ ଫେରି, ଘଣ୍ଟାଏ ଖଣ୍ଡେ ମୋ ସହିତ ଆମେରିକାର ଅବସ୍ଥା, ତାର ରାଜନୀତି, ଅର୍ଥନୀତି, ସମାଜ ବିଷୟରେ ଓ ଭାରତର ଯାହାଯାହା ଖବର ଥାଏ, ସେ ବିଷୟରେ ଆଲୋଚନା କରନ୍ତି, ମୋତେ ଜଣାନ୍ତି । ତାଙ୍କଠାରୁ ଶୁଣିଲି ଓ ତତ୍‌କ୍ଷଣାତ୍ ଟିଭି ଖୋଲିଲୁ । ସାରାଦିନ ପ୍ରଚାର ଚାଲିଥାଏ-ଇରି ଉପସାଗରର ଘୂର୍ଣ୍ଣିବାତ୍ୟା ତା'ର ପରିବେଷ୍ଟନୀକୁ ଫିଲାଡ଼େଲ୍‌ଫିଆଠାରୁ ନ୍ୟୁୟର୍କ ଯାଏ ସାତ ଆଠଟି ସହର କବଳିତ କରିପକାଇଥିଲା । ମୁଖ୍ୟ ବିଦ୍ୟୁତ୍ ସରବରାହର ଟ୍ରାନ୍ସମିଟରକୁ ଉପାଡ଼ି ଦେଇ ଅକାମି କରିଦେଇଥିଲା । ଫଳରେ ବାର ଘଣ୍ଟା ଆଲୁଅ ନାହିଁ । ଏହା ଆମେରିକାର ମୁଖ୍ୟ ସହରର ଜୀବନଯାତ୍ରାକୁ ଅଚଳ କରିପକାଇଛି । ବିଜୁଳିଶକ୍ତି ଆମେରିକାର ସର୍ବପ୍ରଧାନ ଓ ମୂଳଶକ୍ତି । ଭୂଇଁତଳ ଟ୍ରେନ୍, ଏୟାର କଣ୍ଡିସନର, ପାଣି ପମ୍ପ,ଟେଲିଫୋନ୍ ସବୁ ଅଚଳ । ଟିଭିରେ ସେ ସବୁର ମର୍ମନ୍ତୁଦ ଦୃଶ୍ୟ । ଭୂଇଁତଳ ଟ୍ରେନ୍‌ରୁ ବାହାରି ଆସୁଥାନ୍ତି ମ୍ରିୟମାଣ ଲୋକ, କ୍ରନ୍ଦନରତ ବା ମୂର୍ଚ୍ଛାହତ ଶିଶୁ, ନାରୀଗଣ, ଗରମ ଓ ଝାଳରେ ଜୁବୁବୁବୁ-ଅଣନିଃଶ୍ୱାସୀ ପ୍ରାୟେ, ବାହାରେ ସେମାନଙ୍କ ସାହାଯ୍ୟାର୍ଥେ ଗାଡ଼ିମାନ ଅପେକ୍ଷା କରିଥାଏ । ନ୍ୟୁୟର୍କର ପଚାଶ ଷାଠିଏ ମହଲା ଘରଉପରକୁ ଲିଫ୍ଟ ଚାଲୁନାହିଁ କି ପାଣି ଯୋଗାଯୋଗ ନାହିଁ । ପ୍ରଥମରୁ ଆମେ ଭାବିଥିଲୁ- ଘଣ୍ଟେ ଦି ଘଣ୍ଟାରେ ବିଜୁଳି ଆସିଯିବ । ଆଧୁନିକ ବିଜ୍ଞାନର କରାମତିରେ ପ୍ରକୃତି କେତେ ବ୍ୟାଘାତ ବା କରିବ ! କିନ୍ତୁ ତା' ହୋଇ ପାରିଲା ନାହିଁ । ବାର ଘଣ୍ଟା କାଳ ନାହିଁ ନଥିବା ଅବସ୍ଥା-ନିଉଜ-ବୁଲେଟିନ୍ ଚାଲିଥାଏ ଟିଭିରେ 'ଇରି' ଉପସାଗରରୁ ଆସିଥିବା ବାତ୍ୟାର ଗତିପଥ, ତା' ଦ୍ୱାରା କ୍ଷୟକ୍ଷତି ଓ ବିପର୍ଯ୍ୟସ୍ତ ଜନଜୀବନ ଦେଖି ଲାଗୁଥାଏ ପ୍ରକୃତି ବାସ୍ତବରେ ଅପରାଜେୟ । ମଣିଷର ସକଳ ଶୃଙ୍ଖଳା ଓ ସାବଧାନତାକୁ ସେ ତୁଚ୍ଛ କରିଦେଇ ପାରେ । ସେ ବିଜୟୀ । ମଣିଷ ତା' ସହ ଦ୍ୱନ୍ଦ୍ୱରେ ସବୁଠାରେ ପରାଜିତ । ସେ ହେଉ ମହାବାତ୍ୟା ଓଡ଼ିଶାର ବା ବାତ୍ୟା ଇରି ଉପସାଗରର, ଆମେରିକାର !



# କ୍ୟାଂପସ୍ ଜୀବନ

ଉତ୍ତର-ପୂର୍ବ ଆମେରିକା ଭ୍ରମଣ ସାରି ଫେରିଲା ବେଳକୁ କ୍ୟାଂପସ୍ ସାରା ଫୁଲ ଭର୍ତ୍ତି । ଆମ ଫ୍ଲାଟ୍ ସାମ୍ନା ଗଛରେ ଫିକାବାଇଗଣୀ ରଂଗର ଛେନା ଫୁଲରେ ଡାଳ ଭାଙ୍ଗି ପଡୁଛି । ଉଚ୍ଚା-ତିନି ମହଲା ଘରର ଛାତ ଯାଏଁ । ସବୁଦିନେ ବହୁ ସଂଖ୍ୟାରେ ଘରଚଟିଆ -ଆମର ଓଡ଼ିଶାରେ, ସହରମାନଙ୍କରେ ଆଜିକାଲି ଘରଚଟିଆ ବିରଳ । ସେଠି କିନ୍ତୁ ଏଠାଠାରୁ ଟିକେ ବଡ଼ ଆକାରର ଯୋଡ଼ି ଯୋଡ଼ି ଘରଚଟିଆ-ଫ୍ଲାଟ୍‌ର କୋଉ ଖୋପରେ ରହନ୍ତି କେଜାଣି, ଦେଖିହୁଏ ନାହିଁ । ଫୁଲଗଛ ସାରା ଉଡିବୁଲନ୍ତି- କୁର୍ କୁର୍ କରନ୍ତି-ଆଉ ଲନ୍‌ରେ କୁଆ-ଏଠା କୁଆଠାରୁ ପତଳା ଓ ସାନ ଆକାରର । ପୁଣି କେତେ ରକମର ଚଢ଼େଇ । ଫୁଲଗଛର ମୂଳରେ ଚଉତରା-ଚଉତରା ଉପର ଯାକ ଦୂବଭଳି ଘାସ । ଦୂବ ରୂପେ ମୁଁ ତାକୁ ବ୍ୟବହାର କରେ । ଘରେ ଥାଆନ୍ତି ଗୋପାଳଙ୍କ କୃଷ୍ଣ । କଟକ ଚଣ୍ଡୀଙ୍କର, ଶିବଙ୍କର ଫଟୋ । ଛେନା ଫୁଲ ଓ ଦୂବରେ ମୋର ଠାକୁର ପୂଜା ଚଳିଯାଉଥାଏ । ଯଦିଓ ସେଠାରେ ଫୁଲ ତୋଳିବା ମନା । ତେବେ ସେଇ ଛେନା ଫୁଲଗଛକୁ କେହି ଜଗନ୍ତି ନାହିଁ । ବହୁତ ବଡ଼ ବଡ଼ ବଗିଚା-ଗୋଲାପ ଆଦି ସୁନ୍ଦର ଫୁଲ ଥାଏ ଯେ, ସବୁ ଫୁଲ ଛିଣ୍ଡାଇବା ମନା-ଲୋକେ କଡ଼ା କଡ଼ି ଆଇନ୍ ମାନନ୍ତି- ନହେଲେ ଆରେଷ୍ଟ ହେବେ । ଆମ ଘର ଚାରି ପାଖରେ ଘଞ୍ଚ ଛେନାଫୁଲ ଗଛ ଥିବାରୁ ମୁଁ କେହି ନଦେଖିଲା ବେଳେ କିଛି ଫୁଲ ତୋଳି ଆଣେ-ପୋଲିସ୍ ପେଟ୍ରୋଲିଂ ସବୁବେଳେ ଚାଲିଥାଏ-ଦିନରାତି-ପୋଲିସ୍ ଗାଡ଼ିର ରଂଗ, ଆକାର ଅଲଗା, ଧପ୍ ଧପ୍ ହଉଥାଏ ଲାଇଟ୍ । କ୍ୟାଂପସ୍‌ର ରାସ୍ତାଗୁଡ଼ିକ ପରିଚ୍ଛନ୍ନ-ସବୁଠାରେ, ସ୍ଥାନର ନିର୍ଦ୍ଦେଶ ଥାଏ-ସବୁଠାରୁ ବେଶି ସୁବିଧା ଶାରୀରିକ ଅକ୍ଷମଙ୍କ ପାଇଁ-ସବୁଆଡ଼େ କି ଟ୍ରେନ୍ କି ବସ୍, କି ପ୍ଲେନ୍, ରାସ୍ତାଘାଟ, ଟୁରିଷ୍ଟ ପ୍ଲେସ୍, ସବୁଠି ହ୍ୱିଲ୍‌ଚେୟାର ବାଲାଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା । ଅକ୍ଷମଙ୍କ ପାଇଁ ଦେଶ ତରଫରୁ ଭତ୍ତା । ପୂର୍ବରୁ ବାଣୀବିହାରର ଚଳଣି ସହିତ ମୁଁ ଅଭ୍ୟସ୍ତ । ସ୍ୱତଂତ୍ର ଭାବେ ନିରୋଳା ଓ ଆତ୍ମୀୟ ପରିବେଶ । ଏଠାରେ ମଧ୍ୟ ନିରୋଳା ଓ ଘରୋଇ ପରିବେଶ । କିନ୍ତୁ ପରିଚ୍ଛନ୍ନ, ଶୃଙ୍ଖଳିତ-ମାତ୍ର ଦିନବେଳା ଘରେ କେହି ନଥାନ୍ତି-ନିହାତି ଘରଣୀ ହୋଇଥିଲେ, ପଦାକୁ ଯାଇ ନଥିଲେ, ଥିବେ । ଏବେ ପୁଣି ବାସିନ୍ଦାମାନେ ଅଧିକାଂଶ ଛାତ୍ର-ଛାତ୍ରୀ-କୋଡ଼ିଏ ବର୍ଷର ଛାତ୍ର-ଛାତ୍ରୀ ବି ଅଛନ୍ତି-ଶହଶହ କାର୍ ପାର୍କିଂରେ ଥାଏ-ଆଉ ଯୋଡ଼ି ଯୋଡ଼ି ପୁଅ ଝିଅ, କେବେ ବା ଏକା ଏକା ପୁଅଝିଅ-ହାତରେ

ସେଲ୍‌ଫୋନ୍ । କିଏ କାହାକୁ ଅନେଇବାକୁ ବେଳ ନାହିଁ । ଏକୁଟିଆ ଥିଲେ ବି ସେଲ୍‌ଫୋନ୍‌ରେ ଆପଣାର ଲୋକ ସହିତ ଆଳାପ ।

ମୋ ରହିବା ସ୍ଥାନଠାରୁ ଦୁଇ କିଲୋମିଟର ଭିତରେ ୟୁନିଭର୍ ଲାଇବ୍ରେରୀ, କମ୍ପ୍ୟୁଟର ସେଣ୍ଟର । ଜିମ୍ନାସିୟମ, ସୁଇମିଂପୁଲ, ଷ୍ଟଡିସେଣ୍ଟର୍, ଅଡ଼ିଟୋରିୟମ୍ ଇନଡ଼ୋର, ଆଉଟ୍‌ଡୋର୍ ଖେଳ ପାଇଁ ବ୍ୟବସ୍ଥା-ବିରାଟ୍ ଲାଇବ୍ରେରୀ, ପିଲାଙ୍କ ପାଇଁ ଅଲଗା ସେକ୍‌ସନ୍ । ବହି ପାଇଁ ଲୋକଙ୍କର କାର୍ଡ ଥାଏ । କାର୍ଡରେ ନିର୍ଦ୍ଦିଷ୍ଟ ସମୟ ପାଇଁ ନିର୍ଦ୍ଦିଷ୍ଟ ସଂଖ୍ୟକ ବହି ନେବା ବ୍ୟବସ୍ଥା ଥାଏ । ସେଇଠି ବସି ପଢ଼ିବାକୁ ହୁଏ ମଧ୍ୟ । ରଂଜନ ମତେ ମଝିରେ ମଝିରେ ନେଇ ଯାଆନ୍ତି । ମୁଁ ପ୍ରାୟ କବିତା ସଂକଳନ ଆଣେ-ରବର୍ଟ ହସ୍, ଜୋସେଫ୍ ବ୍ରଡ୍‌ସ୍କି, ଜିମ୍‌ବର୍ସ୍କା ଆଦି କେତେକ କବିଙ୍କ ପୁସ୍ତକ ମୁଁ ଆଣିଥାଏ । ପେପୁ ମଧ୍ୟ ପଢ଼ିବାରେ ଓସ୍ତାଦ୍ । ରଂଜନ ପଢ଼ିବା ପ୍ରିୟ, ମାତ୍ର ତାଙ୍କୁ ସମୟ ମିଳେନା-ବହୁ କାମରେ ସେ ବ୍ୟସ୍ତ । କନି କିଛି କିଛି ବହି ପଢ଼ିବାକୁ ସମୟ ପାଏ । କ୍ୟାଂପସ ନିରାପଦ-ରାତିକ୍ଲାସ୍ ସରେ ଦଶଟାରେ । କନି କ୍ଲାସ୍ ସାରି ପ୍ରାୟ ଚାଲିକି ଆସେ-ସବୁ ଲୋକ ଆସନ୍ତି । ସେ ସଂଧ୍ୟାରେ (Evening section) ପଢ଼େ, କାରଣ ତା' ପୁଅକୁ ତିନିଟା ବେଳେ ସ୍କୁଲ୍‌ରୁ ଆଣିବାକୁ ପଡ଼େ-ଅଳ୍ପବାଟ ଚାଲିଯାଇ ହେବ, କିନ୍ତୁ କ୍ୟାମ୍ପସ୍ ଭିତରେ ପନ୍ଦର ମିନିଟ୍‌କୁ, ଦଶ ମିନିଟ୍‌କୁ ଭ୍ୟାନ୍ ବା ବସ୍ ଚାଲୁଥାଏ । ତମେ ନ ଚାଲି, ଯିବା ଆସିବା କରିପାରିବ ମାଗଣାରେ । ରଂଜନ୍ ଫେରନ୍ତି ଛଅଟାରେ । କନିର କ୍ଲାସ୍ ଆରମ୍ଭ ଛଅଟା ତିରିଶରେ । ବାରବର୍ଷଠୁ କମ୍ ବୟସର ପିଲାଙ୍କୁ ଘରେ ଏକା ଛାଡ଼ି କେହିଯାଇ ପାରିବେ ନାହିଁ । ପୋଲିସ୍ ଜାଣିଲେ ବିପଦ । ଆଇନ୍ କାନୁନ୍ ଏପରି କଡ଼ାକଡି ଯେ ରାଷ୍ଟ୍ରପତି ବୁଶ୍‌ଙ୍କ ବଡ଼ ଭାଇଙ୍କ ଝିଅ ଡ୍ରଗ୍ ଟ୍ରାଫିକିଂ ପାଇଁ ଜେଲ୍‌ରେ ଥାଏ । ତେଣୁ ସମସ୍ତେ ଆଇନ ମାନନ୍ତି । ପେପୁ ବେବି ସିଟିଂ ନାଁ କହିଲେ ରୁଷେ; କାନ୍ଦେ, ସେଠିକି ସେ ଯିବ ନାହିଁ- ବେବିସିଟିଂ ପାଇଁ ଟଙ୍କାବି ବେଶ୍ ଦେବାକୁ ପଡ଼େ । ତେଣୁ ବାପ ମାଆ ତାକୁ ପାଳିକରି ଜଗନ୍ତି । ସେ ପୁଣି ଜିମ୍ନାସିୟମ ଯିବ, ସ୍ୱିମିଂ କରିବାକୁ ଯିବ-ବାଡ୍‌ମିଣ୍ଟନ୍ ଖେଳିବ ।

କ୍ୟାଂପସ୍ ମଝିରେ ଗୋଟେ ବିରାଟ ପଡ଼ିଆ -ଚାରିକଡ଼ରେ ରାସ୍ତା । ସେଠାରେ ପ୍ରତି ଗୁରୁବାର ସଂଧ୍ୟାରେ ପ୍ରସିଦ୍ଧ ସିନେମା ପ୍ରଦର୍ଶିତ ହୁଏ । ବହୁତ ଛାତ୍ରଛାତ୍ରୀ ସିନେମା ଦେଖନ୍ତି । କେହି କେହି ପୁଅଝିଅ ଚଦର ଘୋଡ଼ିହେଇ ପଡ଼ିଆ ଭିତରେ ଶୁଅନ୍ତି-ଛାତ୍ର ଛାତ୍ରୀ ଦେଖନ୍ତି, ଅଧିକାଂଶ ଯୋଡି ଯୋଡ଼ି । ନ ହେଲେ ବା ପ୍ରାକୃତିକ ଗାଲିଚା ଉପରେ

ଦଳେ ଏକାଠି ବସନ୍ତି-ଚାଦର ତଳେ ପାରି, କେହି ବା ଘାସ ଉପରେ ବସିକି କିଏବା ଶୋଇକି କିଏବା ଫୋଲଡିଂ ଚେୟାର ପକାଇ ବସନ୍ତି । ପାଖରେ ମିଳେ ସ୍ୱାଦିଷ୍ଟ ପପ୍‌କର୍ଣ୍ଣ-ଗରମ୍ ଗରମ୍-ମାଗଣାରେ । କନି କହେ, ଏସବୁ ପାଇଁ ସେମାନେ, ଛାତ୍ରଛାତ୍ରୀ ମାନେ ଟଙ୍କା ଦେଇଥାନ୍ତି । ଆମର ଲାଇବ୍ରେରୀ ଫି' ଭଳି । ମୋ ପାଇଁ ଫୋଲ୍ଡିଂ ଚେୟାର କିଣାହୋଇ ଆସିଲା-ମୁଁ ଅବଶ୍ୟ ତଳେ ଚଦର ପାରି ବସିବାକୁ ରାଜିଥିଲି-କିନ୍ତୁ କନିକୁ ଭଲ ଲାଗିଲାନି । ମୁଁ ଯେ ପିଲାଦିନେ ଗାଁରେ ତଳେ ବସି ନାଟ, ପାଲା ଦେଖେ-ସେଠାରେ ତାର ପୁନରାବୃତ୍ତି ହେବ ବୋଲି ମୋତେ ଖୁସି ଲାଗୁଥିଲା । କିନ୍ତୁ କନିର ମାଆ, କ୍ୟାଂପସ୍‌ରେ ତଳେ ବସିବ, କେଜାଣି କାହିଁକି ତାକୁ ଭଲ ଲାଗିଲା ନାହିଁ । ରାତି ଆକାଶରେ ବରାବର ତିନି ଚାରିଟି ପ୍ଲେନ୍ ଯାଆସ କରୁଥାଏ-ନିକଟରେ ଡଲାସ୍ ଫୋର୍ଟଓ୍ୱର୍ଥ ଏୟାରପୋର୍ଟ । ଯେତେ ଛାତ୍ର ଛାତ୍ରୀ ଥିଲେ ବି ଚୁପ୍ ଚାପ୍-ଅବଶ୍ୟ ଯୋଡ଼ି ଯୋଡ଼ି କୋଳାକୋଳି ହୋଇଥାନ୍ତି । ଥରେ, ଲାଇବ୍ରେରୀରେ, ପାଂଚ ମହଲାରେ, ଗୋଟେ ଗୋରା ସବଳ ଯୁବକର କୋଳରେ ଗୋଟେ ଅଛଉଛା, ତନୁପାତଳୀ କୋରିଆନ୍ ଝିଅ ବସିଥିଲା ଓ ସେମାନେ ନାନାଭଙ୍ଗୀ କରୁଥିଲେ । ଯଦିଓ ଚାରିପାଖରେ କେହି କେହି ଛାତ୍ରଛାତ୍ରୀ ପଢୁଥିଲେ । ରାତିରେ ବା ଦିନରେ ଚଦର ଘୋଡ଼ିହୋଇ ପୁରୁଷ ସ୍ତ୍ରୀ ପଡ଼ିଆ ଭିତରେ ଏକତ୍ର ଶୋଇଥିବା ଦେଖାଯାଏ । କିନ୍ତୁ କେହି ପୁଅ ଯଦି ଝିଅଟିର ବିନାନୁମତିରେ ତା' କାନ୍ଧରେ ହାତ ରଖିଦିଏ ଓ ଝିଅଟି ଆପତ୍ତି କରେ, ପୁଅ ଜେଲ୍‌କୁ ଯାଏ । ମୁଁ ସେଇ ଓପନ୍‌ଏୟାର୍‌ରେ ଦୁଇଟି ଖୁବ୍ ଭଲ ବିଶ୍ୱପ୍ରସିଦ୍ଧ ସିନେମା ଦେଖିଥିଲି । ନହେଲେ ଆମେ ପ୍ରାୟ ସିନେମା ଅଧା ହୋଇଥାଏ; ଘରକୁ ଫେରୁ -ମାଆ ଝିଅ ଗପ କରିବା ହେଲା ମୁଖ୍ୟ । ମତେ ଏଠି ଦେଖିବ କିଏ, ଦେଖିଲେ ଚିହ୍ନୁଚି ବି କିଏ ! ଏଠିତ ମଣିଷ ପରସ୍ପରକୁ ଦେଖିବାକୁ ବେଳ ପାଆନ୍ତି ନି । ଘରର ଯାବତୀୟ କାମଠାରୁ ପାଠପଢ଼ା ବା ଚାକିରୀର ନିଷ୍ଠାପରତା ମଣିଷକୁ ଅବସର ଦିଏନା ।

ମୁଁ ଥାଏ ବୋଲି ମୋ ଝିଅ କ୍ୱାଇଁ ଟିକେ ରିହାତି ପାଆନ୍ତି ରନ୍ଧାରୁ । ମୋ ଝିଅର ଆପତ୍ତି, 'ତୁ'ତ ଘରେ ରାନ୍ଧୁଣୀ ରଖିଥାଉ, ଏଠି ରାନ୍ଧିପାରିବୁ ନାହିଁ, ତୋତେ କଷ୍ଟ ହବ ।' ମୁଁ ମାନେ ନାହିଁ । କରିବି ବା କଣ ? ପ୍ରାୟତଃ ଠିକ୍ ସମୟରେ ଦିନବେଳା ଭାତ ନଖାଇଲେ ମୋର ଚଳିବନି -ତାଙ୍କର ରାତିରନ୍ଧା, ନ ହେଲେ ବା କିଣାରୁଟି, ପିଜା, ବର୍ଗର୍, ଟାକୋ ଖାଇଦେଲେ ଚଳେ । ରନ୍ଧାଟା ମୋର-ରାନ୍ଧିବା ସେଠାରେ ସୁବିଧା ଜନକ, ଚୁଲୀ ଖୁବ୍ ତେଜୀୟାନ୍, ରନ୍ଧାପାତ୍ର ବି ଭଲ । ପାଇପ୍‌ରେ ଗରମ୍ ପାଣି, ଥଣ୍ଡାପାଣି । ମୁଁ କ୍ରମଶଃ

ଛୁରୀରେ ପରିବା କାଟିବା ଶିଖିଗଲି । ଲାଗିଲା ପନିକି ଠାରୁ ଛୁରୀ ସତରେ ଖୁବ୍ ସହଜ । ମୋ ରନ୍ଧା ମୋ ଜ୍ୱାଇଁଙ୍କୁ ବହୁତ ଭଲ ଲାଗେ । ସେ କହନ୍ତି 'ବୋଉ ଫେରିଗଲେ, ଆମେ ଆଉ ମାସେ ଦି' ମାସ ପାଟିକୁ ଖାଦ୍ୟ ନେଇ ପାରିବୁ ନାହିଁ ।' ଝିଅ ଜ୍ୱାଇଁ ଭଲ ପାଇବା ପିଠାପଣା ବି କିଛି କଲି । ଅସଲ କଥା, ସେଠାରେ ମିଳୁଥିବା ନାନାଦି ଜିନିଷ କିନି ହେରିକା ଖାଇ ଦିଅନ୍ତି । ତାଙ୍କର ଚଳି ଯାଆନ୍ତା-ବର୍ଗର ପିଜ୍ଜା, ଟାକୋ, ବ୍ରେଡ୍, ନଗେଟ୍ ଇତ୍ୟାଦି । କିନ୍ତୁ ମୋ ନିଜ ପାଇଁ ରନ୍ଧାଟା ମୋତେ ଆରେଇ ଗଲା । ସକାଳବେଳା ରାନ୍ଧେ । ରାତିକୁ ଯାହା ବଳେ, ଆଉ କିଛି କିଣା ଜିନିଷ ମିଶାଇ ଖାଇଦେଉ ।

ପ୍ରତିଦିନ ସଂଧ୍ୟାରେ ମୁଁ କ୍ୟାଂପସ୍‌ରେ ବୁଲେ- ଇଭିନିଂ ୱାକ୍ । କେବେ ଝିଅ ଯାଏ, ନ ହେଲେ ମୁଁ ଏକା । ନାନା ବୃକ୍ଷଲତା, ପକ୍ଷୀ ଓ ବିଶ୍ୱର ସବୁ ଦେଶର ଲୋକ ଦେଖିବାକୁ ମିଳନ୍ତି-ଦିନେ ଦିନେ ଆରବ ଦେଶ ଝିଅ ଓଢ଼ଣା ପକାଇ ପୂରା ଘୋଡ଼େଇ ହୋଇ ଆସନ୍ତି ତ ଦିନେଦିନେ କ୍ଷୁଦ୍ରତମ ପୋଷାକରେ ବି ଆସନ୍ତି । ଆକାଶରେ ବିଭିନ୍ନ ଆକୃତିର ପ୍ଲେନ୍, ତା' ସହ ଜହ୍ନ । ପାଖରେ ଗୋଟିଏ ବଗିଚା ଥାଏ-ପୁରୁଣା ଅଫିସ୍‌ଗୃହ ଓ ହତା, ତା' ଭିତରେ ବଡ଼ ପିଅର (ନାସ୍‌ପାତି) ଗଛଥାଏ ଅଉଲ ଅଉଲ ସବୁଜ ହଳଦି ରଂଗର ନାସ୍‌ପାତି-କେତେଥର ତୋଳିଥିବି-ଝିଅ କହେ, 'ହୁସିଆର୍-ପୋଲିସ୍ ହାବୁଡ଼ରେ ଯେମିତି ନପଡୁ ।' ପୋଲିସ୍ ଗାଡ଼ି ବରାବର୍ ପଇଁତରା ମାରେ । ମୁଁ କିନ୍ତୁ କେତୋଟି ପିଅର ତୋଳେ-ହାଲୁକା କାଠପଟା କେତୋଟି ତଳେ ପଡ଼ିଥାଏ-ମୁଁ ସେଥିରେ ପିଟିଲେ ସେଗୁଡ଼ିକ ଝଡ଼ିପଡେ । ଅଥଚ, ମୁଁ ନ ତୋଳିଲେ ସେଗୁଡିକ ତଳେ ପଡ଼ି ପଚି ଯାଆନ୍ତି ସିନା, ସେ ଆଡ଼େ ଚାହିଁବାକୁ କାହାରିକୁ ବେଳ ନଥାଏ । ଭାରତରେ ଓ ଆମେରିକାର ବିଭିନ୍ନ ସ୍ଥାନରେ ଆର୍ଲିଂଟନ୍‌ରେ ମଧ୍ୟ ମୁଁ କେତେ ନାସ୍‌ପାତି ଖାଇଛି । ଗୋଟାକୁ ପଚାଶ ଟଙ୍କାରେ କିଣି । କିନ୍ତୁ ଗଛରୁ ତୋଳି ଖାଇଥିବା ସେଇ ନାସ୍‌ପାତିର ସ୍ୱାଦର ଶତକଡ଼ା ପଚାଶଭାଗ ସ୍ୱାଦ ବି ମୁଁ ଅନ୍ୟ କୋଉଠି ପାଇ ନାହିଁ । ଯେତେବେଳେ ପାତଳ ଅନ୍ଧକାରରେ ସେ ଗଛରୁ ମୁଁ ଫଳଟେ ତୋଳେ, କି ଅଭାବନୀୟ ଆନନ୍ଦରେ କୁରୁଳି ଉଠେ ! ମୁଁ ପାଲଟି ଯାଏ ମାଇନର ସ୍କୁଲର ଛାତ୍ରୀ-ସତେକି ବାଡ଼ କଡ଼ରୁ କଣ୍ଟେଇ କୋଳି ତୋଳୁଛି ଆଂଗୁଠି ଟିପରେ ଠିଆ ହୋଇ ।

ପ୍ରତି ସପ୍ତାହରେ ପ୍ରାୟ ଦୁଇ ଥର ମୁଁ ମାର୍କେଟ୍ ଯାଏ । ଗ୍ରସେରି ରଂଜନ ଆଣନ୍ତି । ପରିବା, ମାଛ, ମାଂସ ପାଇଁ ଆମେ ଚାଇନା ଦୋକାନକୁ ଯାଉ । ସାମ୍ନାରେ ଥାଏ କୋରିଆନ୍ -ସପ୍ । ଚାଇନିଜ୍ ସପ୍‌ରେ ଭାରତୀୟ ଖାଦ୍ୟ ସହିତ ଅନ୍ୟ କେତେକ ପ୍ରକାର

ଖାଦ୍ୟ ମିଳେ । ନିଜେ ଠେଲାଗାଡ଼ି ଧରି ଯିବାକୁ ହୁଏ । ସବୁ ଭାରତୀୟ ପରିବା ସାରୁ, କଖାରୁଠାରୁ ସୋରିଷଶାଗ, କୋବିଶାଗ ପର୍ଯ୍ୟନ୍ତ ମିଳେ-ଘିକୁଆଁରୀ ଡାଳ ଗୁଡ଼ିକ ବି । ଆହୁରି ମୁଁ ଜାଣି ନଥିବା କେତେ ଶାକସବ୍‌ଜି ଥାଏ, ଯାହାକୁ ଲୋକେ ଖାଆନ୍ତି । ଆମେ କିନ୍ତୁ ଖାଉନା । ଆମିଷ ବିଭାଗ ସବା ଶେଷରେ -ପାଖକୁ ଗଲେ ଗନ୍ଧ ବି ହୁଏ କିନ୍ତୁ ଏଠାଭଳି ଉତ୍କଟ ଗନ୍ଧ ନୁହେଁ । ବିରାଟ୍ ଏରିଆରେ ଗୋ ମାଂସ, ଘୁଷୁରି ମାଂସ ଥାଏ । ଛେଳି ମାଂସ ସବୁଠି ମିଳେ ନାହିଁ । ସେଇ ଆର୍ଲିଂଟନ୍ ଚାଇନିଜ୍ ସପ୍‌ରେ ମିଳେନା । ନଚେତ୍ କୁକୁଡା ମାଂସ, କଙ୍କଡା, ଚୁଂଗୁଡ଼ି, ମାଗୁର, ଇଲିଶି, ସାଲମନ୍ (ସବୁଠୁଁ ଦାମୀ, ଅଥଚ ଆମେ ଖାଇଥିଲୁ, ଖାସ୍ କିଛି ଭଲ ଲାଗିଲା ନାହିଁ ) ଆଉ ବଫଲୋ (ରୋହି, ଭାକୁଡ଼) ଆଉ ଗୋଟିଏ ସ୍ୱାଦିଷ୍ଟ ମାଛ ଥେଲାପିଆ । ସବୁ କଟା ଧୁଆ ହୋଇ ଫ୍ରିଜ୍‌ଡ୍ ହୋଇଥାଏ । ତା' ଭିତରେ ଥାଏ ଛୋଟ ଚୋପାଛଡ଼ା ତାଳସଜ ଆକାରର ଓ ରଂଗର ଶିଶୁ-ଅକ୍ଟୋପସ୍ ଗୁଡିକ -ଟ୍ରେରେ ଭିର୍ତ୍ତି ହୋଇ । ସେଗୁଡିକ ଚୀନା ଓ କୋରିଆନ୍ ମାନେ ଖାଆନ୍ତି । ଶୁଖୁଆ ବି ଥାଏ । ସେଠାରେ ଶାଗ ପାଉଣ୍ଡ ଯେତିକି ଦାମ୍ ବଫଲୋ ମାଛ ପାଉଣ୍ଡ ସେତିକି ଦାମ୍ । ଦୁଧ ବୋତେଲେ ଓ କୁଲଡ୍ରିଙ୍କ୍ ବୋତେଲେ, ପାଣି ବୋତଲେ ଏକାଦାମ୍ । ବାସୁମତୀ ଜାଫ୍ରାନ୍ ଚାଉଳ ଆମେ କିଣୁ-ବଡ ବଡ କ୍ୟାନ୍‌ରେ ଦୁଧ-ଫ୍ରିଜ୍‌ରେ ଭରିବାକୁ ହେବ । ଦୁଧ ଏପରି ପ୍ରୋସେସ୍ଡ୍ ହୋଇଥାଏ ଯେ ଆଉ ଫୁଟାଇବା ଦରକାର ନାହିଁ-ସିଧା ଖିଆଯାଏ । ମୁଁ ନୂଆକରି ଦେଖୁଥିବା କେତେ ପ୍ରକାର ପରିବା ଓ ଫଳଥାଏ । ଚେରୀ, କଦଳୀ, ଆପଲ, ପିଅର, କମଳା, ଅଙ୍ଗୁର, ରସ୍ପବେରୀ ଆଦି ଫଳ ପ୍ରଚୁର । ଅନ୍ୟସବୁ ଜିନିଷଠାରୁ ଖାଦ୍ୟଟି ଶସ୍ତା ଓ ସେଥିରେ ପ୍ରଚୁର ଖାଦ୍ୟମୂଲ୍ୟ ଓ ଖାଦ୍ୟସାର ନିହିତ ଥାଏ । ଯାହା ଲୋକଙ୍କୁ ଅଦ୍‌ଭୁତ ଭାବେ ସ୍ଥୂଳକାୟ କରି ପକାଏ ।

ରାନ୍ଧିଲା ବେଳର ମଜା ଘଟଣାଟିଏ । ପ୍ରତି ଘରେ ଗୋଟିଏ Fire alarm ଲାଗିଥାଏ । ପ୍ରତିଘର ଛାତ ଉପରେ ଘୁରୁଥାଏ ଏୟାର ରେଗୁଲେଟର, ତାଜା ପବନ ଭିତରକୁ ଛାଡ଼େ । ମୁଁ ଥରେ ପରଟା କରୁଥିଲି-ବାଦାମୀ ରଂଗର ଭାଜିଲା ବେଳକୁ ଧୂଆଁ ଉଠେ । ମେସିନ୍ ଲାଗିଛି-ଧୂଆଁକୁ ବାହାରେ ଛାଡ଼ିବ । ମୁଁ ଆଉ ମେସିନ୍‌ଟି ପୂରା ଖୋଲି ନାହିଁ । Fire alarm ବାଜିଲା-ଯୋଗକୁ କନି ଘରେ ଥିଲା- ସାଂଗେ ସାଂଗେ ଭେଣ୍ଟିଲେଟ୍‌ର ଖୋଲିଦେଲା । ତଥାପି ମାତ୍ର ପାଂଚ ମିନିଟ୍ ଭିତରେ ଦୁଇଜଣ ଆମେରିକାନ୍ ଫାୟାର୍ ବ୍ରିଗେଡ୍ ଲୋକ ହାଜର୍ । ସେମାନଙ୍କୁ ସେମାନଙ୍କ ଅଫିସରେ Alarm, ହେଲା- Flat No. ଜଣା ପଡ଼ିଲା ଓ ସେମାନେ ତୁରନ୍ତ ଆସିଲେ । ବୁଝାଇବାକୁ ପଡ଼ିଲା, Indian

Cooking etc, sorry' ଇତ୍ୟାଦି । ଆଉ ଥରେ ଝିଅ ଘରେ ନଥିଲା ବେଳେ, କ'ଣ ଗୋଟେ ତରକାରୀ କଷୁଥିଲି- Alarm ବାଜିଲା, ସେ ଆଲାର୍ମ ବାଜିଲେ ସହଜେ ବନ୍ଦହୁଏ ନା । ପହଞ୍ଚିଲେ ସେଇ ଫାୟାର୍ ବ୍ରିଗେଡ଼-ମୁଁ ଏକା । ତାଙ୍କୁ ବୁଝାଇଲି । ସେମାନେ କହିଲେ, ଆପଣଙ୍କ ପାସ୍‌ପୋର୍ଟ ଦିଅନ୍ତୁ । ମୁଁ ନାସ୍ତିକଲି । ଆଉ କେବେ ଏପରି ହେବନାହିଁ ବୋଲି କହିଲି । ସେମାନେ ମୋତେ ଫୋନ୍ ନମ୍ବର ଦେଲେ ଓ କହିଲେ 'ଯଦି ଆଲାର୍ମ୍ ବାଜେ, ଆପଣ ଫୋନ୍ କରିଦେବେ-ଆମେ ଜାଣିବୁ, ଅଗ୍ନିକାଣ୍ଡ ଘଟିନାହିଁ ।' ଆଉଥରେ ବି ଏମିତି ଘଟିଥିଲା । ଦେଢ଼ମାସ ରୋଷେଇ କାମ (ଗୋଟେବେଳା) ଭିତରେ ତିନିଥର Fire brigade ସଂଗେ ମୁକାବିଲା । ଏଠି ମନେ ପଡ଼ିଲେ ସେ ଦେଶର ସୁରକ୍ଷା ବ୍ୟବସ୍ଥା ସଂପର୍କରେ ଆଶ୍ଚର୍ଯ୍ୟ ଲାଗେ ।

ମୋ ଝିଅ ଓ ଜ୍ୱାଇଁଙ୍କର ସାଂଗମାନେ (ଆର୍ଲିଂଟନ୍ ଓ ଡଲାସ୍‌ରେ ଥିବା) ବହୁବାର ନିମନ୍ତ୍ରଣ କରନ୍ତି-ପ୍ରାୟ ଶନିବାର ନ ହେଲେ ରବିବାର । ସ୍ୱାମୀ ସ୍ତ୍ରୀ ମିଶି ରାନ୍ଧନ୍ତି-ନାନା ପ୍ରକାରର ରାନ୍ଧଣା । ଅନ୍ୟଦିନେ ରାନ୍ଧି ପାରନ୍ତି ନାହିଁ, ସେଇ ଖାଦ୍ୟକୁ ତିନି ଚାରି ଦିନ ଧରି ଖାଉଥାନ୍ତି । ରମଣୀ(ତେଲୁଗୁ), ଜୋନାଲୀ(ଆସାମୀ), ଭିମି (ୟୁ.ପି.ର) ସବିତା(ଦିଲ୍ଲୀ), ଏଲିଜାବେଥ୍ (ଆମେରିକୀୟ) ଏବଂ ମୋର ଜଣେ ନଣନ୍ଦ କଲ୍ୟାଣୀ । ସମସ୍ତେ ଏକାଧିକବାର ଖାଇବାକୁ ଡାକିଛନ୍ତି ।

ରଂଜନଙ୍କ ବନ୍ଧୁ ମୁକ୍ତିକାନ୍ତ, ମାମି, ଅନାଦି, ମିନି-କେତେ ଆଦର ଶ୍ରଦ୍ଧା ସେମାନଙ୍କଠାରୁ ପାଇଛି । ଅବଶ୍ୟ କନି ଓ ରଂଜନ ଅତି ସ୍ନେହୀ, ସେମାନେ ବି ନିଜ ଛୋଟ ଘରଟିରେ ଛୁଟି ଦିନରେ ସାଂଗ ସାଥୀଙ୍କୁ ଆପ୍ୟାୟିତ କରନ୍ତି-ଏବର୍ଷ, ମୁଁ ଗଲାବେଳେ ବହୁ ଭାରତୀୟ ଛାତ୍ର ଛାତ୍ରୀ ଆର୍ଲିଂଟନ୍‌ରେ ପ୍ରବେଶ କଲେ । ଓଡ଼ିଆ କିଛି, ବିଶେଷ କରି କଟକ, ଭୁବନେଶ୍ୱରର । ସେମାନେ ମୋ ଝିଅ, ଜ୍ୱାଇଁଙ୍କର ଉପଦେଶ ପାଇଁ ବରାବର ଆମ ଘରକୁ ଆସନ୍ତି । ସବୁଥର ମୁଁ ଅପ୍ୟାୟିତ କରେ । ଦୁଇ ଥର ଡିନର୍ ରାନ୍ଧି ସେମାନଙ୍କୁ ଖାଇବାକୁ ଦେଇଥିଲୁ । ସେମାନେ ପରମତୃପ୍ତ ହୋଇଥିଲେ ।

ତେବେ, ପାଠପଢ଼ାରେ ମୋ ଜ୍ୱାଇଁଠାରୁ ସାହାଯ୍ୟ ନେବାକୁ ଆସନ୍ତି ଜଣେ ଷାଠିଏ ବର୍ଷର ଛାତ୍ର । କେବେ କେବେ ଜ୍ୱାଇଁଙ୍କୁ ଡାକି ତାଙ୍କ ଘରକୁ ନେଇଯାଆନ୍ତି । ସେ ଘରେ ଏକା ରହନ୍ତି । ଆମ କଲ୍ୟାଣୀଙ୍କ ସ୍ୱାମୀ ଡଃ ରଂଗାଧର ଦାଶ ଜଣେ ଖୁବ୍ ମେଧାବୀ ବ୍ୟକ୍ତି । ସେଠାରେ, ପ୍ରାୟ ପଚାଶରୁ ଷାଠିଏ ବର୍ଷ ମଧ୍ୟରେ ସେ ଚାରି ପାଂଚଟି ଡିଗ୍ରୀ ହାସଲ କରିଛନ୍ତି । ସେ ମୂଳତଃ ଗଣିତଜ୍ଞ, ମାତ୍ର ଗଣିତରେ ପି.ଏଇଚ୍.ଡି ସହିତ ମେକାନିକାଲ୍

ଇଂଜିନିୟରିଂ ଡିଗ୍ରୀ, କମ୍ପୁଟର ଇଂଜିନିୟରିଂ ଡ୍ରିଗୀ, ସ୍ପେସ୍ ଇଂଜିନିୟରିଂ ଡିଗ୍ରୀ ହାସଲ କରିଛନ୍ତି । ତାଙ୍କ ପାଠପଢ଼ାର ସ୍ପୃହା ଓ ଅଧ୍ୟବସାୟ ଜାଣିଲେ ବିସ୍ମିତ ହେବାକୁ ପଡ଼େ । ସେ ବର୍ତ୍ତମାନ୍ ଆର୍ଲିଂଟନ୍ ୟୁନିଭ୍‌ରେ ପ୍ରଫେସର୍ । ସୁନ୍ଦର ଗୋଟେ ଘର । ପୁଅଟି ଇଂଜିନିୟରିଂ ପାସ୍ କଲା । ବଡ ଝିଅ ବିବାହିତା ଓ ଗୋଟେ ବଡ଼ ବିଜିନେସ୍ କରେ, ସାନ ଝିଅ ଛାତ୍ରୀ । ବଗିଚାରେ, ତାଙ୍କ ଗଛରୁ ନେକ୍‌ଟାରିନ୍ ତୋଳିଲୁ-ମିଠାଫଳ, ସାଲାଡ୍ କଲେ ଖୁବ୍ ଭଲ ଲାଗେ । କଲ୍ୟାଣୀ ଓ ଡଃ ଦାଶ ଇଂଲଣ୍ଡ, କାନାଡା, ଆମେରିକା ଆଦିସ୍ଥାନରେ କର୍ମମୟ ଦୀର୍ଘବର୍ଷ ଅତିବାହିତ କରିଛନ୍ତି । ଅଥଚ ଓଡ଼ିଆ ଚଳଣି ତଥାପି ତା'ରି ଭିତରେ ସୁରକ୍ଷିତ । ବାହାରେ ଆମେରିକା ସହିତ ଖାପ୍ ଖୁଆଇବାରେ ବି ତ୍ରୁଟି ନାହିଁ ସେ ପରିବାରର ।

ତଥାପି ଏ ସବୁ ମଧ୍ୟରେ କ୍ୟାଂପସ୍ ଜୀବନ ତା'ର ଶୃଂଖଳା ମୋତେ ଆଚମ୍ବିତ କରେ । କୌଣସି କ୍ୟାମ୍ପସ ଅଧିବାସୀ ଯେମିତି କୌଣସି ରକମର ଅସୁବିଧା ଭୋଗ ନକରେ, ସେଥିପାଇଁ କ୍ୟାମ୍ପସ୍ ପ୍ରଶାସନ ଖୁବ୍ ତତ୍ପର । ଏଠାରେ ତାର ଗୋଟିଏ ନମୁନା ଦେଉଛି-ଦିନାକେତେ ରାତି ବାରଟାରେ ପୁଣି ଦିନ ଦୁଇଟାରେ ତଳମହଲାରୁ ଭାଓଲିନର ସୁର ଭାସିଆସିଲା । ଟୁଂ ଟାଂ କରୁଣ ରାଗିଣୀ-ଘଣ୍ଟା ଘଣ୍ଟା ଧରି । ରଂଜନ ଦିନସାରାର ଖଟଣି ପରେ ଏଗାରଟା ବେଳକୁ ଶୁଅନ୍ତି । ତାଙ୍କ କୋଠରୀକୁ ସେ ସ୍ୱର ବେଶି ସ୍ପଷ୍ଟ ଶୁଭେ । ଏପରି ପ୍ରାୟ ସପ୍ତାହେ ଖଣ୍ଡେ ଚାଲିଲାରୁ ଦିନେ କନି ରଂଜନ ଠିକ୍ କଲେ ଅଭିଯୋଗ କରିବେ । କନି କମ୍ପୁଟର୍‌ରେ ଚିଠିଟେ ଲେଖି କ୍ୟାମ୍ପସ୍‌ର ଗୋଟେ ଅଫିସ୍‌ରୁମକୁ ଗଲା । ମୁଁ ତା ସାଥିରେ ଯାଇଥିଲି । ପ୍ରାୟ ସଂଧ୍ୟାରେ ମୁଁ ପ୍ରତିଦିନ ଚାଲିବାକୁ ଯାଏ । କେବେ କେବେ ସାଥୀରେ କନି ଯାଏ । ଆମେ ସେଇ ରୁମ୍‌ରେ ଜଣେ ଭଦ୍ରଲୋକଙ୍କୁ ଚିଠିଟି ଦେଲୁ । ସେ ଶୃଙ୍ଖଳା ଦାୟିତ୍ୱରେ ଥିଲେ । ପରଦିନ ଭାଓଲିନ୍ ସ୍ୱର ରାତିରେ ପୁରାବନ୍ଦ ପୁଣି ଅଫିସ୍‌ରୁ ଉତ୍ତର ଆସିଲା ଆମେ ଦୁଃଖିତ, ଆପଣ ହଇରାଣ ହେଲେ, ଆଉ ଏଣିକି ସେ ବ୍ୟାଘାତ ଘଟିବ ନାହିଁ ।



# ଭାରତୀୟତାର ବାସ୍ନା-ମେଲିସା, ଥେରେସା ଏବଂ ଏଲ୍

ପେପୁ ସାଢ଼େ ଚାରି ବର୍ଷର ହୋଇଥିଲା, ଆମେରିକା ଆସିଲା । ଓଡ଼ିଶାର ବିଶେଷ ସ୍ମୃତି ମନରେ ରଖି ପାରିନାହିଁ । ସେଠିକା (ଆମେରିକାର) ସ୍ମୃତିରେ ବାପା ମା' ଛଡ଼ା ଆଉ କେହି ନାହିଁ । ଅଜା ଆଇ, ବୁଢ଼ାବାପା, ବୁଢ଼ୀମା ସେଠି ଅଦରକାରୀ । ମାତ୍ର କଥା ଛଳରେ କନି କହିଲା, 'ଆମେମାନେ ଯାହା ଯେମିତି ଭାବୁ, ଏଠାରେ ସବୁ ସେପରି ନୁହଁ । ଏଠି ବି ପରିବାର ଅଛନ୍ତି, ଯାହାଙ୍କ ଘରକୁ ବର୍ଷକେ ଥରେ ଦୁଇ ଥର ତାଙ୍କ ଅଜା, ଆଇ, ବୁଢ଼ାବାପା, ବୁଢ଼ୀମା' ଆସନ୍ତି । ପିଲାଙ୍କ ଛୁଟି ଦିନରେ ମାସେ ମାସେ ବି ରହନ୍ତି । ସେମାନଙ୍କ ସଂପର୍କ ବି ଖୁବ୍ ଭଲ । ବିଶ୍ୱାସ କର, ଦାଂପତ୍ୟ ଜୀବନର ସଂପର୍କ ବି ଆମଦେଶ ଭଳି ।' ମୁଁ ବିଶ୍ୱାସ ଗଲି ନାହିଁ । ସେ କହିଲା, 'ହଉ ସେମାନେ କେବେ ନିମନ୍ତ୍ରଣ କରିବେ ଯେ, ଦେଖିବୁ ।'

'ମତେ ନିମନ୍ତ୍ରଣ ? ମୁଁ ତାଙ୍କର କିଏ କି ?' ନାହିଁ, ସେମାନଙ୍କର ପୁଅ ପେପୁର ଭଲ ସାଙ୍ଗ । ତାଙ୍କର ଯିବା ଆସିବା ଅଛି । ଅସିତାର ଜଣେ ଆମେରିକାନ୍ ଲେଡ଼ି ଫ୍ରେଣ୍ଡ ଅଛି । ସେ ବାନ୍ଧବୀଟି ଡିଭୋର୍ସି । ଆର୍ଲିଂଟନ୍‌ଠାରୁ ଦୂରରେ, ପ୍ରାୟ ଅଧଘଣ୍ଟା ଡ୍ରାଇଭ୍‌ରେ ସେ ରହୁଛି । ତା'ର ଚଉଦ ବର୍ଷର ଝିଅଟିଏ, ତେଣୁ ମୁଁ ଗଲାଦିନୁଁ ମୋତେ ଦେଖିବ ଦେଖିବ ଭାବି ମଧ୍ୟ ଆସିପାରୁ ନାହିଁ । କାରଣ ତା' ଅଫିସ୍ ସରିଲା ବେଳକୁ ଝିଅର ସ୍କୁଲ ସରୁଛି । ଝିଅ ପାଇଁ ଭାରିଡ଼ର । ଅଧ ଘଣ୍ଟେବି ପଡ଼ିଶା ଘରେ ଛାଡ଼ି ସେ ଆସିପାରିବ ନାହିଁ । ପଡ଼ିଶା କଥା ଆମଆଡ଼ ଭଳି ନୁହେଁ । କେହି କାହା ସହିତ କଥା କହିବାକୁ ବେଳ ନାହିଁ । ଆଗରୁ ନ ଜଣାଇ କାହା ଘରକୁ ଗଲେ, ସେ ହୁଏତ ନଥିବ ବା ତୁମକୁ ରିସିଭ୍ କରିବ ନାହିଁ । ତଥାପି ଦିନେ ଆସି 'ଏଲ୍' ପହଞ୍ଚିଲା-ବିଚ୍ରାଟି ଖୁବ୍ ମୋଟୀ-ହୁଏତ ପୂର୍ବରୁ ଦେଖିବାକୁ ଭଲ ଥିବ, କିନ୍ତୁ ସ୍ଥୂଳତାରେ ସବୁ ମଧୁରତା ଲୀନ ହୋଇ ଯାଇଛି । ଏଲ୍ ସହିତ କଥା ହେଉ ହେଉ, ସେ ବାହାରିଲା, ମୁଁ ଯାଏଁ ଝିଅକୁ ନେଇ ଆସେ-ମୁଁ ଅଫିସ୍‌ରୁ ଆଜି ଚଂଚଳ ଆସିଥିଲି, ଝିଅ ଫେରିଥିବ, କାହାଘରେ ବସିଥିବ-ତରତରରେ ଏଲ୍ ଧାଇଁଲା । କନି କହିଛି 'ଏଲ୍ ଝିଅ ପାଇଁ ଭାରି ଚିନ୍ତିତା ।' ଆମେରିକାର ଆଦବକାଇଦାରେ କିଶୋରୀ କନ୍ୟାମାନଙ୍କ ପାଇଁ କେବଳ ଭାରତୀୟ ମାଆମାନେ ନୁହଁନ୍ତି ଆମେରିକାନ୍ ମାଆମାନେ ମଧ୍ୟ ଭାରି ଚିନ୍ତିତା । ଝିଅଟିକୁ ଏକୁଟିଆ ପଢ଼ାଉଛି ଏଲ୍-ଆଉ କେହି ପାଖରେ ନାହିଁ । ଏଲ୍ ଝିଅ କେଲୀକୁ ଧରି ଆସିଲା- ସୁନ୍ଦରୀ ଝିଅ, ତେରବର୍ଷ ସିନା, ଷୋଳ ସତର ବର୍ଷର

ହୃଷ୍ଟପୁଷ୍ଟ ଝିଅଭଳି ଚେହେରା । ସାଂଗରେ ଆଣିଥିଲା ହାର, କାନଫୁଲ, ଶାଢ଼ୀ ବ୍ଲାଉଜ । ସେ ସବୁ ମୁଁ ପିନ୍ଧାଇ ଦେବି ଓ ସେ ଫଟୋଟି ନେବ । ତା' ମାଆର କିଏ ଇଣ୍ଡିଆନ୍ ବନ୍ଧୁ, କେଲୀକୁ ସିନ୍ଥେଟିକ୍ ଶାଢ଼ୀ, ବ୍ଲାଉଜ୍ ଦେଇଥିଲେ । ମା' ତ ପ୍ୟାଣ୍ଟ, ଟିସାର୍ଟ ପିନ୍ଧେ । କେଲୀର ଇଚ୍ଛା ପିନ୍ଧିବାକୁ । ଅଥଚ ସେ ଯେ ପିନ୍ଧି ଜାଣେନା । ଆଜି ସୁଯୋଗ ମିଳିଛି-ମୁଁ ନେଇଥିବା ଦୁଇ ପଟ ଇଷ୍ଟେଲ୍‌ର ପଥର ବସା ଚୁଡ଼ୀ ତାକୁ ପିନ୍ଧାଇ ଦେଲି । ସେ କୃତକୃତ୍ୟ ହୋଇଗଲା । ଶାଢ଼ୀ ପିନ୍ଧି କେଲୀ ପରୀଟିଏ ଭଳି ଦିଶିଲା । ସତେରେ ତା' ମା ପାଇଁ କେଲୀଭଳି ସୁନ୍ଦରୀଝିଅ ଏକ ବିପଦ । କିଛି ସମୟପରେ କୁଲଡ୍ରିଂକ୍ସ, ବର୍ଗର ଖାଇ ସେମାନେ ବିଦାୟ ନେଲେ ।

ଆଉ ଦିନେ, ପେପୁ କହିଥିଲା ତା'ର ସହପାଠୀ, ପାଠିନୀ ସାଂଗମାନେ ଆସିବେ, ଭାରତୀୟ ଓ ଆମେରିକୀୟ । ମୁଁ କହିଲି 'ମୁଁ ଆଜି ଭଲ କି ସଜ ହେବି-ସେମାନେ ଯେମିତି ଜାଣିବେ-ଆଇ ଆମ୍ ମୋଷ୍ଟ ବ୍ୟୁଟିଫୁଲ୍ ଲେଡ଼ି ଇନ୍ ଦ ଓ୍ୱାର୍ଲ୍ଡ । ପେପୁ କହିଲା, 'ୟୁ ଆର୍ ନଟ୍ ।' ମୁଁ କହିଲି, 'ୟେସ୍ ଆଇ ଆମ୍ ।' ନ୍ୟୁୟର୍କରେ 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ଯିବାକୁ କ୍ୟୁ କରିଥିଲାବେଳେ, ହଡ଼ସନ୍ ନଦୀ କୂଳରେ, କେଇଜଣ ନିଗ୍ରୋ ଭାଓଲିନିଷ୍ଟ ଥାଆନ୍ତି -ଗୀତ ଗାଆନ୍ତି ଓ ପଇସା ନିଅନ୍ତି । ସେଠାରେ କ୍ୟୁରେ ମୁଁ ଠିଆ ହେଇଥିଲାବେଳେ, ଜଣେ ଭାଓଲିନିଷ୍ଟ ଗାଇଲା 'ଇଣ୍ଡିଆନ୍ ଲେଡ଼ି, ଉଇଥ୍ ଏ ବ୍ୟୁଟିଫୁଲ୍ ଶାଢ଼ୀ,ଆଇ ଆମ୍ ସିଂଗିଂ ଫର୍ ୟୁ' ସେ ହିନ୍ଦୀ ଗୀତର ଟ୍ୟୁନିଂ ବଜାଇଲା ଓ ପରେ 'ଜନଗଣମନ'ର ଟ୍ୟୁନିଂ ବଜାଇଲା । ସେ ଦୀର୍ଘ କ୍ୟୁରେ ଶାଢ଼ିପିନ୍ଧା ଲୋକ କେବଳ ମୁଁ ଥିଲି । ପେପୁକୁ ବର୍ତ୍ତମାନ ମନେ ପକେଇ ଦେଲି ସେ କଥା । ସେ ଚିଡ଼ିଲା ଭଳି ହେଲାରୁ କହିଲି, 'ଆଚ୍ଛା, ତୋ ସାଙ୍ଗମାନଙ୍କୁ ପଚାରିବା-ଯେ କଥା ସତ କି ନାହିଁ ।' ଏଥର ସେ ଅନୁନୟ ସ୍ୱରରେ କହିଲା 'ବୋଉ (ମତେ ବୋଉ ଡାକେ) ପ୍ଲିଜ୍, ଓ୍ୱାନ୍ ସୁଡ୍ ନଟ୍ ଟେଲ୍ ଲାଇକ୍ ଦ୍ୟାଟ୍ । ଲେଟ୍ ଦେମ୍ ସେ ୟୁ ।' ଆଚ୍ଛା, ଏଡ଼େ ବକଟେ ପୁଅ । କୋଉ କଥା ଭଲ, କ'ଣ ମନ୍ଦ, କେମିତି ଜାଣିଲା ! ମତେ ଆହ୍ଲାଦ ଲାଗିଲା । ହେନେରୀ, ଗାରେଟ୍, ସାଇଲୀ, ନୀତା, ଏଲିସ୍, ସୁଧାକରନ୍ ଆସିଲେ । ସାଇଲୀ ଟିକେ ଚଗଲୀ । ସେ ଏଘର ସେଘର ପଶି ସବୁ ଜିନିଷରେ ହାତ ଦେଲା । ମୋର ମୁଖ ମୁଦ୍ରାକୁ ଲକ୍ଷ୍ୟକରି, ପେପୁ ଚୁପ୍ ଚୁପ୍ ମୋ କାନ ପାଖେ ଚେତାବନୀ ଦେଲା । 'ଡୋଣ୍ଟ ସାଉଟ୍ ଆଟ୍ ଦେମ୍ । ଦେ ଆର୍ ଗେଷ୍ଟସ୍ ।' ସାଙ୍ଗମାନେ ପେପୁର ପ୍ରାଣ । ଦିନେ ସ୍କୁଲ୍ ଛୁଟିବେଳକୁ ପେପୁ ତା'ର ସହପାଠୀ ହେନେରୀକୁ ଧରି ଘରେ ହାଜର୍ । ହେନେରୀର ମାଆ ମେଲିସା ବି ଆସିଛି । କ'ଣ ନା, ପେପୁ ଡାକିଲା-ତା'ର ଗ୍ରାଣ୍ଡମାକୁ

ଦେଖିବାକୁ । କନି ଘରେ ଥିଲା-ସେମାନଙ୍କୁ ଅପ୍ୟାୟିତ କଲା । ମେଲିସା କହିଲା, 'ଯଦି ମୁଁ କିଛି ଖାଇବି, କହୁଚ, ଇଣ୍ଡିଆନ୍ ଫୁଡ୍ ହିଁ ଖାଇବି ।' ଏତେ ଶୀଘ୍ର କ'ଣ ବି କରିହେବ- ଅଧଘଣ୍ଟା ଭିତରେ ମୁଁ ସିମେଇ ଉପମା କଲି-ସିଝା କଟା ପରିବା ଥିଲା । ମେଲିସା ଉପମାଖାଇ ବହୁତ ଖୁସି ହେଲା ଓ ତା' ସ୍ୱାମୀ ପାଇଁ କିଛି ବାନ୍ଧିଲା । ସେ ଚାକିରୀ କରେ ନା । ତା' ସ୍ୱାମୀର ବିଜିନେସ୍ ଅଛି । ମେଲିସା ମୋଟୀ-ତା'ର କଲନ୍ କ୍ୟାନ୍‌ସର-ଚିକିତ୍ସା ହେଇ ଭଲ ଅଛି ଓ ଚିକିତ୍ସା ପ୍ରାୟ ଚାଲିଥାଏ । ହେନେରୀ ତଳେ ଚାରି ବର୍ଷର ଆଉ ଗୋଟିଏ ପୁଅ 'ମ୍ୟାକ' । ସେ ତା' ଘରକୁ ନିମନ୍ତ୍ରଣ କରିଥିଲା ।

ଆଉ ଦିନେ, ଗ୍ୟାରେଟ୍‌ର ମାଆ ଥେରେସା ତାଙ୍କ ଘରକୁ ଡାକିଥିଲେ । ସେ ଇଂରାଜୀ ପ୍ରଫେସର୍ । ପ୍ରତିଦିନ ବେଶ୍ ଘଣ୍ଟାଏ ଡ୍ରାଇଭକରି ଡଲାସ୍‌ର ଗୋଟେ କଲେଜକୁ ଯାଆନ୍ତି । ସେ ଆମେରିକାନ୍, ତାଙ୍କ ସ୍ୱାମୀ ଇଂଲଣ୍ଡର ଲୋକ । ଉଭୟଙ୍କ ଚେହେରାରେ ବିଶେଷ ତଫାତ୍ ନାହିଁ । ଖାଲି ଯାହା ଥେରେସାଙ୍କ ବାଳ କଳାରଂଗ ଓ ତାଙ୍କ ସ୍ୱାମୀଙ୍କ ବାଳ ଈଷତ୍ ସୁନେଲୀ ରଂଗ । ପିଲା ତିନୋଟି-ବଡ଼ ଏଗାର ବର୍ଷର ଝିଅ । ତା'ପରେ ଗାରେଟ୍, ସାନ ବି ଝିଅଟିଏ । ଆମେରିକାର ନିୟମ ଅର୍ଥାତ୍ ଅଭ୍ୟାସ ସେମାନେ ଖୁବ୍ ଶୀଘ୍ର ଶୁଅନ୍ତି । ଆମେ କିନ୍ତୁ ସଂଧ୍ୟା ଛଅଟା ବେଳକୁ ଯାଇପାରିଲୁ ନାହିଁ । ଆମେ ପହଞ୍ଚିଲା ବେଳକୁ ଥେରେସା ବାର୍‌ବାର୍ ଫୋନ୍ କରୁଥାନ୍ତି । ଆମେ ପହଂଚିଲା ପରେ ସେ ଚିକେନ୍ ବାର୍ବିକ୍ୟୁ କଲେ । ଭାତ ରାନ୍ଧିଥିଲେ- ଆଉ ଗୋଟେ ନୂଆ ପ୍ରକାର ଜିନିଷ ସେଇଟା ଆସ୍‌ପାରାଗସ୍ ଫ୍ରାଇ-ସେମାନେ ଚୋବେଇ ପକଉଥାନ୍ତି । ଥେରେସା ଖାଇବା କଲାବେଳକୁ ମୁଁ ଘର ଭିତରକୁ ଚାଲିଗଲି । ବଡ଼ ଘର ସୁସଜ୍ଜିତ । ଝିଅଟି ଖୁବ୍ ଲଳିତ-ରଂଗ, ଗଢ଼ଣ, ଉଚ୍ଚତା ଦୃଷ୍ଟିରୁ । ସବୁଠୁଁ ମୋତେ ଆକର୍ଷଣ କଲା, ତା'ର ବାଳ । ଶୁଣିଥିଲି ଇଂରେଜୀମାନେ ସୁନାରଂଗ ବାଳକୁ ପସନ୍ଦ କରନ୍ତି । ଅନେକ ସ୍ୱର୍ଣ୍ଣକେଶୀ ମୁଁ ଦେଖିଚି । ମାତ୍ର ଏଇ କିଶୋରୀର ବାଳ ପରି ସୁନ୍ଦର, ଗୋଟି ଗୋଟି ବାଳ ସୁନାର ତାର ପରି, ଫୁଟେ ଲମ୍ବର ହେବ, କୋଉଠି ଦେଖି ନଥିଲି । ତା'ର ଗୋଟିଏ ଖିଅ କେଶ ଆଣି ମୁଁ ଟେକି ଧରେ ଓ ତାରିଫ୍ କରେ । ଆମର ଏଠାରେ କେଶରେ ଆଖିପଡ଼ିଲେ ଖୁଣି ହେଇଯିବ ଓ କେଶ ଉପୁଡ଼ିଯିବ ବୋଲି ବିଶ୍ୱାସ । ସେଥିପାଇଁ ଝିଅର ମୁଣ୍ଡ କୁଣ୍ଡେଇ ସାରି ମା' ମାଉସୀ, ବୁଢ଼ିମା ମାନେ ଅଡୁଆ କେଶ ପାନିଆରୁ କାଢ଼ି ଛେପ ପକାଇ ପିଙ୍ଗିଦିଅନ୍ତି । କିଆ ବୁଦା ଭିତରେ ଅଡୁଆ ବାଳ ପକାଇଲେ ସବୁଠୁ ଭଲ । ଓଡ଼ିଶାର ଗାଉଁଲୀ ଝିଅ ଭାବରେ ମୁଁ ଏସବୁ ଜାଣେ । ମାତ୍ର ମୋର ଏତାଦୃଶ ବାଳ ତାରିଫ୍ କରିବାକୁ ସେମାନେ ଉପଭୋଗ

କରୁଥାନ୍ତି । ସେଦିନ ତାଙ୍କ ଘରକୁ ଅତିଥିଭାବେ ଜଣେ ତାମିଲ୍‌ଛାତ୍ର ଓ ଜଣେ ନିଗ୍ରୋ ଛାତ୍ର ନିମନ୍ତ୍ରିତ ହୋଇଥାନ୍ତି ।

ଖାଇବା ପୂର୍ବରୁ ମୁଁ ଘର ଭିତରକୁ ଯାଇ ପିଲାଙ୍କ ସାଂଗେ କ୍ରିଷ୍ଟାଲ୍ ଖେଳିଲି । ବିଭିନ୍ନ ରଂଗର, ଆକାରର ଗୁଳିଗୁଡିକ । କୋଉ ରଂଗର ଦାମ କେତେ । ଯିଏ ଷ୍ଟ୍ରାଇକ କରି ସବୁ ଠୁ ବେଶି ଗୁଳିନେବ ସେ ଧନୀ, ସେ ଜିତବି । ମୁଁ ସବୁବେଳେ ପ୍ରାୟ ଜିତିଯାଏ । ଗାରେଟ୍, ସାନିଜା, ପେପୁ ହାରିଯାଆନ୍ତି । ଖୁବ୍ ମଜାରେ ଆମେ ଘଣ୍ଟାଏ ଖଣ୍ଡେ ଖେଳିଲୁ । ଖେଳ ସରିଲାରୁ ସାନିଜା ଉଲ୍ ଓ କଣ୍ଟା ଆଣି ତା' ମା ଶିଖାଇଥିବା ଡିଜାଇନ୍ ବୁଣୁଥାଏ- ପୋଖତ୍ ହୋଇ ନଥାଏ ଅବଶ୍ୟ । ତା' ପରେ ସେ ହାର୍ମୋନିକା ପାଖରେ ବସି ଧୀରେ ବଜାଇବା ଆରମ୍ଭ କଲା-ତା' ଗ୍ରାଣ୍ଡ ମା'ଙ୍କ ହାର୍ମୋନିକା, ମାଆ ବି ବଜାନ୍ତି । ସେ ବିଶେଷ୍ କିଛି ଶିଖି ନାହିଁ । ଭଲ ପଡ଼େ, ପିଲାମାନେ ଓ ମୁଁ ପରସ୍ପର ସାହଚର୍ଯ୍ୟରେ ଖୁବ୍ ଖୁସିହେଲୁ ରଂଜନ୍ ଅଫିସ୍‌ରୁ ଫେରି, ଆସି ପହଂଚିଥିଲେ ଓ ଆମେ ରାତିଦଶଟାରେ ଘରକୁ ଫେରିଲୁ । ମୁଁ ଆଶ୍ଚର୍ଯ୍ୟହେଲି, କନିର ଆନ୍ତରିକତା ବିଦେଶିନୀମାନଙ୍କୁ ବି ବାନ୍ଧିରଖିଛି ।



# ସ୍ମୃତିର ମାଟି

ଆମେରିକା, ଯାହାର ଦୀର୍ଘତର ସ୍ମୃତି ହିଁ ନାହିଁ-ନାହିଁ ସୁଦୀର୍ଘ ଅତୀତ, ତାକୁ ନେଇ ଜଣେ ଭାରତୀୟ ମହିଳାର, ଓଡ଼ିଆଣୀର, ପୁଣି ସ୍ମୃତିଟି କେଉଁପରି ? ମୋର ସୌଭାଗ୍ୟ ଯେ, ମୁଁ University of Texas at Arlington(U.T.A)ରେ କିଛିଦିନ ରହିବାର ସୁଯୋଗ ପାଇଲି । ମୋର ଝିଅ, ଜ୍ୱାଇଁ, ଦୁଇଜଣ ଯାକ ଇଂଜିନିୟର । ଜଣେ ଏମ୍.ବି.ଏ ପଢୁଥିଲାବେଳେ ଆଉ ଜଣେ ପି.ଏଚ.ଡ଼ି କରୁଛନ୍ତି ଆମେରିକାର ଏହି ବିଶିଷ୍ଟ ବିଶ୍ୱବିଦ୍ୟାଳୟରେ । ଏହି ବିଶ୍ୱବିଦ୍ୟାଳୟ, ଏହାର ଚଳଣି, ଏହାର ଗୁରତ୍ୱ ବିଷୟରେ ମୁଁ ପରବର୍ତ୍ତୀ ପର୍ଯ୍ୟାୟରେ କହିବି । କିନ୍ତୁ ବର୍ତ୍ତମାନ ମୁଁ ସ୍ମୃତିଚାରଣ କରିବି, ଜଣେ ସୁଯୋଗ୍ୟା, ଅବିସ୍ମରଣୀୟା ଭାରତୀୟ ମହିଳାଙ୍କର ।

କଳ୍ପନା ଥିଲେ ଏହି ବିଶ୍ୱବିଦ୍ୟାଳୟର ଛାତ୍ରୀ, ତାଙ୍କ ବାସଭବନ (ହଷ୍ଟେଲପରି) ପର୍ଯ୍ୟନ୍ତ ସମସ୍ତଙ୍କର ଜଣାଶୁଣା । ଶୁଣିଲି, ଦେଖିଲି, ସେଇବାଟେ ଚାଲି ଯାଉ ଯାଉ ଭାରତୀୟଙ୍କ ସ୍ମରଣ-ଏଇ ଫ୍ଲାଟରେ କଳ୍ପନା ଚାୱାଲା ରହୁଥିଲେ । ଏହି ବ୍ଲକ, ଅମକ ଆପାର୍ଟମେଣ୍ଟ । ମୋର ରହଣିକାଳ ମଧ୍ୟରେ କଳ୍ପନାଙ୍କ ସ୍ମୃତି ରକ୍ଷାର୍ଥେ ଏହି ବିଶ୍ୱବିଦ୍ୟାଳୟ ଏକ ସୁବିଶାଳ ଆୟୋଜନ କରିଥିଲେ । ପ୍ରତିବର୍ଷ ଛାତ୍ର ସଂଖ୍ୟା ବଢ଼ି ଚାଲିଛି ଓ ପ୍ରତିବର୍ଷ ବାସୋପଯୋଗୀ ଗୃହ ନିର୍ମାଣ ଚାଲିଛି । ଖୁବ୍ ସ୍ୱଚ୍ଛନ୍ଦରେ ଚଳିଲାଭଳି ଘର । ଏ ବର୍ଷ (୨୦୦୩) ଜୁଲାଇ ପହିଲାରେ ଏକ ନବନିର୍ମିତ ହଲ୍‌ର ଶିଳାନ୍ୟାସ ହେଲା । ତା'ର ନିର୍ମାଣ ୨୦୦୪ ଜୁଲାଇ ସୁଦ୍ଧା ଶେଷ ହେବ ଓ ଏହା କଳ୍ପନା ଚାୱାଲାଙ୍କ ନାମରେ ନାମିତ ହେଲା । ଏହି ହଲ୍‌ରେ ଚାରିଶହ ଏକୋଇଶଜଣ ଛାତ୍ରଛାତ୍ରୀ ପଢ଼ିବା ନିମିତ୍ତ ଓ Extra curricular activity ପାଇଁ ଉଦ୍ଦିଷ୍ଟ ହେବ । ଏହି ଅସାଧାରଣ ହଲରେ ଗୋଟିଏ କମ୍ପୁଟର ହଲ ମଧ୍ୟ ରହିବ । ଏହି ଉତ୍ସବରେ ବହୁ ସଂଖ୍ୟାରେ ଛାତ୍ର, ଅଧ୍ୟାପକ, ବୈଜ୍ଞାନିକଙ୍କ ସହ 'ନାସା' କମାଣ୍ଡର କେଭିନ୍ କ୍ରେଜଲ, ଇନଟେରିମ ପ୍ରେସିଡେଣ୍ଟ ଚାର୍ଲସ ସର୍ବର ଓ ଆର୍ଲିଂଟନ ସିଟି ମେୟର ରବର୍ଟ କ୍ଲକ ଯୋଗଦେଇଥିଲେ । ସେଠାରେ ଉପସ୍ଥିତ ଥିଲେ କଳ୍ପନା ଚାୱାଲାଙ୍କ ସ୍ୱାମୀ ଜିନ୍-ପିରେ ହାରିସନ୍ । କଳ୍ପନା ଜଣେ ମେଧାବୀ ଛାତ୍ରୀ, ନେତୃତ୍ୱାଧିକାରିଣୀ, ଉତ୍ସର୍ଗିତ ସହକର୍ମଚାରୀ ଓ ନାରୀମାନଙ୍କ ନିମିତ୍ତ ଏକ ଗୁରୁତ୍ୱପୂର୍ଣ୍ଣ ଆଦର୍ଶ ବ୍ୟକ୍ତିତ୍ୱ ବୋଲି ବିଶିଷ୍ଟ ବ୍ୟକ୍ତିଗଣ ମତବ୍ୟକ୍ତ କଲେ । ଏହି ହଲ୍‌ଟିରେ ଅଧ୍ୟାପକମାନେ ମଧ୍ୟ ଛାତ୍ରଛାତ୍ରୀଙ୍କ ସହ ମିଶି ଆଲୋଚନା କରି ପାରିବେ । ଏହି ଉତ୍ସବ ସକାଳ ଆଠଟାରେ ଆରମ୍ଭ

ହୋଇଥିଲା, ଏଥିରେ ଚାଓ୍ୱଲାଙ୍କ ଥେସିସ୍‌ର ଦିଗ୍‌ଦର୍ଶକ, ମେକାନିକାଲ ଓ ଏରୋସ୍ପେସ୍ ଇଂଜିନିୟରିଂ ମୁଖ୍ୟ ଡନ୍ ଓ୍ୱାଲସନ୍ ମଧ୍ୟ ଯୋଗଦେଇଥିଲେ ।

ଚାଓ୍ୱାଲାଙ୍କ ବନ୍ଧୁ ବସ୍ନେର ଛାତ୍ର ଗୁରମିତ୍ ସିଂ ପ୍ରକାଶ କଲେ ଯେ, 'ଆମେରିକାରେ ଏକ ଭାରତୀୟ ସମ୍ମାନିତ ହେଉଥିବାରୁ ସେ ଗର୍ବିତ ଓ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଏହା ଗୌରବର ବିଷୟ, କଳ୍ପନା ଗୁରୁମିତ୍‌ଙ୍କୁ ତାଙ୍କ ନିଜ ଭଳି ବିରାଟ, ହେବାକୁ ପରାମର୍ଶ ଦେଇଥିଲେ ।' ଏହି ସ୍ୱତନ୍ତ୍ର ଉତ୍ସବରେ ନିର୍ଦ୍ଦେଶିକା ଶ୍ରୀମତୀ ଆମି ସ୍କୁଲଜ୍ଞ କହିଥିଲେ, 'ଚାଓ୍ୱଲା ୧୯୮୪ରେ ଏରୋସ୍ପେସ୍ ଇଂଜିନିୟରିଂରେ ଗ୍ରାଜୁଏଟ କଲେ ଓ ସ୍ୱଦେଶରୁ ଆସିବାର ବାରବର୍ଷ ପରେ ଜଣେ ଆଷ୍ଟ୍ରୋନଟରେ ପରିଣତ ହେଲେ । ସେ ଏଠିକାର ଛାତ୍ରୀ ବୋଲି ଆର୍ଲିଂଟନ ୟୁନିଭ ଗର୍ବକରେ ।'

ଯେଉଁ କଳ୍ପନା ଶେଷବାର କଲମ୍ବିଆ ସ୍ପେସ୍ ସଟଲରେ ଯିବା ପୂର୍ବରୁ ବିଶ୍ୱବାସୀଙ୍କୁ ଉଦ୍‌ବୋଧନ ଦେଇଥିଲେ 'Follow your dreams' ନିଜ ସ୍ୱପ୍ନକୁ ସାର୍ଥକ କରିବା ପାଇଁ ସେ କଠୋର ପରିଶ୍ରମ କରିଥିଲେ । ଏହି ଉତ୍ସବରେ UTA ର ଜଣେ ଭାରତୀୟ ଛାତ୍ରୀଙ୍କ ଦ୍ୱାରା ପାରଂପରିକ ଭାରତ ନାଟ୍ୟମ୍ ପ୍ରଦର୍ଶନ କରାଯାଇଥିଲା । ବାରମ୍ବାର 'କଳ୍ପନା UTA ର ପ୍ରାକ୍ତନ ଛାତ୍ରୀ' ଭାବେ ଗର୍ବର ସହ ନାମିତ କରାଯାଉଥିଲା । ଏହି ଉତ୍ସବକାଳରେ କଳ୍ପନାଙ୍କ ପତି ହାରିସନ ଶବ୍ଦଟିଏ ବି ଉଚ୍ଚାରଣ ନ କରି ବସିରହିଥିଲେ । ଶିଳାନ୍ୟାସରେ ନିର୍ଦ୍ଦେଶମତେ ମାଟି ପକାଇଥିଲେ । ଉତ୍ସବ ଶେଷରେ ସାମ୍ବାଦିକମାନେ ତାଙ୍କ ନିଜସ୍ୱ ମତାମତ ପଚାରିବାରେ ସେ ଉତ୍ତର ଦେଲେ, 'ସେ ଏଥିରେ ଖୁସି ନୁହନ୍ତି । କାରଣ କଳ୍ପନା କୌଣସି ଧର୍ମାବଲମ୍ବୀ ନଥିଲେ । ହିନ୍ଦୁ ନୁହଁ କି ବୌଦ୍ଧ ନୁହଁ । ଏଠିକା ଲୋକେ ବି କହିଥିଲେ ଏହା ଏକ ଧାର୍ମିକ ଅନୁଷ୍ଠାନ ନୁହେଁ । କଳ୍ପନା ଯଦି ଏଠି ଥାଆନ୍ତେ, ସେ ଏଠାରୁ ଉଠି ପଳାଇ ଥାଆନ୍ତେ ।' ତାଙ୍କର ଏହି କଠୋର ମନ୍ତବ୍ୟର ପୃଷ୍ଠରେ ଥିଲା ଶିଳାନ୍ୟାସ ଉତ୍ସବରେ ଭାରତୀୟ ସମାବେଶ ପକ୍ଷରୁ ମନ୍ତ୍ରପାଠ ଓ ନଡ଼ିଆ ଭଙ୍ଗା ହେବାର କାର୍ଯ୍ୟକ୍ରମ । ଗୋଟିଏ ଦୀପ ମଧ୍ୟ ଜଳାଯାଇଥିଲା । ସମାବେଶର ସଭ୍ୟା ବିଶିଷ୍ଟ ଭାରତୀୟ ସବ୍‌ନମ୍ ମୁଦ୍‌ଗଲ କହିଥିଲେ ଯେ 'ନଡ଼ିଆ ଫଳମାନଙ୍କ ମଧ୍ୟରେ ରାଜା । ଏହା କୋମଳ ଅଭ୍ୟନ୍ତର ଓ କଠୋର ବାହ୍ୟରୂପକୁ ପ୍ରକାଶ କରେ । ଦୀପ ଓ ଧୂପ ଆଲୋକ ଓ ସୁଗନ୍ଧର ପ୍ରତୀକ ।' ଏଥିରେ ଧର୍ମ ରହିଲା କେଉଁଠି ? ତଥାପି ଏହି କର୍ମାନୁଷ୍ଠାନଟି ହାରିସନଙ୍କ ଅପସନ୍ଦ ହୋଇଥିଲା । ଦିବଂଗତା ପତ୍ନୀଙ୍କ ସ୍ମୃତିରେ ଭାରତୀୟ ସମାବେଶ ତରଫରୁ ଏହି ମନ୍ତ୍ରପାଠ ସେ ସହ୍ୟ କରିପାରି ନଥିଲେ ।

ଆର୍ଲିଂଟନ ୟୁନିଭର ମୁଖପତ୍ର The Shorthorn କାଗଜ ଛାତ୍ର ଓ କ୍ୟାଂପସ୍ ବାସିନ୍ଦାମାନଙ୍କୁ ମାଗଣାରେ ବଣ୍ଟାଯାଏ । ସେହିଥିରେ ୧୯୮୪ରେ ପାସ୍ କରି ଯାଇଥିବା କଳ୍ପନା ଓ ମହାକାଶଚାରୀଙ୍କ ସମ୍ପର୍କରେ ବହୁ ତଥ୍ୟ ପ୍ରକାଶ ପାଇଥିଲା । ସେପ୍ଟେମ୍ବର ୧୭ ତାରିଖ ୨୦୦୩ ରେ ସ୍ୱାଗତଯୋଗ୍ୟ ଖବର ପ୍ରକାଶ ପାଇଲା, ଯାହା ମୂଳତଃ ୱାଶିଂଟନ ଡି.ସି.ରୁ ବିଜ୍ଞାପିତ ହୋଇଥିଲା । ଆମେରିକାର କେତେକ ବିଶିଷ୍ଟ ବ୍ୟକ୍ତି ରନହାୱାର୍ଡଙ୍କ ଭଳି କେତେକ ଅଭିନେତା ଓ ଚଳଚ୍ଚିତ୍ର ନିର୍ଦ୍ଦେଶକ ପୁଣି ଫ୍ରାଙ୍କ କଲବର୍ଷ୍ଟାନଙ୍କ ଭଳି କେତେକ ପୂର୍ବତନ ମହାକାଶଚାରୀ ମିଳିତ ଭାବେ ଏକ ଫଣ୍ଡ ଆଦାୟ କରୁଛନ୍ତି । ଏହି ଅର୍ଥ କଲମ୍ବିଆର ମୃତ ମହାକାଶଚାରୀଙ୍କ ପରିବାରବର୍ଗଙ୍କୁ ପ୍ରଦତ୍ତ ହେବ ଓ ଏମାନଙ୍କର ସ୍ମୃତିସୌଧ ୱାଶିଂଟନ ଡି.ସି.ର ଆର୍ଲିଂଟନ ମେମୋରିଆଲରେ ନିର୍ମିତ ହେବାରେ ବ୍ୟୟିତ ହେବ । ଏଠାରେ କହିବାକୁ ହେଉଛି ଯେ ଏହି ମେମୋରିଆଲ ଉତ୍ତର ୱାଶିଂଟନରେଅବସ୍ଥିତ ଓ ଏଠାରେ କେନେଡ଼ି ପରିବାରଙ୍କ ସମେତ ବହୁଜାତୀୟ ନେତାଙ୍କ ସମାଧି ନିର୍ମିତ ହୋଇଛି । ୱାଶିଂଟନଠାରେ ଅବସ୍ଥିତ ଜାତୀୟ 'ଏଆର ଆଣ୍ଡ ସ୍ପେସ୍' ମ୍ୟୁଜିୟମଠାରେ ଏକ ଉତ୍ସବରେ ମହାକାଶଚାରୀଙ୍କ ପରିବାରକୁ ଅର୍ଥ ଓ ସମ୍ମାନ ପ୍ରଦାନ କରାଯିବ । ନାସାର ଆଡ଼ମିନିଷ୍ଟ୍ରେଟର ସିମେନ ଓ କିଫେ ବ୍ୟକ୍ତ କରିଛନ୍ତି- 'ପୃଥିବୀବାସୀଙ୍କ ପାଇଁ ବୈଜ୍ଞାନିକ ଉନ୍ନତି କଳ୍ପେ ଏହି ମହାକାଚାରୀମାନେ ନିଜ ଜୀବନକୁ ବାଜି ଲଗାଇଥିଲେ ।'

Shorthornର ପ୍ରକାଶିତ ଖବର ଅନୁସାରେ ୨୦୦୩ ମସିହା ଫେବୃୟାରୀ ୧ ତାରିଖ ମହାକାଶ ଯାନ କଲମ୍ବିଆ ଦୁର୍ଘଟଣାଗ୍ରସ୍ତ ହୋଇଥିଲା । ଦୁର୍ଘଟଣାରେ ପ୍ରାଣ ହରାଇଥିବା ଭାରତୀୟ ମହାକାଶ ବିଜ୍ଞାନୀ କଳ୍ପନାଙ୍କ ସମ୍ପର୍କରେ ଅନେକ ବୈଜ୍ଞାନିକ ଉଚ୍ଚ ମନ୍ତବ୍ୟ ପ୍ରଦାନ କରିଥିଲେ । ଦୁର୍ଘଟଣାର ତଦନ୍ତକାରୀ ବୈଜ୍ଞାନିକମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ମତପୋଷଣ କଲେ ଯେ, ମହାକାଶଯାନଟି ପ୍ରତି ନାସା କର୍ମକର୍ତ୍ତାଙ୍କ ଅବହେଳାରୁ ବିଶ୍ୱର ସାତଜଣ ବିଶିଷ୍ଟ ମହାକାଶଚାରୀ ଅକାଳ ମୃତ୍ୟୁବରଣ କଲେ । ନାନାଦି ବୈଜ୍ଞାନିକ କାରଣ ଦର୍ଶାଇ ସେମାନେ ମତବ୍ୟକ୍ତ କଲେ ଯେ, ଦେଢ଼ ପାଉଣ୍ଡ ଓଜନର ଏକ ଯନ୍ତ୍ରାଂଶ ଖସିପଡ଼ିବା କାରଣରୁ ଯାନଟି ଦୁର୍ଘଟଣା ଗ୍ରସ୍ତ ହେଲା । ମହାକାଶକୁ ପଠାଯିବା ପୂର୍ବରୁ ଏହା ଠାବ କରାଯାଇଥିବା ସତ୍ତ୍ୱେ ନାସାର କର୍ମକର୍ତ୍ତା ଏଥିପ୍ରତି ଗୁରୁତ୍ୱ ଦେଲେ ନାହିଁ । ଅଥଚ ଏହା ଯେ ନିଶ୍ଚିତ ବିସ୍ଫୋରଣର କାରଣ ହେବ ଏହା ସମସ୍ତେ ଜାଣିବାରେ ଆଦୌ ଦ୍ୱିଧା ନଥିଲା । କଲମ୍ବିଆ ଯାନଟି ବହୁବାର ମହାକାଶକୁ ଯାଇ ପୁରୁଣା ଓ ଦୁର୍ବଳ

ହୋଇପଡ଼ିଥିଲା । ଏହାକୁ  ଠିକ୍ ଭାବେ ଯାଞ୍ଚ କରା ନଯାଇ, କରାଯାଇଥିଲେ ବି ସଜଡ଼ା ନ ଯାଇ, ନିର୍ଦ୍ଧାରିତ ସମୟକୁ ଏକମାତ୍ର ଗୁରୁତ୍ୱ ଦେଇ, ତରବରିଆ ଭାବେ ଏହାକୁ ମହାକାଶକୁ ପ୍ରେରଣ କରାଗଲା । ଅଥଚ ତ୍ରୁଟିକୁ ସୁଧାରିବା ପରେ ପଠାଇଥିଲେ ଏହି ଦୁର୍ଘଟଣା ଘଟି ନଥାନ୍ତା । ସେମାନେ(ତଦନ୍ତକାରୀଗଣ) ପରାମର୍ଶ ଦେଲେ ଯେ ମହାକାଶଚାରୀମାନଙ୍କୁ ଏଣିକି ଯାନର କେତେ ଯାନ୍ତ୍ରିକ ତ୍ରୁଟି ସଜାଡ଼ିବା ନିମିତ୍ତ ଶିକ୍ଷା ଦିଆଯାଇ ପଠାଯିବା ଖୁବ୍ ଗଠନମୂଳକ ହେବ ।

ଏବେ ୨୦୦୪ ଜୁନ୍ ମାସରେ ଆମେରିକା ଘୋଷଣା କରି କାର୍ଯ୍ୟକାରୀ କରିଥିବା ଦୁଇଟି ଘଟଣା କଳ୍ପନାଙ୍କ ଗୁରୁତ୍ୱକୁ ବଢ଼ାଇ ଦେଇଛି । ନ୍ୟୁୟର୍କ ସହରରେ କଳ୍ପନାଙ୍କ ନାମରେ ଏକ ରାସ୍ତା ନାମିତ ହେଲା ବେଳକୁ, 'K. C. Computer' ନାମରେ ଏକ ନୂଆ କଂପ୍ୟୁଟରର ପ୍ରଚଳନ କରାଯାଇଛି ।

ନାସାର ଏଆର ସ୍ପେସ୍ ମ୍ୟୁଜିୟମ (ସ୍ମିଥସୋନିଆନ୍ ଓ୍ୱାଶିଂଟନ୍ ଡି.ସି.ଠାରେ) ରେ କଲମ୍ବିଆ ଓ କଳ୍ପନାଙ୍କ ଚିତ୍ର ଦର୍ଶାଯାଇ ସେମାନଙ୍କୁ ସମ୍ମାନ ପ୍ରଦର୍ଶନ ବାରମ୍ବାର କରାଯାଉଥିଲା । ହ୍ୟୁଷ୍ଟନ ସହରରେ ଥିବା ନାସା ସେଣ୍ଟରରେ ମଧ୍ୟ ବାରମ୍ବାର ଏହି ମହାକାଶଚାରୀମାନଙ୍କ ସାହସିକତା ଓ ପ୍ରାଣୋତ୍ସର୍ଗର ଅନନ୍ୟ ଦୃଷ୍ଟାନ୍ତ ପ୍ରଦର୍ଶିତ ହେଉଥାଏ । ହ୍ୟୁଷ୍ଟନରେ, କଲମ୍ବିଆଯାନ ଭିତରେ କଳ୍ପନାଙ୍କ ଦୁଇଟି ଚିତ୍ର ବଡ଼ ପ୍ରାଣସ୍ପର୍ଶୀ ହୋଇଥିଲା । ଗୋଟିକରେ ସେ ବାଳତଳ ଉପରକୁ କ୍ଲିପ୍ କରି ଯନ୍ତ୍ରକୁ ନିରୀକ୍ଷଣ କରୁଥାନ୍ତି । ଅପରଟିରେ କୋଠରୀ ଭିତରେ ବସି ଖାଦ୍ୟପାତ୍ରରୁ ଉଡ଼ିଯାଉଥିବା ଅଙ୍ଗୁରକୁ ଧରି ଗୋଟିଏ ଗୋଟିଏ ପାଟିରେ ପକାଉଥାନ୍ତି ଓ ହସୁଥାଆନ୍ତି । ତାଙ୍କ ଅନାବିଳ  ହସ ଭାରତୀୟର ରକ୍ତଗତ ସ୍ୱଚ୍ଛତାକୁ ସୂଚାଇ ଦେଉଥାଏ ।

ଏହି ଆର୍ଲିଂଟନ ୟୁନିଭ୍‌ର ଉତ୍ସବରେ ଯୋଗଦେଇ ମୁଁ ଅଭିଭୂତ ହୋଇ ପଡ଼ିଥିଲି । ମନେହେଲା, କଳ୍ପନାଙ୍କ ସ୍ମୃତିରେ ସିକ୍ତ UTA ମାଟି କେତେ ପବିତ୍ର ! ବିଶ୍ୱବାସୀଙ୍କ ପାଇଁ, ଭାରତୀୟଙ୍କ ପାଇଁ, ବିଶେଷକରି ମୋ ପାଇଁ !



# ପେପୁ ଓ ତା'ର ସ୍କୁଲ୍

ପେପୁ(ଅକ୍ଷର) ତିନି କ୍ଲାସ୍‌କୁ ଉତ୍ତୀର୍ଣ୍ଣ ହୋଇଛି । ତା'ର ସ୍କୁଲ୍ ଖୋଲିଲା । ତା'ର କ୍ଲାସ୍ ଟିଚର୍ ମିସ ଶିବ୍‌ଲନ୍ (Sybion) ତା' ଠାରୁ ଶୁଣିଲେ ଯେ ପେପୁର ଗ୍ରାଣ୍ଡ୍‌ମା' ଇଣ୍ଡିଆରୁ ଆସିଛନ୍ତି । ସେ କହିଲେ 'ଗ୍ରାଣ୍ଡ ମାଆଙ୍କୁ ଆଣିବ ।' ପେପୁ ମଝିରେ ମଝିରେ କହେ 'ବୋଉ, ତୁମେ ଆଜି ମୋତେ ସ୍କୁଲ୍‌ରୁ ଆଣିବାକୁ ଆସ ।' ଏବେ ସେ ଭଲ ଓଡ଼ିଆ କହିଲାଣି । ସେମାନଙ୍କ ସ୍କୁଲର ନିୟମ; ପ୍ରତି ବାପା, ମାଆ ଯାଇ ନିଜ ନିଜ ପିଲାଙ୍କୁ ଆଣିବେ । ପେପୁର ମାଆ ସବୁଦିନେ ଯାଇ ସ୍କୁଲ୍‌ରୁ ଆଣେ । ମୁଁ କେବେ ଯାଏ ନାହିଁ । ରଂଜନ କହିଲେ 'ପ୍ୟାରେଣ୍ଟ ଟିଚର୍ ଡେ' ଦିନ ଆପଣ ଯିବେ ।' ପ୍ରତି ମାସରେ ଏହି ଡେ ଆସେ, ଗୋଟେ ରବିବାର ପୂର୍ବାହ୍ନରେ ।

ମୁଁ ସେଦିନ ରଂଜନ ଓ ପେପୁଙ୍କ ସହିତ ସ୍କୁଲକୁ ଗଲି । ପେପୁର ଉତ୍ସାହ କହିଲେ ନ ସରେ । ଡେଇଁ, କୁଦି ଗାଡ଼ିରେ ବସିଲା ବେଳେ ରନିଂ କମେଣ୍ଟାରୀ କରି କରି ସେ ଚାଲିଲା । ସ୍କୁଲ୍‌ର ପରିସର ବହୁତ ପ୍ରଶସ୍ତ-ଆମ ରମାଦେବୀ ମହିଳା ମହାବିଦ୍ୟାଳୟ କ୍ୟାଂପସର ପାଖାପାଖି । ପରିଚ୍ଛନ୍ନ, ସୁସଜ୍ଜିତ, ଲନ୍, ଫୁଲଗଛ, ତା'ର ରେଷ୍ଟୁରାଣ୍ଟଠାରୁ ଲାଇବ୍ରେରୀ ପର୍ଯ୍ୟନ୍ତ, ପେପୁ ମୋତେ ଦେଖାଇଲା । ସୁଶୃଙ୍ଖଳ, ପରିଚ୍ଛନ୍ନ । ତା'ର କ୍ଲାସ୍ ରୁମ୍‌କୁ ଆମେ ଗଲୁ । ଟିଚର ଦ୍ୱାରଦେଶରେ ଛିଡାହୋଇ ଗ୍ରିଟ୍ କଲେ । ମୋତେ ଚିହ୍ନା କରୁ ନ କରୁଣୁ, ସେ ରଂଜନଙ୍କୁ ପଚାରିଲେ, 'ସେ ଅକ୍ଷରର ଗ୍ରାଣ୍ଡ ମା' ନାଁ ?' ମୋର ଶାଢ଼ୀପିନ୍ଧା, ଗହଣାରୁ ବୋଧେ ଜାଣିପାରିଲେ । ଆମେ କ୍ଲାସଗୃହ ଭିତରକୁ ଗଲୁ । ମିଟିଂ ଆରମ୍ଭ ହେବା ଆଗରୁ ପେପୁ ମୋତେ ରୁମ୍ ସାରା ବୁଲାଇ କହିଦଉଥାଏ, କୋଉଠି କଣ ସବୁ ଅଛି । କିନ୍ତୁ ମିଟିଂ ବେଳକୁ ରୁମ୍‌ରେ ଛାତ୍ର-ଛାତ୍ରୀ କେହି ନଥିଲେ । ତା'ର କ୍ଲାସ୍ ଟିଚ୍‌ର୍ ସୁନ୍ଦରୀ, ସ୍ମାର୍ଟ । ରୁମ୍‌ର ବିରାଟ ବ୍ଲାକ୍‌ବୋର୍ଡରେ ଚିତ୍ର କରିଥାନ୍ତି-କାଗଜ ଅଙ୍କା ଚିତ୍ର ଛପେଇ ଥାନ୍ତି । "Swing on to third Grade" ଏହି ଚିତ୍ରରେ ଗୋଟିଏ ପାତିମାଙ୍କଡ଼ ଗଛ ଡାଳରେ ଝୁଲୁଥିବା ଅବସ୍ଥାରେ ତଳୁ ଉପରକୁ ଡେଉଁଛି । ସୁନ୍ଦର ପ୍ରତୀକଧର୍ମୀ, ପିଲାଙ୍କ ପାଇଁ ଉତ୍ସାହପ୍ରଦ । ପେପୁର ସାଂଗ ସାଇଲୀର ଆଉ ଗୋଟେ Section । ସେ ବି ଡାକିନେଇ ଥିଲା, 'ଗ୍ରାଣ୍ଡ ମା,' ଆମ କ୍ଲାସକୁ ଆସନ୍ତୁ ।' ମିଟିଂ ସରିଥାଏ । ମୁଁ 'ସାଇଲି' କ୍ଲାସରେ ପହଂଚିଲି । ତାର କ୍ଲାସ ଟିଚର ମଧ୍ୟ ତାଙ୍କ କ୍ଲାସ୍‌କୁ ଅର୍ଥପୂର୍ଣ୍ଣ ଭାବେ ସଜାଇଛନ୍ତି । ତାଙ୍କ ବ୍ଲାକ୍‌ବୋର୍ଡର ଚିତ୍ର-ଏଥିରେ ରହିଛି ଗୋଟେ ବଡ଼ ଖୋଲା ପ୍ୟାକେଟ୍‌ରେ ପପ୍‌କର୍ଣ୍ଣ-

ଏଗୁଡିକ ଫୁଟି ଫୁଟି  ବାହାରକୁ ଉଚ୍ଚ ଜାଗାକୁ ଛିଂଚାଡ଼ି ପଡୁଛନ୍ତି । ଲେଖା ହୋଇଛି-'ପପ୍ ଅପ୍‌ଟୁ ଥାର୍ଡ ଗ୍ରେଡ୍ ।' ୟେ ଶିକ୍ଷୟତ୍ରୀଙ୍କ ନିଜସ୍ୱ ପରିକଳ୍ପନା । ପେପୁର କ୍ଲାସରେ ଶିକ୍ଷଣୀୟ ବାଣୀ ସବୁ କାନ୍ଥରେ ଲେଖାହୋଇଛି । ଗୋଟିଏ କାନ୍ଥରେ କ୍ଲାସର କେତେଜଣ ଅତି ଭଲ ପିଲାଙ୍କ ନାମ ଲେଖାଅଛି । ଅଙ୍କରେ, ବିଜ୍ଞାନରେ, ସାଧାରଣ ଜ୍ଞାନରେ ତିନୋଟି ଲିଷ୍ଟହୋଇ ଝୁଲୁଛି । ଅଙ୍କ ଓ ସାଧାରଣ ଜ୍ଞାନରେ ଆମ ପେପୁର ନାମ ଲିଖିତ ଅଛି । ମିସ୍ କେତେଗୁଡ଼ିଏ କଥା ପ୍ୟାରେଣ୍ଟଙ୍କୁ ପଚାରୁଥାନ୍ତି । ପ୍ୟାରେଣ୍ଟମାନେ ବି ଭଲ ପ୍ରଶ୍ନସବୁ କରୁଥାନ୍ତି । କାହା କାହା ପ୍ୟାରେଣ୍ଟ ବି ଆସି ନ ଥାନ୍ତି । ଆମ ରଂଜନ ସବୁଠାରୁ ଭଲ ଓ ଅଧିକ ପ୍ରଶ୍ନ କଲେ ଓ ତାଙ୍କ ପ୍ରଶ୍ନଗୁଡ଼ିକୁ ସବୁ ପ୍ୟାରେଣ୍ଟ ପସନ୍ଦ କରୁଥାନ୍ତି । ମିସ୍ ବି ହସି ହସି ଆଗ୍ରହରେ ଉତ୍ତର ଦେଉଥାନ୍ତି । ଏଇ ଯେଉଁ ମିସ୍‌ମାନେ କ୍ଲାସ୍ ରୁମ୍‌କୁ ଏତେ ସୁନ୍ଦର ସଜାଇଥାନ୍ତି, ମାସକୁ ଥରେ ରବିବାର ସ୍କୁଲ୍ ଆସି ପ୍ୟାରେଣ୍ଟମାନଙ୍କ ସହ ସଂଯୋଗ ରକ୍ଷା କରନ୍ତି-ଦିନ ଆଠଟାରୁ ଦୁଇଟା ତିରିଶ ଯାଏ ପିଲାଙ୍କୁ ପଢ଼ାନ୍ତି-ପିଲାଙ୍କ ଦାୟିତ୍ୱ ନିଅନ୍ତି-ସେମାନେ କିନ୍ତୁ ଧନକୁବେର ଆମେରିକାରେ ଖୁବ୍ କମ୍ ବେତନ ପାଆନ୍ତି, ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କ ବେତନ ଅଳ୍ପ। ଦୁଇ ହଜାର ଡଲାର୍ ଭିତରେ । ଆମ ଦେଶ ତୁଳନାରେ ଅବଶ୍ୟ ଯଥେଷ୍ଟ ବେଶି । ମାତ୍ର ଆମେରିକାରେ କୌଣସି ଚାକିରୀରେ ଏତେ କମ୍ ବେତନ ପ୍ରାୟ ନାହିଁ । ଅଥଚ ଛାତ୍ରଛାତ୍ରୀଙ୍କର ବ୍ୟକ୍ତିଗତ ଜୀବନଠାରୁ ପାଠପଢ଼ା ଯାଏଁ, ସବୁର ଯତ୍ନ ଏମାନେ ନିଅନ୍ତି । ସ୍କୁଲ୍‌ର ଡାଇନିଂହଲ୍ ଦେଖିଲି । ପେପୁ ଦିନକୁ ଦେଢ଼ ଡଲାର ଦେଇ ସ୍କୁଲରେ ଖାଏ । ସେହି ସ୍କୁଲ୍‌ରେ କେତେକ ପିଲାଙ୍କୁ ମାଗଣା ଭୋଜନବି ଦିଆଯାଏ । ଯାହାଙ୍କ ପ୍ୟାରେଣ୍ଟଙ୍କ ରୋଜଗାର କମ୍ (ତା'ର ଗୋଟେ ନିର୍ଦ୍ଦିଷ୍ଟ ସୀମା ଅଛି । ମିଛ କହିଲେ ଚଳିବ ନାହିଁ, ନିରୀକ୍ଷଣ କରାଯାଇ ପାରିବ) ସେ ପିଲା ମାଗଣାରେ, ଟଙ୍କା ଦେଇ ଖାଇବା ପିଲାମାନଙ୍କ ସହ ଏକା ଖାଦ୍ୟ ଖାଇବ । ସ୍କୁଲ୍ ଶିକ୍ଷା ଆମେରିକାରେ ମାଗଣା-କିଛି ପଇସା ଦେବାକୁ ପଡ଼େ ନାହିଁ । ମୁଁ ମିଟିଂ ପରେ ଫେରିଲାବେଳେ ଗୋଟିଏ ସୁନ୍ଦର କରବୀର ବୁଦାରେ ଫୁଟିଥିବା ଫୁଲକୁ ହାତରେ ଧରିଲି-ପେପୁ ପାଟିକଲା-'ଡୋଣ୍ଟ ପ୍ଲକ୍, ଡୋଣ୍ଟ ପ୍ଲକ୍-ୟୁ ଉଇଲ୍ ବି ଆରେଷ୍ଟେଡ୍ ।' ମୁଁ ତୋଳିଲି ନାହିଁ । ଫୁଲ ଚାରିଆଡ଼େ, କେହି ଛିଣ୍ଡାଇ ପାରିବେ ନାହିଁ । ଆମେରିକାନ୍‌ମାନେ ଶୃଙ୍ଖଳିତ । ତେଣୁ ଖୁବ୍ ଶୃଙ୍ଖଳା ସବୁଠାରେ ବିରାଜମାନ ।

ଏହି ସ୍କୁଲର ନାମ 'ରୁବି ରେ ସ୍ୱିଫଟ୍ ଏଲିମେଣ୍ଟାରି ସ୍କୁଲ୍' ଗୋଟିଏ କ୍ଲାସ୍‌ରେ ତିରିଶ ଜଣ ଛାତ୍ରଛାତ୍ରୀ । ଶିକ୍ଷକଙ୍କର ମନଧ୍ୟାନ ଲାଭ କରନ୍ତି । ତାଙ୍କର ପରାମର୍ଶ-ଯଦି ତୁମେ ଶିକ୍ଷକ/ଶିକ୍ଷୟିତ୍ରୀଙ୍କୁ ପ୍ରଶ୍ନଟିଏ ପଚାରିବ, ତା' ହେଲେ ନିମ୍ନୋକ୍ତ ରୂପେ ପଚାର-

'Look at the teacher । (ଶିକ୍ଷକଙ୍କୁ ଚାହଁ)

Raise hand । (ହାତ ଟେକ)

Stay calm । (ଚୁପ୍‌ହେଇ ବସ)

Until teacher says your name । (ଟିଚର ତୁମ ନାମକୁ କହିବା ଯାଏ)

Then ask the question । (ତା' ପରେ ତୁମେ ପ୍ରଶ୍ନ ପଚାର)

ପିଲାଙ୍କୁ ଶୃଙ୍ଖଳିତ କରିବାର ଏକ ସଫଳ ମାର୍ଗ । କ୍ଲାସର କାନ୍ଥରେ ଲେଖା ହୋଇ ଝୁଲୁଥିବା Wall of pride ପୃଥିବୀ ମାନଚିତ୍ର ରହିଥିବ । ଦିଗନିର୍ଣ୍ଣାୟକ ଯନ୍ତ୍ର, ସ୍ୱରବର୍ଣ୍ଣ ଲେଖାଥିବ, ଥିବ ଡ଼େଲି ରୁଟିନ୍ ଓ ମିଟର ମାପ, ଏକ ଘଣ୍ଟା କାନ୍ଥରେ, ଏ ସବୁ ସତ୍ତ୍ୱେ କ୍ଲାସରୁମ୍‌ଟି ସଜ୍ଜିତ ଓ ପରିଚ୍ଛନ୍ନ ମନେହେବ । ପେପୁ କେତେ ସାଂଗସାଥୀଙ୍କୁ ଚିହ୍ନାଇଦେଲା । ଅଳ୍ପ ବୁଲାବୁଲି କରି ଆମେ ଘରକୁ ଫେରିଲୁ । ପେପୁ କ୍ଲାସ୍ ଦୁଇରେ ପଢ଼ିଲାବେଳେ ତାର କ୍ଲାସଟିଚର ପେପୁର ମାଆକୁ କହିଥିଲେ-'ଆପଣଙ୍କ ପୁଅଟିକେ ମୌନ, ଚୁପ୍‌ଚାପ୍ । ଆପଣ ତାକୁ ଅନ୍ୟ ପିଲାଙ୍କ ସହିତ, ବିଶେଷ କରି ଜଣେ, ଦି'ଜଣ ଭଲ ପିଲାଙ୍କ ସହିତ ସାଂଗ ହେବାକୁ ଖେଳିବାକୁ, ମିଶିବାକୁ, ସୁଯୋଗ ଦିଅନ୍ତୁ । ଏପରି କି ସେ ଜଣେ ଦି'ଜଣ ଭଦ୍ରଘରର, ଭଲ ପଢୁଥିବା ପିଲାଙ୍କ ନାଆଁ କହିଥିଲେ । ଗାରେଟ୍ ତା' ଭିତରୁ ଜଣେ । ମତେ ବି ଲାଗିଲା ପେପୁ ତା' ବୟସର ପିଲାଙ୍କଠାରୁ ଟିକେ ଆବେଗରେ କମ୍ । ମୋର ତିନି ନାତୁଣୀ ଖୁବ୍ ସ୍ନେହୀ ଓ ଆବେଗମୟ ହୋଇଥିଲା ବେଳେ ପେପୁ ଟିକେ ସନ୍ଦିଗ୍ଧ ଓ ନିଜକୁ ଠିକ୍‌ଭାବେ ପ୍ରକାଶ କରେ ନାହିଁ । ପ୍ରତି କ୍ଲାସରେ ତିରିଶିଟି ଲେଖାଁ ପିଲା ଓ ଶିକ୍ଷୟିତ୍ରୀ ପିଲାଙ୍କ ସହ ବେଶ୍ ଅନ୍ତରଂଗ । କାହା ସ୍ୱଭାବ କିପରି, କିଏ କଣ ଚାହେଁ, କଣ କଲେ ଭଲ ହେବ, ଏହା ଶିକ୍ଷୟିତ୍ରୀ ବିଚାର କରନ୍ତି-ଖାଲି ଯେ ପାଠ ଜାଣନ୍ତି ତା' ନୁହେଁ, ପିଲାଠି ଯାହା ଅଭାବ, ତା' ମଧ୍ୟ ଲକ୍ଷ୍ୟ କରନ୍ତି । ପେପୁ ବରାବର କିଛି ନା କିଛି ସ୍କୁଲ୍‌ରେ ଛାଡ଼ିଦିଏ । ଭୁଲିଯାଏ ।

ଦିନେ ପେପୁ ତା'ର ନୂଆ ଜିନ୍ସ କୋଟ୍ ପିନ୍ଧିକି ସ୍କୁଲ ଗଲା । ସେ ସ୍କୁଲରେ ସ୍କୁଲଡ୍ରେସ୍ ୟୁନିଫର୍ମ ନଥାଏ । ଯିଏ ଯାହା ପିନ୍ଧିପାରିଲା । ପେପୁ ସେଦିନ ଖେଳ ଟାଇମ୍‌ରେ ସ୍କୁଲର ଜିମ୍‌ରେ ତା' କୋଟ୍‌ଟି ଛାଡ଼ି ଆସିଲା । ମନେ ପଡ଼ିଲାରୁ ଫେରିଯାଇ ଖୋଜିଲା କିନ୍ତୁ ପାଇଲା ନାହିଁ । ମୁହଁ ଶୁଖାଇ ଘରକୁ ଆସିଲା-ଦୋଷକାରୀ, ମାଆ ବିରକ୍ତ ହେଲା । ମୁଁ ବି ବ୍ୟସ୍ତ ହେଲି । କେତେ ଭଲ ଜନିଷଟିଏ, ଦାମୀ ମଧ୍ୟ । ସେଦିନ କନି ହଜିବା କଥା ଜାଣିଲା ବେଳକୁ ସ୍କୁଲ୍ ଛୁଟି ହୋଇ ସାରିଛି । ପରଦିନ କନି ଠିକ୍ କଲା, ପେପୁକୁ ଆଣିବାକୁ

ଗଲାବେଳେ ତା'ର ଟିଚର୍‌କୁ କହିବ । କିନ୍ତୁ ପରଦିନ ସ୍କୁଲ୍‌ରେ ପହଂଚିଲା ବେଳକୁ ଟିଚର ତା'ର କୋଟ୍‌ଟି ତାକୁ ଦେଲେ । ଖୁସି ହେଲେ ଓ ତାରିଫ୍ କଲେ ଯେ, ସେହି କୋଟ୍‌ର ଭିତରପଟେ ପରିଧାନକାରୀ ନାମ ଲେଖିବାର ଏକ ଚିଟ୍ ଲାଗିଛି । ପେପୁ କୋଟ୍ କିଣାହେବା ଦିନକ ଭିତରେ ସେଥିରେ ନାଆଁ ଲେଖିଦେଇଥିଲା । ଆମେ ଜାଣି ନଥିଲୁ । ନାଆଁ ଲେଖାଥିଲା ବୋଲି ଉପର କ୍ଲାସ୍ ପିଲାଟିଏ ତା'କୁ ପାଇ ଟିଚରକୁ ଦେଇଥିଲା । ତେଣୁ ଆମ ପେପୁ କିଛି କମ୍ ହୁସିଆର୍ ନୁହଁ ।

ଆର୍ଲିଂଟନ୍ ୟୁନିଭ୍‌ରେ ଥିବା ବିରାଟ ଲାଇବ୍ରେରୀରେ ଏକ ଶିଶୁ ବିଭାଗ ଅଛି । ପେପୁ ନିୟମିତ ସେଠାରୁ ବହିଆଣେ । ପଢ଼େ ଓ ଫେରାଇ ଦିଏ । ଲାଗ୍ ଲାଗ୍ ଦୁଇବର୍ଷ ହେଲାଣି ସେ ଆର୍ଲିଂଟନ ସହରର ବହୁ ସଂଖ୍ୟକ ପୁସ୍ତକ ପାଠ କରିଥିବା ଅଳ୍ପ କେତେକ ପିଲାଙ୍କ ଭିତରେ ଗଣ୍ୟ ହେଉଛି ଓ ସହରର ମୁଖ୍ୟ ବିପଣୀରେ ମାଗଣାରେ ଖାଦ୍ୟ ଖାଉଚି-ସ୍କେଟିଂ ଶିଖୁଚି ଓ ୟୁନିଭରୁ ପ୍ରାଇଜ୍ ପାଉଛି । ବିଶେଷ ଆବେଗ ନଥିବା ପେପୁ କିନ୍ତୁ ମୁଁ ଫେରିଆସିବାର ଦିନ ପାଖେଇ ଆସିବାରୁ ମୁଁ ଏକୁଟିଆ ଥିଲାବେଳେ କେତେଥର କହିଛି, 'ବୋଉ, ତୁମେ ଚାଲି ଯାଉଛ । ଆଇ ଆମ୍ ନଟ୍ ହାପି, ବୋଉ, ପ୍ଲିଜ୍ ଡୋଣ୍ଟ ଗୋ ବ୍ୟାକ୍ ।'

ପେପୁ ପ୍ରଥମେ ମୋ ସହିତ ବାଦ ଈର୍ଷା କରୁଥିଲା । ମୂଳରୁ ସନ୍ଦେହ ଚକ୍ଷୁରେ ଦେଖୁଥିଲା । ଚାରି ବର୍ଷର ହୋଇଥିଲା ଆମେରିକା ଆସିଛି, ଆମକୁ କାହାକୁବି ମନେରଖି ନାହିଁ । କାରଣ ତା' ମାଆ ଚାକିରୀ କରିଥିବାରୁ ରାଉରକେଲାରେ ଥିବାରୁ, ସେ ପ୍ରାୟ ଆମ ଘରକୁ ଆସିପାରେନି । ତା' ମାଆର ଛୁଟିହେଲେ ଦୁହେଁ ଯାକ ରଂଜନଙ୍କ ପାଖକୁ କଲିକତା ଚାଲିଯାଆନ୍ତି । ତେଣୁ ପେପୁ ପ୍ରକୃତରେ ଆମ ପାଖେ ବେଶି ଚଳି ନାହିଁ । ଏବେ ପୁଣି ଚାରି ବର୍ଷ ହେଲାଣି ବାପା, ମାଆ ଛଡା ଆଉ ଯେ କେହି ନିଜ ଲୋକଙ୍କୁ ଦେଖିଲା ନାହିଁ । ତେଣୁ ସେ ଟିକେ ଅଲଗାପ୍ରକାର ବ୍ୟବହାର କରୁଥିଲା । ଥରେ ଆମେ ଆର୍ଲିଂଟନ୍ ଲେକ୍‌କୁ ବୁଲିବାକୁ ଗଲାବେଳେ ପେପୁ ତା' ବାପାଙ୍କୁ ହଠାତ୍ କହିଲା, ଯେ ତା' ମାଆ ତାକୁ ଆଜିକାଲି ଭଲ ପାଉନି । କାରଣ ପଚାରିଲାରୁ କହିଲା 'ତା' ମାଆ ବୋଉକୁ ଭଲ ପାଉଛି ।' ରଂଜନ ବୁଝାଇଲେ । 'ମାମା ବୋଉଙ୍କୁ ଅଧା ଓ ତୋତେ ଅଧା ଭଲ ପାଉଛି-ଫିଫ୍‌ଟି ଫିଫ୍‌ଟି ।' ପେପୁ ପ୍ରତିବାଦ କଲା, 'ସି ଡଜ୍‌ନଟ୍ ଲଭ୍ ମି । ସି ହ୍ୟାଜ୍ ମେଡ୍ ଇଟ୍ ସେଭେଣ୍ଟିଫାଇଭ୍ । ଟ୍ୱେଣ୍ଟିଫାଇଭ୍ ।' ଆଠବର୍ଷର ପିଲା, ତା' କଥା ଦେଖି କନି ତାକୁ ବୁଝାଇ ଦେଲା ଯେ, ବାପା ମାଆ ଅଲଗା, ପୁଅଝିଅ ଅଲଗା, ମୁଁ କହିଲି 'ସବୁଲୋକେ ପୁଅଝିଅଙ୍କୁ ବେଶି ଭଲ ପାଆନ୍ତି ।' ପେପୁ ବୁଝିଲାକି ନାହିଁ କେଜାଣି ଚୁପ୍ ରହିଲା, ଏଣେ ସେକଥା ନ ମାନିଲେ,

କନି ବିରକ୍ତ ହୁଏ ଓ କହେ 'ମୋ ବୋଉ ଆସିବ, ମୁଁ ତା' ସାଂଗେ ଇଣ୍ଡିଆ ଚାଲିଯିବି-ପେପୁ ମୋତେ ବହୁତ କଷ୍ଟ ଦେଉଛି ।' ପେପୁ ଏକଥା ମନରେ ରଖିଥିଲା ଓ ଡ଼ରୁଥିଲା । ମୁଁ ଗଲାପରେ କନି ଥରେ ଚିଡ଼ିଉଠି ୟୁନିଭ୍ ଗଲାବେଳେ କହିଗଲା, 'ଏଥର ମୁଁ ନିଶ୍ଚେ ବୋଉ ସାଂଗେ ଚାଲିଯିବି ।' ପେପୁ ବଡ଼ ଆକୁଳ ହୋଇ ମୋତେ କହିଲା, 'ବୋଉ, ପ୍ଲିଜ୍, ମାମାକୁ କୁହ, ମୁଁ କଥା ମାନିବି'-ମୁଁ କହିଲି, 'ଯାହା ହେଲେବି ପେପୁ ତୁ ନିଶ୍ଚିନ୍ତ ରହ-ତୋ ମାଆ ମୋ ସାଂଗେ ଯାଇ ଯଦି ପ୍ଲେନରେ ବି ବସିଯିବ, ତଥାପି ମୁଁ ତାକୁ ଭିଡ଼ିଭିଡ଼ି ଆଣି ଘରେ ତୋ ପାଖରେ ଛାଡ଼ିବି । ତୋ ଭଳି ପିଲାକୁ ଛାଡ଼ି ସେ ଚାଲିଯିବ-ମୁଁ ତାକୁ ଜମ୍ମାରୁ ନେବିନି ।' ସେଇଦିନଠାରୁ ପେପୁ ମୋ ପ୍ରତି ବହୁତ ଆକୃଷ୍ଟ ହୋଇ ପଡ଼ିଲା । ଖେଳିବାକୁ, ପହଁରିବାକୁ, ଲାଇବ୍ରେରୀକୁ, ୟୁଆଡ଼କୁ ଘରୁ ବାହାରିଲେ କହେ 'ବୋଉ ଆସ' ତା' ପରେ ମୋ ସହିତ ଥଟ୍ଟା, ଟାପରା, ଖେଳ ଚାଲିବ ଓ କ୍ୟାରମ ଲୁଡୁ କ୍ରିଷ୍ଟାଲ୍ ଖେଳ ଚାଲିବ-ଚାଲିବ, ମୋତେ ଛାଡ଼ିବ ନାହିଁ । ମାଆଠୁ ଗାଳି ଖାଇଲେ ମୋତେ ଛାଡ଼ିବ । ମୁଁ ଭାବେ ପେପୁ ମୋତେ ପ୍ରଥମରୁ ସନ୍ଦେହ କରୁଥିଲା ବୋଲି ସିନା ମୁଁ ଏତେ ଗୁଡ଼ାଏ କବିତା ବହି ଲାଇବ୍ରେରୀରୁ ଆଣି ପଢ଼ି ପାରିଲି ! ନ ହେଲେ ତ ସେ ମୋତେ ଆଦୌ ଛାଡ଼ି ନ ଥାନ୍ତା ।



# ମାର୍କିନ୍ ଗାନ୍ଧି: ମାର୍ଟିନ୍ ଲୁଥର କିଂଗ୍

'ଗାନ୍ଧୀ' ଜଣେ ବ୍ୟକ୍ତି ନୁହଁନ୍ତି-ସେ ଗୋଟିଏ ଚେତନା-ବିଶ୍ୱବ୍ୟାପୀ ପ୍ରସାରିତ ସେହି ଚେତନା-ସ୍ୱାଧିକାର ପ୍ରତିଷ୍ଠା ଓ ଅହିଂସ ଆନ୍ଦୋଳନ ନିମିତ୍ତ ମୁକ୍ତି-ଯୁଦ୍ଧକୁ ସୂଚିତ କରିଥାଏ । ଆର୍ଲିଂଟନ ସହରର ଚିଲ୍ଡ୍ରେନ୍ ଲାଇବ୍ରେରୀକୁ ଥରେ ଯାଇଥିଲି । ଯଦିଓ ୟୁନିଭ ଲାଇବ୍ରେରୀକୁ ଅନେକଥର ଯାଇଛି ଓ ସେଠାରେ ଶିଶୁ ବିଭାଗ ଥାଏ । କିନ୍ତୁ ଏଇଟା ସ୍ୱତନ୍ତ୍ର ଭାବେ ଶିଶୁଙ୍କ ପାଠାଗାର । ପେପୁ ଜିଦ୍ ଧରିଛି, କଣ କରାଯିବ ? କନି ପେପୁ ପାଇଁ କଣ ସବୁ ବହି କିଣିବ ଖୋଜିଖୋଜି ଦେଖୁଛି । ତେବେ ମୁଁ କ'ଣ କରିବି, ପ୍ରକାଣ୍ଡ ଲାଇବ୍ରେରୀ ଭିତରେ ମୁଁ 'ଜୀବନୀ ବିଭାଗ' ଦେଖିଲି । 'ମାର୍ଟିନ୍‌ଲୁଥର କିଂଗ' ଆମେରିକାର ଗାନ୍ଧୀ-ତାଙ୍କ ଜୀବନୀ ଗ୍ରନ୍ଥ, କିଶୋର ମାନଙ୍କ ପାଇଁ ଚିତ୍ର ସହ ଖୁବ୍ ଭାବୋଦ୍ଦୀପକ ଶୈଳୀରେ ରଚିତ । ପଢ଼ିବାକୁ ବସିଗଲି । ସାରାଦିନ ତୁମେ ବି ଲାଇବ୍ରେରୀ ମାନଙ୍କରେ ବହିଧରି ପଢ଼ିପାର । ଇସ୍ୟୁ କରିନେବା ପାଇଁ କାର୍ଡ ଦରକାର । ପଢ଼ିବା ପାଇଁ ବାଧା ନାହିଁ । ମୁଁ ପଢୁଛି-ପାଖାପାଖି ଦେଢ଼ଘଣ୍ଟା ବିତିଯିବ । କନି ଓ ପେପୁ ମତେ ଅପେକ୍ଷା କରିଛନ୍ତି । ବହିଟି ଶେଷ ନକଲାଯାଏଁ ମନ ଛାଡୁ ନାହିଁ । ଆଶ୍ଚର୍ଯ୍ୟ ! କେତେ ବେଶୀ ଆକର୍ଷଣୀୟ ଭାବେ ଜୀବନଟି ଚିତ୍ରିତ ! ୧୯୬୮ ମସିହାରେ ଅଣଚାଳିଶ ବର୍ଷରେ ନିହତ ହୋଇଥିଲେ ଏହି ନିଗ୍ରୋ ନେତା । ତା ପୂର୍ବରୁ ପଇଁତ୍ରିଶ୍ ବର୍ଷ ବୟସରେ ୧୯୬୪ ମସିହାରେ ନୋବେଲ ଶାନ୍ତି ପୁରସ୍କାର ସେ ପ୍ରାପ୍ତ ହୋଇଥିଲେ ।

କଳା ଲୋକଙ୍କ ନାଗରିକ ଅଧିକାର ପାଇଁ ସେ ଅହିଂସ ଆନ୍ଦୋଳନ କରି କାରାବରଣ କରିଥିଲେ ଓ ପ୍ରଥମଥର କାରାଗାରରୁ ତାଙ୍କୁ ମୁକୁଳାଇ ଥିଲେ ରବର୍ଟ ଓ ଫିଜେରାଲ୍ଡ୍ କେନେଡ଼ି । ୧୯୬୩ ରେ ସେ ୱାଶିଂଟନ ଡି.ସିରେ ଆବ୍ରାହମ୍‌ଲିଂକନ୍ ସ୍ମୃତିସୌଧ ସାମ୍ନାରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ । ୧୯୮୩ବର୍ଷ ଠାରୁ ତାଙ୍କ ଜନ୍ମ ଦିବସ ପନ୍ଦର ଜାନୁଆରୀ ଦିନକୁ ଆମେରିକା ସରକାର ଜାତୀୟ ଛୁଟି ଦିବସ ରୂପେ ପାଳିତ କରୁଛନ୍ତି । ଲିଂକନ୍ ମେମୋରିଆଲରୁ ବକ୍ତବ୍ୟରେ 'ନିଜର ସ୍ୱପ୍ନ'କୁ ବର୍ଣ୍ଣନା କଲେ ମାର୍ଟିନ୍ ଲୁଥର୍-'ନାଗରିକ ଅଧିକାର' ତାଙ୍କର ସ୍ୱପ୍ନ । କଳା ଲୋକଙ୍କ ଅହିଂସା ଯୁଦ୍ଧ'-ଏହିଠାରେ ତାଙ୍କର ଯୁକ୍ତିଯୁକ୍ତ ବକ୍ତବ୍ୟର କାରୁଣ୍ୟରେ ଗୋରା ଲୋକେ ବି କାନ୍ଦି ପକାଇ ଥିଲେ ।

ଜନ୍ କେନେଡ଼ି ରାଷ୍ଟ୍ରପତି ଥିବାବେଳେ ଓ ତା' ପୂର୍ବରୁ ମଧ୍ୟ ମାର୍ଟିନ୍ ଲୁଥର କିଂଗ୍‌ଙ୍କର ଏଇ 'ସ୍ୱାଧିକାର ଦାବୀ' ପ୍ରତି ଖୁବ୍ ସହାନୁଭୂତିଶୀଳ ଥିଲେ । ତାଙ୍କର ଅକାଳ ମୃତ୍ୟୁପରେ ପରବର୍ତ୍ତୀ ରାଷ୍ଟ୍ରପତି ଲିଣ୍ଡନ୍ ଜନ୍‌ସନ୍ ୧୯୬୫ ମସିହାରେ କଳା ଲୋକଙ୍କୁ ଭୋଟ ଅଧିକାର ଦେଲେ । ମାର୍ଟିନ୍ ଲୁଥରକିଂଗ୍‌ଙ୍କର ନିଧନ ହୋଇଥିଲା । ମାତ୍ର କଳା ଲୋକଙ୍କର ମର୍ଯ୍ୟାଦା ପ୍ରତିଷ୍ଠା ହେଲା । ଆମେରିକାର ଜାତୀୟ ଜୀବନରେ ଗୋରା ସହ କଳାଲୋକ ଆଇନତଃ ସମାନ ଅଧିକାର ପାଇଲେ ।



# କ୍ୟାଂପସ୍‌ରେ ଚର୍ଚ୍ଚିତ ଦୁର୍ଘଟଣା

କ୍ୟାଂପସ୍‌ରେ ରହିଲା ଦିନତକ, ମନମୁତାବକ ଓଳିଏ ରାନ୍ଧିବା, ଅପରାହ୍ନ ଛଅଟାରେ ଲାଇବ୍ରେରୀ ଯିବା, ଆଠଟାରେ ସାଂଧ୍ୟଭ୍ରମଣରେ ଯିବା, ମଝିରେ ମଝିରେ ସାଙ୍ଗ ସାଥୀଙ୍କ ଘରେ ରାତ୍ରିଭୋଜନ ନିମନ୍ତ୍ରଣ ରକ୍ଷା କରିବା-କେବେ ଆସାମୀ ତ କେବେ ତେଲୁଗୁ ଖାନା କେବେ ଉତ୍ତର ପ୍ରଦେଶୀ ତ କେବେ ଓଡ଼ିଆ ଖାନା-କ୍ୱଚିତ୍ କେବେ ପାଶ୍ଚାତ୍ୟ ଖାଦ୍ୟ, ବିଦେଶୀ ବନ୍ଧୁଙ୍କ ଘରେ, ନିୟମିତ ଚାଲିଥିଲା ।

ଯା' ଭିତରେ ଘରେ ଟି.ଭି.ର ଦୃଶ୍ୟ ପୁଣି ଖବରକାଗଜର ନୂଆ ପ୍ରକାର ଖବର ମତେ ବେଶ୍ ଆନ୍ଦୋଳିତ କରେ । ଖବର କାଗଜ ସଂବାଦ ଗୁଡିକ ଯେମିତି ନୂଆ ଓ ଅସ୍ୱାଭାବିକ, ଆମେରିକାର ଆଇନ୍ ମଧ୍ୟ ସେତିକି ଦୃଢ଼ । ସେତିକିବେଳେ ଆର୍ଲିଂଟନ୍ ସହରରେ ଏକ ଘଟଣା ଘଟିଲା । ଭୁବନେଶ୍ୱର ସହର ଓ ଉତ୍କଳ ବିଶ୍ୱ ବିଦ୍ୟାଳୟ, ବାଣୀବିହାର ଭଳି ଆଲିଂଟନ୍ ସହର ଓ ବିଶ୍ୱବିଦ୍ୟାଳୟ ଅବସ୍ଥିତ । ସେଠାରେ ଏହି ଘଟଣା ଖୁବ୍ ବେଶି ଚର୍ଚ୍ଚା ହେଲା । ଆର୍ଲିଂଟନ୍ ସହରର ସାଣ୍ଡିଆ ସେଲର୍ ନାମକ ଏକ ଶତେଇଶ ବର୍ଷର ଝିଅ (ବୃତ୍ତିଜୀବନୀ ଅବଶ୍ୟ) ରାତି ବାରଟାରେ ଘରକୁ ଫେରୁଥିଲା । 'ବୃତ୍ତି' କହିଲେ 'ଚାକିରୀ' ଆଉ ଆମଆଡ ଭଳି ଚାକିରୀର ଏମିତି ଗ୍ରେଡେସନ୍ ନାହିଁ । ଏପରି କି ଦୋକାନରେ କିଣାବିକା କଲେ ବି ଜଣେ ସ୍ୱଚ୍ଛନ୍ଦରେ ଚଳିଯାଇ ପାରିବ । ହଁ, ସାଣ୍ଡିଆ ମେଲ୍‌ର ଫେରୁଥିଲା ଘରକୁ । ଘରେ ଗ୍ୟାରେଜ ଭିତରେ ଗାଡ଼ି ପୂରାଇ ଦେଇଛି । ସକାଳୁ ଉଠି ଗାଡି କାଢ଼ିବାକୁ ଯିବାବେଳକୁ ଦେଖିଲା, ଗାଡିର ସାମ୍ନାପଟେ ଜଣେ ଲୋକର ଶବ ଲାଗିଛି, ଅର୍ଥାତ୍ ସେ ଦୁର୍ଘଟଣା ଘଟାଇ, ଶବଟି ଗାଡିର ଆଗପଟେ ଲାଗିଥିବା ଅବସ୍ଥାରେ ଗାଡି ଆଣି ଗ୍ୟାରେଜ୍‌ରେ ପହଁଞ୍ଚିଛି । ଆମେରିକା ଦେଶର ଆଇନ୍ ଖୁବ୍ କଡା ଓ ଖସିଯିବାର ଉପାୟ ନାହିଁ । ତଦନ୍ତ ଚାଲିଲା । ଜଣାଗଲା ସାଣ୍ଡିଆ ମେଲର୍ ପ୍ରଚୁର ମଦ ପିଇଥିଲା ଅଥଚ ତା'ର ଏଇ ଦୁର୍ଘଟଣା ଘଟାଇବା ସାଧାରଣ ଆକ୍ସିଡେଣ୍ଟ ନୁହଁ । ଏକ କ୍ରୁର କର୍ମ । ଆମେରିକାର ଆଇନ୍ ଅନୁସାରେ ସାଣ୍ଡିଆ ମେଲର୍‌ର ବିଚାର ହୋଇ ଆଠ ଦଶ ଦିନରେ ଦଣ୍ଡ ମିଳିଲା -ତିରିଶ ବର୍ଷ କାରାବାସ । ଅର୍ଥାତ୍ ଯାବଜ୍ଜୀବନ କାରାଦଣ୍ଡ ଠାରୁ କୌଣସି ଗୁଣରେ କୋହଳ ନୁହେଁ । ଯଦିଓ ତା' ଗାଡିରେ ଧକ୍କାଲାଗି ମରିଥିବା ଲୋକଟି ଗୋଟେ ସାଧାରଣ ଭିକାରୀ, ଯାହାକୁ ଆମେରିକାରେ 'ବାସହୀନ' କୁହାଯାଏ ।

ଆଉ ଗୋଟିଏ ବିଷୟ ବଡ଼ ଚର୍ଚ୍ଚାର ଖୋରାକ୍ ଯୋଗାଇଥିଲା । କ୍ଲାରା ହାରିସ୍ ନାମକ ମହିଳା ଗୋଟେ ଅଦ୍ଭୁତ କାଣ୍ଡ ଘଟାଇଥିଲେ । ତାଙ୍କ ସ୍ୱାମୀଥିଲେ ଆଇନ୍‌ଜୀବୀ ଓ କ୍ଲାରା ଥିଲେ ଦାନ୍ତ ଡାକ୍ତର । ସେ ଆବଶ୍ୟ ସ୍ୱାମୀଙ୍କ ଦ୍ୱିତୀୟ ପତ୍ନୀଥିଲେ । କ୍ରମଶଃ ଦଂପତ୍ତିଙ୍କ ମଧ୍ୟରେ ବିଭେଦ ସୃଷ୍ଟିହେଲା ଓ କ୍ଲାରା ସ୍ୱାମୀଙ୍କ ବିଶ୍ୱାସଘାତକତାର ପ୍ରମାଣ ପାଇଲେ । ସ୍ୱାମୀ ଅନ୍ୟ ନାରୀର ପ୍ରେମାବଦ୍ଧ ଓ ସାନ୍ନିଧ୍ୟାଭିଳାଷୀ । କ୍ଲାରା ଏକ ଅଦ୍‌ଭୁତ ଉପାୟରେ ସ୍ୱାମୀଙ୍କୁ ହତ୍ୟାକଲେ । ଦିନେ ଅପରାହ୍ନରେ କ୍ଲାରା ଘରକୁ ଫେରିଲା ପରେ ସ୍ୱାମୀଙ୍କ ସହ ବଜାର ଯିବାର ଯୋଜନା କଲେ, ସ୍ୱାମୀବି ବାହାରିଲେ । ଆମେରିକାରେ ଜନଜୀବନରେ ଗୋଟିଏ କଥା ସତ୍ୟ, ତା' ଭଲ ହଉ ବା ମନ୍ଦ ହଉ, କେହି ପଡ଼ୋଶୀ କାହା ଦୈନନ୍ଦିନ ଜୀବନରେ ଅଂଶ ଗ୍ରହଣ କରନ୍ତି ନାହିଁ । ବିନା ନିମନ୍ତ୍ରଣରେ କେହି କାହା ଘରକୁ ଆସନ୍ତି ନାହିଁ । ମୂଳତଃ ସେମାନଙ୍କ ପାଖରେ ସମୟ ଅଭାବ । ତେଣୁ ନିଜ ସମସ୍ୟାକୁ, ଭଲମନ୍ଦକୁ ନିଜେ ସଂଭାଳିବାକୁ ହୋଇଥାଏ । କ୍ଲାରା ଗ୍ୟାରେଜ୍‌ରୁ ଗାଡି କାଢ଼ିଲେ-ସ୍ୱାମୀ ବସିବାକୁ ଅପେକ୍ଷା କରିଛନ୍ତି । ଘର ସାମ୍ନା ସେହି ନିରୋଳା ରାସ୍ତାରେ କ୍ଲାରା ସ୍ୱାମୀଙ୍କ ଉପରେ ଗାଡ଼ି ମଡ଼ାଇ ଦେଲେ-ସ୍ୱାମୀ ଆତ୍ମରକ୍ଷା ପାଇଁ ଯେତେ ଉପାୟକଲେ, ଦୌଡ଼ାଦୌଡ଼ି କଲେ, ଲାରା ଦବିଲେ ନାହିଁ । ଲାଗ୍ ଲାଗ୍ ସାତଥର ଗାଡ଼ି ଚଢ଼ାଇ ଶେଷକୁ ସ୍ୱାମୀଙ୍କ ଲାସ୍ ଦେଖିଲାପରେ ଶାନ୍ତ ହେଲେ । ଅବଶ୍ୟ ଆମେରିକାର ଆଇନ ତାଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରିବାର ବ୍ୟବସ୍ଥା କରିବା ସ୍ୱାଭାବିକ ।

ଗୋଟିଏ ଶିଶୁର ମୃତ୍ୟୁରେ ସମସ୍ତେ ହାୟ ହାୟ କଲେ । ଆମେରିକା ଦେଶରେ ଚିକିତ୍ସାବିଦ୍ୟାର ତୁଙ୍ଗ ବିକାଶରେ କ୍ୟାନସର୍‌ରୋଗୀ ବାଳକ ବାଳିକା ବି ସ୍କୁଲରେ ନିୟମିତ ପଢୁଛନ୍ତି । କିନ୍ତୁ କେତେବେଳେ ଅବହେଳାର ଶିକାର ହୋଇ ଶିଶୁଟିଏ ମୃତ୍ୟୁ ବରଣ କଲେ, ଜାଗିଉଠେ ଚତୁର୍ଦ୍ଦିଗ । ଆମେରିକା ଜନସଂଖ୍ୟାକୁ ବଢ଼ାଇବାକୁ ଚାହେଁ । ତରୁଣ ତରୁଣୀ ପିଲାଜନ୍ମ କରିବାକୁ ବିମୁଖ । ଯଦିଓ ସେପ୍ଟେମ୍ବର ଏଗାରର ସନ୍ତ୍ରାସବାଦୀ ଆକ୍ରମଣ ପରେ ଆମେରିକାବାସୀ ଅଧିକ ସଚେତନ ହୋଇଛନ୍ତି ଓ ପତିପତ୍ନୀ ପିଲାଟିଏ ପାଇବାର ଆଗ୍ରହକୁ ବଢ଼ାଇଛନ୍ତି । ଆମେରିକା ସରକାର ତା ଭୂମିରେ ଜନ୍ମିତ ଯେ କୌଣସି ଜାତିର ଶିଶୁ ନିମିତ୍ତ ପାଂଚ ବର୍ଷ ଯାଏଁ ମାସିକ ଦୁଇଶହ ଡଲାର ଦେଇଥାଏ-ଶିଶୁର ଖାଦ୍ୟପୁଷ୍ଟିପାଇଁ । ସେହି ଦେଶରେ ଗୋଟିଏ ଆଠମାସର ଶିଶୁ ଅବହେଳାରେ ମୃତ୍ୟୁ ବରଣ କରିବା, ଦାରୁଣ ଦୁର୍ଦ୍ଦଶା ନୁହେଁ ତ ଆଉ କ'ଣ ?

ଘଟଣାଟି ଏହିପରି । ସେଠାରେ ଥିବା 'ଡେ କେୟାର୍' ଗୁଡ଼ିକ ବେଶ୍ ଦାମୀ । ପିଲାଟିର ହେପାଜତ ପାଇଁ ବାପାମାଆଙ୍କୁ ଖୁବ୍ ଅର୍ଥ କ୍ରେଚ୍‌କୁ ଦେବାକୁ ପଡିଥାଏ । କ୍ରେଚମାନଙ୍କ ବି ଗାଡ଼ିରେ (କ୍ରେଚ୍ ବସ୍‌ରେ) ପିଲାଙ୍କୁ ନବା ଆଣିବା କରିବାର ବ୍ୟବସ୍ଥା ଥାଏ । କାହାର ବାପା କିମ୍ବା-ମାଆ ମଧ୍ୟ ନବା ଆଣିବା କରନ୍ତି । 'ମ୍ୟାକି' ନାମରେ ଶିଶୁଟିଏ କ୍ରେଚ୍ ଆସିଚ଼ି । ଛୋଟ ପ୍ରାମ୍ ଭଳି ଚୌକିରେ ବନ୍ଧା ହୋଇ ଶିଶୁମାନେ ଗାଡ଼ିରେ ବସନ୍ତି । ସେ ଚୌକିଟି ବି ଗାଡ଼ିର ସିଟ୍‌ରେ ବକଲ୍ସରେ ବନ୍ଧା ହୋଇଥାଏ । ସ୍କୁଲର ଲୋକେ ଡ୍ରାଇଭର ସମେତ, ପିଲାଙ୍କୁ ଓହ୍ଲାଇ ନେବାର ଦାୟିତ୍ୱରେ ଥିବା ଲୋକେ ମ୍ୟାକି କୁ ଓହ୍ଲାଇବାକୁ ଭୁଲିଯାଇଛନ୍ତି । ଖରାଦିନ । ଗାଡ଼ି ଭିତରେ ବନ୍ଦ ହୋଇ ଖରାରେ ଭୋକ ଶୋଷରେ ମ୍ୟାକି ରହିଛି । କ୍ରେଚ୍‌ରୁ ବସ୍-ଘରକୁ ଫେରାଇ ନେଲାବେଳକୁ, ବସ୍ ଡ୍ରାଇଭର ଓ ବଡ଼ ପିଲାଏ ଦେଖିଲେ 'ମ୍ୟାକି'ର ମୃତଦେହ । ଚୌକିରେ ଲାଗିଛି ମ୍ୟାକିର ଦୁଧ ବୋତଲ, ବ୍ୟାଗ୍, ଖାଦ୍ୟ ଓ ପୋଷାକରେ ଭର୍ତ୍ତି । କିନ୍ତୁ ମ୍ୟାକି ବଂଚିନାହିଁ । ଏହି ମର୍ମନ୍ତୁଦ ଘଟଣାଟି ସେଠାରେ ଖୁବ୍ ସହାନୁଭୂତି ଉଦ୍ରେକ କରାଇଥିଲା । ପୁଣି ମୋ ଥିଲାବେଳେ ସେଇ ଅଗଷ୍ଟ ମାସରେ ଗୋଟିଏ ମର୍ମନ୍ତୁଦ ଘଟଣା ଘଟିଥିଲା । ମାଆଟିଏ ଛଅମାସର ଶିଶୁକୁ ଗାଡ଼ିରେ ଧରି ମାର୍କେଟ ଗଲା । ଛୁଆକୁ ଉଠାଇବ-ଗାଡ଼ିରୁ ଠେଲାଗାଡ଼ିଟି ଖୋଲିବ, ଠେଲାଗାଡ଼ିକୁ ଠେଲି ଠେଲି ଦୋକାନ ଭିତରକୁ ଯିବ-ମାତ୍ର ଗୋଟିଏ ଦୁଗ୍ଧକ୍ୟାନ୍ ଆଣିବା ପାଇଁ ! କେବଳ ଗୋଟିଏ କ୍ଷୀର ବଟଲ ଚାରି ଲିଟିରିଆ ବୋତଲଟିଏ ଆଣିବ । ଆଉ କିଛି ସଉଦା କିଣିବାର ନାହିଁ । ଏଣେ ଗାଡ଼ି ଭିତରେ ଛୁଆ ବି ଶୋଇ ପଡ଼ିଛି । ଦୋକାନ ସାମ୍ନାରେ ଗାଡ଼ି ରଖି ମାଆ ଭାବିଲା, ଯାଉଚି, ଦଶ ମିନିଟ୍‌ରେ ତ ଚାଲି ଆସିବି । ଗାଡ଼ିର ଏୟାର କଣ୍ଡିସନର୍ ବି ଶୀତଳ ଥିବ । ଅତଏବ ଗାଡିରୁ ମାଆ ଓହ୍ଲାଇଗଲା । ଖରାଦିନ, ବାହାରେ ଗାଡି ପାର୍କିଂ । ଆଶ୍ଚର୍ଯ୍ୟ ! ମାଆ ଭୁଲି ଯାଇଚି । ସଉଦା କରିଚି, ସାଂଗସାଥୀ ଦେଖା ହୋଇଛନ୍ତି । କଥା ହେବାଭିତରେ ଛୁଆଟିକୁ ଛାଡ଼ି ଆସିଚ଼ି ଗାଡ଼ି ଭିତରେ ବୋଲି ଭୁଲି ଯାଇଚି । ପହପଟିଆ ଖରା ।

ଦୁଇ ଘଣ୍ଟା ପରେ ମାଆ ଫେରିଚ଼ି । ଖିଆଲ ପଡ଼ିଚ଼ି ଗାଡ଼ି ଖୋଲିଲା ବେଳେ ଯେ ସେ ପିଲାଟିକୁ ଛାଡ଼ି ଯାଇଚି । କିନ୍ତୁ ପିଲାଟି ନିଦ୍ରାରୁ ଚିରନିଦ୍ରାର ରାଜ୍ୟକୁ ଚାଲିଗଲାଣି ସେତେବେଳକୁ !

ଏ ସବୁ ଦୁର୍ଘଟଣା ସତ, ମାତ୍ର ଏଥିରୁ ଆମେରିକାର ଜୀବନଶୈଳୀ, ଲୋକଙ୍କ ବିଶ୍ୱାସ ଓ ଆଚ଼ରଣ ବେଶ୍ ସ୍ପଷ୍ଟ ହୋଇଯାଏ । ପ୍ରାଚ୍ୟଲୋକଙ୍କ ଧାରଣା, ପାଶ୍ଚାତ୍ୟ ମାଆ ମାନେ ଉଦାସୀନ, ସନ୍ତାନମାନଙ୍କ ପାଇଁ ଯତ୍ନଶୀଳ ନୁହନ୍ତି, କିନ୍ତୁ, ମୋ ରହଣିକାଳ

ଭିତରେ ସମାଜ ଜୀବନରେ ପ୍ରତ୍ୟକ୍ଷ ଭାବେ ଓ ଆମେରିକା ଦୂରଦର୍ଶନରେ ମୁଁ ମାଆମାନଙ୍କ ଅନ୍ତଃସତ୍ତାକୁ ଉପଲବ୍‌ଧି କରିଛି । ଥରେ କେତେଗୁଡିକ ଦୁରାରୋଗ୍ୟ ବ୍ୟାଧିର ବାସ୍ତବ ଚିତ୍ର ଦେଖାଯାଉଥିଲା-ଦେହ ସାରା ଆବୁ ଫଳି ଯାଇଥିବା ତେର ଚଉଦ ବର୍ଷର ପୁଅ-ଲିଉକୋଡ଼ର୍ମା ଚ଼ରି ଯାଇଥିବା ଆଠ ନଅ ବର୍ଷ ଝିଅ ଓ କୋଡ଼ିଏ ବର୍ଷର ଦୁର୍ବଳ ରୋଗିଣା ଝିଅଟିଏ, କଂକାଳ ସାର । ବିଜ୍ଞାନର ବିଜୟ ଉଦ୍‌ଘୋଷଣାରେ ଥରହର ଯୁକ୍ତରାଷ୍ଟ୍ର ଆମେରିକାରେ ଅସହାୟ ବ୍ୟାଧିଗ୍ରସ୍ତ ପୁଅଝିଅଙ୍କ ପାଇଁ ଚିନ୍ତାଗ୍ରସ୍ତା, କ୍ରନ୍ଦନରତା, କୋହ ଗୁମ୍ ସୁମ୍ ମାଆମାନେ । ଏସବୁ ଦୃଶ୍ୟରେ ବାପର ଦରଦ ହୁଏତ ଦେଖାଯାଇ ନାହିଁ । ଏପରିକି ସେଥିଭିତରୁ କାହାର ବାପ ବି ନଥିବ-ଡିଭୋର୍ସ ହେଇଥିବ, ଏକାଧିକ ବିବାହ ବି କରିଥାଇପାରେ । ମାତ୍ର ସନ୍ତାନଙ୍କ ନିକଟରେ ମାଆ ଉପସ୍ଥିତ ।

ଆବୁ ଫଳି ଯାଇଥିବା, ଲିଉକୋଡର୍ମା ହୋଇଥିବା ପିଲାଙ୍କର ଡାକ୍ତରୀ ଚିକିତ୍ସା ହୋଇଛି-ମାରାତ୍ମକ ରୋଗ ନୁହେଁ ବୋଲି ପରୀକ୍ଷିତ ହୋଇ ସାରିଛି ।

ଅଥଚ ସ୍କୁଲର ସହପାଠୀ, ସହପାଠିନୀଙ୍କ ଘୃଣା, ହତାଦର । ଶିକ୍ଷକ ଶିକ୍ଷୟତ୍ରୀ ହୁଏତ ଗ୍ରହଣ କରୁଛନ୍ତି, ମାତ୍ର ଛାତ୍ରଛାତ୍ରୀ ସହଜ ହୋଇ ପାରୁ ନାହାନ୍ତି । ରାସ୍ତା ଘାଟରେ କୌତୂହଳ ପୂର୍ଣ୍ଣ ଦୃଷ୍ଟିର ଶିକାର ହୋଇ ପିଲାଗୁଡ଼ାକ ଭାଙ୍ଗି ପଡୁଛନ୍ତି । କହୁ କହୁ ଟି.ଭି ଆଗରେ ପିଲାକୁ ଧରି ମାଆର ଝର୍ଝର କାନ୍ଦ ।

ଯୁବତୀ ଝିଅଟି ବଢୁନାହିଁ-ଦିନକୁ ଦିନ କଂକାଳସାର ହୋଇ ଯାଉଛି-ଯେତେ ଭଲଖାଦ୍ୟ ଦେଲେ ବି ଖାଇ ପାରୁ ନାହିଁ-ଚାଲି ପାରୁ ନାହିଁ-ରୋଗ ଭଲ ହେବାର ନାହିଁ-

ଡାକ୍ତର ଅସହାୟତା ପ୍ରକାଶ କରିଛନ୍ତି । ବିଦେଶିନୀ ମାଆ ମୁହଁରେ ରୁମାଲ ଜାକି ଧରି କୋହରେ ଭାଙ୍ଗି ପଡୁଛି । ମୋର ହୃଦବୋଧ ହେଲା ଯେ ମାତୃତ୍ୱ ସବୁବେଳେ ଲୁହ ଛଳ ଛଳ । ସେ ପ୍ରାଚ୍ୟଦେଶ ହେଉ କି ପାଶ୍ଚାତ୍ୟ ହେଉ । ହୁଏତ ସେଠାକାର ପାରିବାରିକ ଜୀବନର ବିଡ଼ମ୍ବନା ହେତୁ ଜନନୀଚ଼ରିତ୍ରରେ ବି କ୍ୱଚିତ୍ କିଛି ବିଘଟଣ ଦେଖା ଯାଉଛି । କିନ୍ତୁ ମାଆ ହିଁ ମାଆ ।



# ଫ୍ଲାୱାର ମଣ୍ଡଠାରୁ କେନେଡି ମ୍ୟୁଜିୟମ୍

ଟ୍ରୟଟ୍ରେନ୍(ଡାର୍ଟ) ରେ ବସି ସହର ବୁଲିବା ବଡ କୌତୂହଳ ପ୍ରଦ । ଲାଗେ ଯେମିତି ଶୈଶବ ଫେରି ଆସିଛି । ଡ଼ଲାସ ସହରରେ ଏଭଳି ବ୍ୟବସ୍ଥା ଅଛି । ମୁଖ୍ୟତଃ ସହରର ବିଶିଷ୍ଟ ସ୍ଥାନ ଗୁଡିକ ବାହାରୁ ଦେଖିହେବ ଓ ଯାତାୟତ ବି ହୋଇପାରିବ । ଟ୍ରୟ ଟ୍ରେନରେ ସେଦିନ ଶନିବାର ମୁଁ, ପେପୁ ଓ ରଂଜନ ବୁଲିବାକୁ ଗଲୁ । ଟ୍ରେନର ସବାଶେଷ ଷ୍ଟେସନ, ପ୍ଲାନୋ, ଯେଉଁଠି ରଂଜନଙ୍କର ବନ୍ଧୁ ମୁକ୍ତିକାନ୍ତଙ୍କ ଘର । ଆମେ ଡ଼ାର୍ଟୱେ ଆରମ୍ଭରୁ ବସିଲୁ । ଦୁଇଟା ବଡ଼ ବଗି  ତଳୁ ତିନି ଫୁଟ ଯାଏ କାଛ, ତା' ପରେ ପୂରାଟା ଖୋଲା । କେବେ ଟନେଲ୍ ଭିତରେ ଯାଏ ତ କେବେ ଭୂଇଁ ତଳେ, କେବେ ବା ଭୂପୃଷ୍ଠରେ । ଏଇ ସବୁ ଟ୍ରେନ୍‌ରେ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ପ୍ରାୟ ଯାନ୍ତି ନାହିଁ । ମୁଁ ଖାଲି ନୂଆ ଏକ ଅନୁଭବ ପାଇବି ବୋଲି ଏଥିରେ ବସିବାକୁ ସ୍ଥିର କଲି । ନହେଲେ ମୁକ୍ତିକାନ୍ତଙ୍କ ଘରକୁ ପୂର୍ବରୁ ଥରେ ଆମେ ସମସ୍ତେ ଗାଡ଼ିରେ ଆସିଥିଲୁ । ସେଦିନ ତାଙ୍କ ଘରେ ବଡ଼ ଭୋଜି ଥିଲା । କିନ୍ତୁ ମୁକ୍ତି ପୁଣି କହିଲେ 'ମାଉସୀଙ୍କ ସହ ନିକଟତର ହେବାକୁ ସମୟ ନଥିଲା ସେଦିନ । ଆଉଥରେ ଯେମିତି ଆସିବେ, ନିଶ୍ଚେ ।'

ଆମର ବୁଲିବାକୁ ଥିବାରୁ ଆମେ ମଧ୍ୟ ଶନିବାର ବା ରବିବାର କାହାକୁ ଘରକୁ ନିମନ୍ତ୍ରଣ କରିବାର ସୁବିଧା ନଥିଲା-ଅତଏବ ଡ଼ାର୍ଟରେ ବସିଲୁ । କିନ୍ତୁ ମୋ ଝିଅ ଘରେ ରହିଲା । ତା'ର ଜରୁରୀ କାମ ଥିଲା । ଡ଼ାର୍ଟ ଯାତ୍ରାରେ ମୋ ପାଖରେ ଗୋଟେ ମୋଟି ନିଗ୍ରୋ ଝିଅ ବସିଲା । ଲାଗୁଥାଏ କୋଡ଼ିଏ ପଚିଶ୍ ବର୍ଷର । ଛୋଟ ଖଣ୍ଡେ ଗଞ୍ଜି ଓ ଚାଖଣ୍ଡେ ଓସାର ହାଫ୍‌ପ୍ୟାଣ୍ଟ, ଆଖିରେ ବଡ଼ବଡ ଆଇଲାସ୍ ଲଗାଇଥାଏ । ଉଗ୍ରଧରଣର ଫେସନ, ଅବଶ୍ୟ ତାକୁ ମାନୁ ନଥାଏ । ଲାଗୁଥାଏ, ନିମ୍ନ ବିତ୍ତ ଘରର ଝିଅ । ପୂର୍ବରୁ ଦୁଇଟି ଗୋରା ବାଳକ ସେହି ବଗିରେ ଥାଆନ୍ତି । ଦେଖିବାକୁ ଭଲ, ସେହି ଝିଅ ବୟସର, କ୍ରମଶଃ ଆଖି ଓ ମୁହଁ ହାବ ଭାବରେ ଝିଅଟି ପ୍ରତି ଆସକ୍ତି ପ୍ରକଟ କରୁଥାନ୍ତି । ସିଟ୍ ନଥିବାରୁ ନ ବସି ସେ ଦି'ଜଣ ଯୁବକ ଝିଅଟି ସାମ୍ନାରେ ଠିଆ ହୋଇଥାନ୍ତି । ଝିଅଟି ସେମାନଙ୍କର ଅପରିଚିତା ଥିଲେ ମଧ ସେହି ଆସକ୍ତିର ପ୍ରତ୍ୟୁତ୍ତର ସେ ଅଂଗଭଂଗୀ,  ଶବ୍ଦ ଓ ଭାଷାରେ ଦେଉଥାଏ । ସମସ୍ତ ଯାତ୍ରୀଙ୍କ ପାଇଁ ବେଶ୍ କୌତୂହଳପ୍ରଦ ଘଟଣା ହେଲେ ହେଁ ସେଠାରେ ଏସବୁ ଖୁବ୍ ସହଜ । ଆମ ୟାଡ଼େ ସେମିତି ଦେଖିବାକୁ ମିଳିବ ନାହିଁ । ଏତେ ଖୋଲା ଖୋଲି । ସେଇଠୁ ସେମାନେ ହାତ ଧରାଧରି ହୋଇ ୩ଜଣ ଯାକ ମଝିରେ

ଗୋଟେ ଷ୍ଟେସନରେ ଓହ୍ଲାଇ ଗଲେ ।  ମୋ ନାତି ପେପୁ ଏସବୁ ଦେଖି ଚୁପ୍ ହୋଇ ବସିଥାଏ । କ'ଣ ଭାବୁଥାଏ କେଜାଣି !

ପେପୁ ଘରୁ ବାହାରିଲେ ହିଁ କେତେ କେଜାଣି ଏଇ ଧରଣର ହାବଭାବ ଦେଖେ । ପୁଣି ଟି.ଭି.ରେ ବି ଦେଖେ । ମୁକ୍ତ ମିଳନ ଓ ବିବାହ ବାହାରେ ପ୍ରେମର ନାନା ଦୃଷ୍ଟାନ୍ତ । କ'ଣ ବୁଝେ କି ନ ବୁଝେ ସିଏ ଜାଣେ । ତା'ର ଜଣେ ଝିଅ ସାଂଗ ତା କ୍ଲାସର, ମଝିରେ, ମଝିରେ ଆମ ଫ୍ଲାଟକୁ ଖେଳିବାକୁ ଆସେ, ପେପୁ ବି ତା' ଘରକୁ ଖେଳିବାକୁ ଯାଏ । ତା' ବିଷୟରେ ଦିନେ ମୁଁ ପଚାରି ଦେଲି (ପରିହାସରେ) ଯେ 'ଗାର୍ଲଫ୍ରେଣ୍ଡ କୁଆଡେ ଗଲା' ? ସେ ବଡ ବ୍ୟସ୍ତ ହୋଇପଡ଼ିଲା ! 'ଗାର୍ଲଫ୍ରେଣ୍ଡ' ଇଜ୍ ନଟ୍ ଏ ଗୁଡ୍ ଓ୍ୱାର୍ଡ । ଡୋଣ୍ଟ ଟେଲ୍ ଦ୍ୟାଟ । ସି ଇଜ୍ ନଟ ମାଇଁ ଗାର୍ଲ ଫ୍ରେଣ୍ଡ ।'-ମୁଁ ତାକୁ ବୁଝାଇଲି 'ସି ଇଜ୍ ଅ ଗର୍ଲ, ସିଇଜ୍ ଇଓର ଫ୍ରେଣ୍ଡ, ଦେନ୍ ?' ସେ କିନ୍ତୁ ଜମା ରାଜି ହେଲା ନାହିଁ ଓ ମତେ ସଂଶୋଧନ କରିବାକୁ କହିଲା । ହଁ, ଏଥର ଗୋଟେ ଡାର୍ଟ ଷ୍ଟେସନର ବେଞ୍ଚ ଉପରେ କେତେକ ପୁରୁଷ ନାରୀ ବସିଥିଲେ । କିଏ ବା ଠିଆ ହୋଇଥିଲେ । ଆମେ ସେହି ଷ୍ଟେସନ, ଅତିକ୍ରମ କରିଯାଉଥିଲୁ । ଆମ ଟ୍ରେନ୍ ସେଠାରେ ରହିବାର ନଥିଲା । କିନ୍ତୁ ସେହି ଷ୍ଟେସନର ବେଞ୍ଚ ଉପରେ ସମସ୍ତଙ୍କ ଭିତରେ ଝିଅଟିଏ ବସିଥିଲା । ସେଇ କୋଡ଼ିଏ ପଚିଶ୍ ବର୍ଷର ହେବ । ଝିଅଟି ସାରା ମୁହଁକୁ ଚିତ୍ର କରିଥିଲା । ଧଳା, କଳା, ନାଁଳି, ହଳଦୀ ରଂଗ ସବୁ ପଟା ପଟା କରି ମୁହଁରେ ଲଗାଇଥାଏ । ବିଚିତ୍ର , ଅଦ୍ଭୁତ ଦିଶିବା ଯେମିତି ଗୋଟେ ସଉକ୍ । ଅନେକ ସ୍ଥାନରେ ଦେଖୁ କିଏ ପିଠିରେ କିଏ ବାହୁରେ କିଏ ବା ଛାତିରେ କଳାରେ ବା ନାଲିରେ ଚିତ୍ର (ଟାଟୋ) କରିଥାନ୍ତି । ମତେ ଲାଗିଲା, ଆମ ଓଡ଼ିଶାର ଚିତା କୁଟା ଯାହା, ଆଈ ଓ ଜେଜେ ମାଙ୍କ ଅମଳରେ ସେମାନେ କରିଥିଲେ, ତାହାତ ବେଶ୍ ମଡର୍ଣ୍ଣ ! ଆମେ ତାଙ୍କୁ ମରହଟ୍ଟୀ କହୁ କାହିଁକି ? ଆଉ ଗୋଟାଏ କଥା, ସ୍ତ୍ରୀ ଲୋକଙ୍କର ତ କାନରେ ତିନି ଚାରିଟା ଫୋଡ଼ - ଆମ ଦେଶରେ  ବି ଚାଲିଲାଣି । କିନ୍ତୁ ସେଠାରେ ନାଭିରେ, ଓଠରେ ଫୋଡ଼ କରି ଛୋଟ 'ନୋଲକ' ଭଳି ପିନ୍ଧିଥାନ୍ତି । ଆହୁରି ବି ଶୁଣିଲି ସ୍ତନାଗ୍ରରେ ମଧ ସେମାନେ ଫୋଡ଼ କରି ହାଲକା ଗହଣା ପିନ୍ଧନ୍ତି । ନାକ ଫୋଡ଼ା ବିଶେଷ ନାହିଁ ପ୍ରାୟ ।

ଦୁଇଘଣ୍ଟା କାଳ ଡାଲାସ୍ ସହର ବୁଲିବା ପରେ ଆମେ ପ୍ଲାନୋ ଷ୍ଟେସନରେ ପହଞ୍ଚିଲୁ । ଡାର୍ଟ ଲାଇନ୍‌ରେ ସେଇଟା ଶେଷ ଷ୍ଟେସନ । ମୁକ୍ତିଙ୍କ ପତ୍ନୀ ମାମି ଡ୍ରାଇଭ୍ କରି ଆମକୁ ଘରକୁ ନେଇଗଲେ । ମୁକ୍ତିଙ୍କର ବିରାଟ ଘର, ଖୁବ୍ ସଂଭ୍ରାନ୍ତ ଭାବେ ସୁସଜ୍ଜିତ । ଆଉ ଉପର ମହଲାରେ ଗୋଟିଏ ଘର, କାନ୍ଥରେ ଫିଲ୍ମ ସୋ ହୁଏ । ଖିଆ ପିଆ ପରେ

ମୁକ୍ତି କହିଲେ 'ମାଉସୀ ଫିଲ୍ମ ଦେଖନ୍ତୁ, ଚମତ୍କାର ଫିଲ୍ମଟି ଆୱାର୍ଡ ପାଇଛି । 'ଏ ଚାଇଲ୍‌ଡସ୍ ଡେ ଆଉଟ୍' ଆମ ଦେଶରେ ବି ସେଇ ଫିଲ୍ମଟି ଖୁବ୍ ଲୋକପ୍ରିୟ । କେତୋଟି ଫଲ୍ମ ଜୀବନ ସାରା ମନେ ରହିବ, ସେଥିରୁ ଇଏ ଗୋଟିଏ । ଆଉ ଗୋଟେ କନି ଘରେ ଦେଖିଥିଲି ଓସ୍କାର ବିଜୟୀ ଫିଲ୍ମ 'ଦି' ହୋମ୍ କମିଙ୍ଗ୍' । ଏହି ଫିଲ୍ମ ଗୁଡିକ ଅସାଧାରଣ-ଏହାର ସଂଳାପ, ଚିତ୍ରୋତ୍ତୋଳନ, କାହାଣୀ, ଅଭିନୟ ସବୁକିଛି ଅପୂର୍ବ ।

**ପ୍ରଫେସର ଡକ୍ଟର ରଙ୍ଗାଧର ଦାଶ :**

ପ୍ରଫେସରଙ୍କ ଘରେ ଆଉ ଗୋଟେ ରିବବାର ନିମନ୍ତ୍ରିତ ଅତିଥି ହୋଇ ପହଞ୍ଚିଲୁ । ପ୍ରଫେସର ଡକ୍ଟର ରଙ୍ଗାଧର ଦାଶ, କଲ୍ୟାଣୀ ତାଙ୍କ ପତ୍ନୀ । ସେମାନେ ଆମର ସଂପର୍କୀୟ ନଣନ୍ଦ ଓ ନଣନ୍ଦେଇ । 'କଲ୍ୟାଣୀ ପଚାଶ ପ୍ରକାର ଖାଦ୍ୟ ପରଷିଲେ ।' 'କେମିତି ୟାକୁ ସବୁ ରାନ୍ଧିଲ ?' ସେ କାଳେ ତିନି ଦିନ ହେଲା ରାନ୍ଧି ରଖିଥିଲେ । ବାଡିରୁ ନେକ୍‌ଟାରିନ୍ ମିଠା ଫଳ ତୋଳି ଆଣି  କାଟିକି ଖୁଆଇଲେ । କହିଲେ 'ଏଠି ନାନା ପ୍ରକାର ଖାଦ୍ୟ, ନ ରାନ୍ଧିଲେ ବି ଜଣେ ଖାଇକି ରହିଯିବ । କିନ୍ତୁ ଗୋଟିଏ ଦୁଃଖ, ଜ୍ୱରରେ ପଡିଲେ ପାଣି ଗ୍ଲାସେ ଦେବାକୁ କେହି ନାହିଁ । ଚା କପେ ନିଜେ ତିଆରି କରି ପିଇବ । ଏଠି ସମସ୍ତେ କାର୍ଯ୍ୟ ବ୍ୟସ୍ତ । ଖୁବ୍ ଜରୁରୀ ନ ହେଲେ କାହାକୁ ବି ଛୁଟି ମିଳେ ନାହିଁ ।' ତାଙ୍କ ସ୍ୱାମୀ ଡଃ ଦାଶ ମୂଳତଃ ଗଣିତରେ ପିଏଚଡ଼ି, ପରେ  ଇଂଜିନିୟରିଂ ଡିଗ୍ରୀ ହାସଲ କରଛନ୍ତି । ଏହା ପୂର୍ବରୁ ସେ ନାସାରେ ଏକ ବରିଷ୍ଠ ବୈଜ୍ଞାନିକ ରୂପେ ନଯୁକ୍ତ ହୋଇଥିଲେ । ଏବେ ଯଦିବା ଆର୍ଲିଂଟନର କମ୍ପୁଟର ବିଭାଗରେ ଅଛନ୍ତି ଓ ବରିଷ୍ଠ ଇଞ୍ଜିନିୟର ବି ଥିଲେ କିଛି ବର୍ଷ । କିନ୍ତୁ ସେ ପଢ଼ିବାକୁ ଖୁବ୍ ଭଲ ପାଆନ୍ତି  । ଏହାପରେ ସେ ଇଉ.ଟି.ଏ ମାଷ୍ଟର ଡିଗ୍ରୀ ମଧ୍ୟ ହାସଲ କଲେ । ଏହି ବହୁ ଡିଗ୍ରୀଧାରୀ ବିଚକ୍ଷଣ ବ୍ୟକ୍ତିଜଣଙ୍କର କିନ୍ତୁ ଆମେରିକାରେ ମନଲାଖି ଯୋଗ୍ୟତାନୁଯାୟୀ କର୍ମସଂସ୍ଥାନ ହୋଇ ପାରିନାହିଁ । ସେ କଥା ପୂର୍ବରୁ କହିଛି । ସେ ବର୍ତ୍ତମାନ, ଆର୍ଲିଟଂନ ୟୁନିଭରସିଟି ରେ ବରିଷ୍ଠ ଅଧ୍ୟାପକ । ତାଙ୍କର ଦୁଇଟି ଝିଅ ଓ ପୁଅଟି ବଡ଼ । ଝିଅଟିଏ ଉଚ୍ଚଶିକ୍ଷିତା ମଧ୍ୟ ଓ ପୁଅଟି  କଂପ୍ୟୁଟର୍‌ରେ ମାଷ୍ଟର ଡିଗ୍ରୀ କରିଛି । ସାନ ଝିଅ ପଢୁଛି । ବର୍ତ୍ତମାନ ସେମାନେ ସମସ୍ତେ ଯୋଗ୍ୟ ହୋଇସାରିଛନ୍ତି । ଡଃ ଦାଶ ଏବେ ଜଣେ ବିଶିଷ୍ଟ ଓଡ଼ିଆ ଭାବରେ ପରିଚିତ । ସେ ପରୋପକାରୀ ବୋଲି ଶୁଣିଥିଲି ଏବଂ ବର୍ତ୍ତମାନ ସେହି ପରିବାରର ଆନ୍ତରିକତାରେ ମୁଗ୍ଧ ହେଲି ।

ଡଲାସ୍ ସହରର ଅନ୍ୟ ଗୋଟିଏ ଅଂଚଳ 'ପ୍ଲାୱାରମଣ୍ଡ' ଯେଉଁଠି ମୋର ସାନ ନଣନ୍ଦ ଅନୁପମା, ନଣନ୍ଦେଇ ଭାରତର ତଥା ପୃଥିବୀର ପ୍ରଖ୍ୟାତ ଧାନଚାଷ ବିଶେଷଜ୍ଞ

ପ୍ରଫେସର ଜଟାଶଙ୍କର ନନ୍ଦ ରହନ୍ତି । ତାଙ୍କ ବଡ ଝିଅ ଡ଼ଲି ଓ ଜ୍ୱାଇଁ ଅରୁଣ ନାତୁଣୀ ଆୟୋଶା, ଅୟନା ତାଙ୍କ ସହିତ ରହନ୍ତି । ତାଙ୍କର ନିମନ୍ତ୍ରଣ-କେମିତି ହେଉ ତାଙ୍କ ଘରେ ଦୁଇଦିନ ଯେପରି ରହେ । ସେମାନଙ୍କର ଆଗ୍ରହ ରକ୍ଷାକରି ମୁଁ ତେଣୁ ଡ଼ଲାସ୍‌ରେ ୩ଟିଦିନ ରହିଲି ଓ ଦର୍ଶନୀୟ ସ୍ଥାନ କେନେଡି ମ୍ୟୁଜିୟମ ଓ ଗ୍ରେପ୍‌ଭାଇନ୍ ମଲ୍‌କୁ ଦେଖି ପାରିଲି । ମତେ ଡଲି ଓ ଅନୁ ଦେଖାଇବାର ଦାୟିତ୍ୱ ନେଇଥାନ୍ତି । ତେଣୁ ଗୋଟେ ଶନିବାର ଉପରବେଳା ଆମେ 'ଫ୍ଲାଓ୍ୱାର ମଣ୍ଡ' ଗଲୁ-ଅନୁଙ୍କ ରନ୍ଧଣା, ଖାଦ୍ୟରେ ଓଡ଼ିଆ ବ୍ରାହ୍ମଣ ଘରର ବାସ୍ନା । ଅନୁ ମୋ ସାନ ନଣନ୍ଦ, ମୋ ଶାଶୁଘରେ ଭାରି ଗେହ୍ଲା ଝିଅ ଥିଲେ । ଶାନ୍ତ ଶିଷ୍ଟ, ଚୁପ୍ ଚାପ୍ । ମାଟ୍ରିକ୍ ପରୀକ୍ଷା ଦେଇ ବାହାହେଲେ ୧୯୬୪ ମସିହାରେ, ତାଙ୍କ ସ୍ୱାମୀ ବରିଷ୍ଠ କୃଷି ବିଶେଷଜ୍ଞ ଥିଲେ 'ପୁସାଇନ୍‌ଷ୍ଟିଚ୍ୟୁଟ୍'ରେ ଓ ଘଟଣା କ୍ରମେ ବିଦେଶରେ ପି.ଏଚ.ଡି. କରି ନନ୍ଦବାବୁ ଉତ୍ତର ପ୍ରଦେଶରେ କେତେ ବର୍ଷ ରହିଲା ପରେ, ନାଇଜେରିଆ, ଫିଲି ପାଇନ୍ସ, ଗାଏନା ଓ ଆମେରିକାରେ ସାରାଜୀବନ କଟାଇଲେଣି । ଏବେ ଡଲାସ୍‌ରେ । ଅନୁଙ୍କ ସହ ସାକ୍ଷାତ କ୍ୱଚିତ୍ ହୁଏ । କାରଣ ସେ ଯେବେ ଓଡ଼ିଶା ଆସନ୍ତି, ସବୁ ଭାଇ, ଭଉଣୀ, ଗାଁ ଏବଂ ଶାଶୁ ଘର ସମ୍ବଲପୁର-ଏଥିରେ ବାଣ୍ଟି କୁଣ୍ଟି ଦିନ ଅଣ୍ଟେନି । କିନ୍ତୁ ପୂର୍ବରୁ ଅନୁ ମାଟ୍ରିକ୍ ପରୀକ୍ଷା ଦେଇ ସାରିଲା ପରେ, ଖରା ଛୁଟିରେ, ଶାଶୁଘର ଗାଁରେ ପ୍ରାୟ ମୋ ପାଖେ ଶୁଅନ୍ତି । ତାଙ୍କ ନିତଭାଇନା କଟକରେ ଥାଆନ୍ତି । ବଡ ଖଟରେ ସେ ଓ ମୁଁ ଦୁହେଁ ହଳଦୀ ଲଗାଇ ପରସ୍ପର ପିଠି ଘଷି ମଳୁକୁଟି ଛଡାଉ । ଗରମଦିନ । ଝର୍କାବାଟେ ମଲ୍ଲୀଫୁଲ ବାସ୍ନା ଭାସି ଆସୁଥାଏ । ତାଙ୍କ କନିଆଁ ଦେଖା ବି କଟକରେ ମୋ ଭଡ଼ାଘରେ ସଂପନ୍ନ ହୋଇଥିଲ । ତେଣୁ ଅନୁ ଓ ମୁଁ ପରସ୍ପରକୁ ଅନେକଟା ବୁଝୁ । ତାଙ୍କ ସ୍ୱାମୀ ଅତ୍ୟନ୍ତ ସ୍ନେହୀ ଓ ଉଦାର ପ୍ରକୃତିର ବ୍ୟକ୍ତି । ମୋ ଶାଶୁ ଘର ଗରେଇ ଶାସନରେ ସେ ଗୋଟେ ଶିବମନ୍ଦିର ତୋଳାଇଛନ୍ତି । ସେମାନଙ୍କ ସହ ତିନିଟି ଦିନ ପ୍ରକୃତରେ ପାଣିପରି, ପବନ ପରି ବୋହିଗଲା-

ରବିବାର ଦିନ ଆମେ 'କେନେଡ଼ି ମିଉଜିୟମ୍' ବାହାରିଲୁ । ସକାଳ ନଅଟା, ଡ଼ଲି ଦ୍ରୁତ ଗତିରେ ଗାଡି ଚଳାଇ ଆମକୁ ପହଞ୍ଚାଇଦେଲା । ତିନିଜଣଯାକ ଟିକେଟ କରି ଭିତରକୁ ଗଲୁ । ଜନ୍ କେନେଡିଙ୍କର ପିଲାଦିନରୁ ମୃତ୍ୟୁ ପର୍ଯ୍ୟନ୍ତ ବିଭିନ୍ନ ଫଟୋ ସେଥିରେ ସଂରକ୍ଷିତ । ବିଶେଷତ୍ୱ ହେଉଛି, ତାଙ୍କୁ ଗୁଳି କରାଯାଇଥିବା ସ୍ଥାନରେ ହିଁ ମ୍ୟୁଜିୟମଟି ନିର୍ମିତ । ଏମିତିରେ ଜନ୍.ଏଫ୍ କେନେଡିଙ୍କ ବ୍ୟକ୍ତିତ୍ୱ ମତେ ଖୁବ୍ ଅନୁପ୍ରାଣିତ କରେ । ତାଙ୍କ ସମ୍ପର୍କରେ ବିସ୍ତୃତ ତଥ୍ୟ, ଚିତ୍ରାବଳୀ ମୋତେ ନିବିଷ୍ଟକରି ରଖିଲା । ଯେଉଁ ଗାଡିରେ ବସି

ସେ ଯାଉଥିଲେ, ସେଇଟି ଖୋଲା ଗାଡି । ସୁରକ୍ଷା ଦିଆଯିବା ପାଇଁ ନିଜେ ଜିଦ୍ କରି ବାରଣ କରିଥିଲେ-ନହେଲେ ସେ ବନ୍ଦ ଗାଡିରେ ଯିବାର କାର୍ଯ୍ୟକ୍ରମ ହିଁ ଥିଲା । ସେ ସବୁର ଚିତ୍ର ତଳେ ତା'ର ସାହିତ୍ୟ ଓ ଆତତାୟୀର କାର୍ଯ୍ୟକଳାପ, ସବୁ କିଛିର ଜୀବନ୍ତ ବର୍ଣ୍ଣନା ଖୁବ୍ ଆକର୍ଷଣୀୟ । ସତେ କି ଏକ ସିନେମା । ଜ୍ୟାକେଲିନ୍‌ଙ୍କର ଏକ ସ୍ୱତନ୍ତ୍ର ବିଭାଗ-ସୁନ୍ଦରୀ କେନେଡି ପତ୍ନୀଙ୍କର କେତେ ଚିତ୍ର, କେତେ ଗାଥା, ମର୍ମସ୍ପର୍ଶୀ ଦୃଶ୍ୟ ସବୁ-କେନେଡିଙ୍କର ବାପା, ମା, ଭାଇ ଙ୍କ ଠାରୁ ତାଙ୍କ ସନ୍ତାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ବିଶିଷ୍ଟ ଚିତ୍ର ଓ ତଥ୍ୟାବଳୀ ରେ ମ୍ୟୁଜିୟମ ଟି ସୁବିନ୍ୟସ୍ତ ।

ସେହି ମ୍ୟୁଜିୟମର ପ୍ରଥମ ଆକର୍ଷଣ ଖବର କାଗଜ । ଆମେରିକାର ୩୫ ତମ ରାଷ୍ଟ୍ରପତିଙ୍କର ନିହତ ହେବାର ସଂବାଦ (ନଭେମ୍ବର ୨୩ ତାରିଖ ଶନିବାର ଦିନ) 'ଡଲାସ୍ ମର୍ଣ୍ଣିଂ' ନିଉଜ୍ ପେପରରେ ପ୍ରକାଶ ପାଇଛି । ପୂର୍ବଦିନ ଡ଼ଲାସ୍ ରାସ୍ତାରେ ଅର୍ଥାତ୍ ନଭେମ୍ବର ବାଇଶ୍ ତାରିଖ ଦିବା ଘ ୧୨.୨୦ ମିନିଟ୍‌ରେ ରାଷ୍ଟ୍ରପତି ଜନ୍ କେନେଡିଙ୍କୁ ଗୁଳି କରାଯାଇଥିଲା । ଦିନ ଗୋଟାଏ ବେଳେ ସେ ମୃତ୍ୟୁ ବରଣ କଲେ । ଗୋଟିଏ ଛକ ଜାଗାରେ କାର୍‌ଟିଗତି କଲାବେଳେ, ସେଠାରେ ଅବସ୍ଥିତ ଗୋଟେ ଉଚ୍ଚ ଅଟ୍ଟାଳିକାର ଅଣ ଓସାରିଆ ଝର୍କାରୁ ତାଙ୍କୁ ଗୁଳି କରାଗଲା । ୧୯୬୩ ମସିହାରେ ଡେମୋକ୍ରାଟିକ୍ ଦଳର ସଭାପତି-ଭାରତକୁ ଭଲପାଉଥିବା, ସବୁ ବଂଚିତ ଲୋକର ସପକ୍ଷରେ ଠିଆ ହେଉଥିବା ନେତା ଜନ୍ କେନେଡ଼ି ମୃତ୍ୟୁ ବରଣ କଲେ । ୧୯୬୨ ଏପ୍ରିଲ ୨୯ ରେ ସେ ବକ୍ତବ୍ୟ ଦେଇଥିଲେ 'Let the World go forth / that the torch have been passed to a new generation of America' ତାଙ୍କୁ ଗୁଳି ବିଦ୍ଧ କରିବାର ୪୭ ଘଣ୍ଟା ପରେ ଡ଼ଲାସ୍ ପୋଲିସ୍ ଆତତାୟୀ ହାର୍ଭି ଅସୱାଲଡ୍‌କୁ ଧରିପାରିଥିଲା । ହାର୍ଭି ଏହି ବିରାଟ ଅଟ୍ଟାଳିକାରେ ଲୁଚି ବହି ଗୋଦାମରୁ ସବା ଉପର ମହଲାରୁ ଗୁଳି ଚଳାଇଥିଲା । ସେଇଚିତ୍ର ଓ ଘଟଣା ସବୁ ପ୍ରତ୍ୟକ୍ଷ କଲା ବେଳେ ଇତିହାସ ସହିତ ମୋ ଅସ୍ତିତ୍ୱ ଗୁନ୍ଥି ହୋଇ ଯାଇଥିଲା ଭଳି ମନେ ହେଲା । ଯଦିଓ ମୁଁ ଗୋଟେ ସାମାନ୍ୟ ଭାରତୀୟ, ଜଣେ ଓଡ଼ିଆଣୀ, ତଥାପି କେନେଡି ଥିଲେ ଆମର କେଡ଼େ ପ୍ରିୟ !

ତାଙ୍କର ହତ୍ୟାକାରୀ ଲି ହାର୍ଭେ ଅସୱାଲ ହତ୍ୟାର ୪୭ଘଣ୍ଟା ପରେ ଧରା ପଡ଼ିଲା ବୋଲି କହିଛି । ତାକୁ ଧରିବାର ବିଭିନ୍ନ ଉପାୟ ଏବଂ ସେ ହତ୍ୟାକାଣ୍ଡର ସୁଚିନ୍ତିତ ଯୋଜନା ସବୁ ଫଟୋ ଓ ଲେଖା ମାଧ୍ୟମରେ ଦେଖିଲାବେଳକୁ ଏକ ଡିଟେକ୍‌ଟିଭ୍ ଉପନ୍ୟାସ ପଢ଼ିଲା ପରି ଲାଗୁଥିଲା ।

ଦିନ ଦୁଇଟା ପରେ ମ୍ୟୁଜିୟମରୁ ବାହାରିଲୁ । ଘରକୁ ଫେରିବା ବାଟରେ ଡଲି ଆମକୁ ଏକ ମେକ୍ସିକାନ ହୋଟେଲରେ ପହଞ୍ଚାଇଲା। 'ମାଇଁ ଏଠାରେ ଖାଇବେ ।' ମେକ୍ସିକାନ୍ ଖାଦ୍ୟ ଖୁବ୍ ସୁସ୍ୱାଦୁ ମନେ ହେଲା । ଏହି ଖାଦ୍ୟ ଭାତ ନଥିଲେ ବି କିଛି ଅଲଗା ମନେ ହେଲା ନାହିଁ, ବରଂ ଅଧିକ ଭଲ ଲାଗିଲା । ଗ୍ରେପ୍‌ଭାଇନମଲ୍‌ଟି ଏକ ବିରାଟ ହଲ୍ । କୋଡ଼ିଏ ମହଲା ଦୋକାନ କହିଲେ ଚଳେ । କ'ଣ ନାହିଁ ସେଥିରେ ! ଛୁଞ୍ଚିସୂତା ଠାରୁ ମେସିନ୍ ପର୍ଯ୍ୟନ୍ତ । ଆମେ କିଛି କିଣା କିଣି କଲୁ । ଅନୁ ବିଦେଶରେ ରହି ବେଶ୍ ଚଉଆଖିଆ ହୋଇଯାଇଛନ୍ତି, ଖୁବ୍ ପାରିବାର ମନେ ହେଲେ । ଶୀତତାପନିୟନ୍ତ୍ରିତ ପରିଚ୍ଛନ୍ନ ମଲ୍, ବିଶାଳାକାର, କେତେ ପୁରୁଷ ନାରୀ ସେଠାରେ ସେଲ୍‌ସ୍ ମ୍ୟାନ୍ ଭାବେ ଅସ୍ଥାୟୀ ଚାକିରୀ କରିଥାନ୍ତି ।

ଗୋଟିଏ କଥା ଏ ଯାଏଁ କହି ପାରିଲି ନାହିଁ । ନ୍ୟୁୟର୍କରୁ ଏ ଯାଏଁ ଆମେ ଦେଖିବାକୁ ପାଇଲୁ ନାରୀମାନଙ୍କର ଅଦ୍ଭୁତ କେଶଚର୍ଯ୍ୟା । ଗୋରା ଓ ବିଶେଷ କରି କଳାନାରୀମାନେ ମୁଣ୍ଡରେ ଚାଖଣ୍ଡେ, ଦେଢ଼ଚାଖଣ୍ଡେ ଲେଖାଁ ବାଳ ରଖିଥାନ୍ତି ଓ ସେଇ ବାଳରେ ଅତିକମ୍‌ରେ ପଚିଶ୍ ତିରିଶ୍‌ଟା ସୁନ୍ଥାଣୀ ପଡିଥାଏ । ଦୁଇଟି ସୁନ୍ଥାଣିର ମଝିରେ ଥିବା ବାଳକୁ ତିନି କେରିଆ ବେଣୀ ପକାଯାଇଥାଏ । ଏପରି ସର୍ବମୋଟ ବାର ପନ୍ଦରଟି ବେଣୀ ବାଳରେ ହୋଇଥାଏ । ସେମିତି ଝୁଲୁଥାଏ ନତୁବା ସବୁକୁ ତାଳୁ ତଳେ ବା ବେକ ତଳକୁ ଏକାଠି ଗୋଛା କରି ବନ୍ଧା ଯାଇଥାଏ । ସେମିତି କିଛି ଆକର୍ଷଣୀୟ ଦିଶେନି । ଖାଲି ଯାହା ନୂଆ ପ୍ରକାର, ଅଥଚ କେତେଯେ ପରିଶ୍ରମ ହୋଇଥିବ ସେଥିପାଇଁ-ବରଗୁଡି ଛୁଇଁ ଆକାର, ଲମ୍ବା ଏବଂ ଓସାର ଚଉଦ ପନ୍ଦରଟା ବେଣୀ ପାରିବା କେତେ ଝକ୍‌ମାରି କାମ ! ତା ଆମେ ଭାବି ପାରିବା ନାହିଁ । ଏତେ କାମ ଭିତରେ କେଜାଣି ସେମାନେ କେତେବେଳେ ଏସବୁ କରନ୍ତି ? ଏଣେ ପୁଅମାନେ ପ୍ରାୟ ଚନ୍ଦା, ନହେଲେ ମୁଣ୍ଡା ଲଣ୍ଡା କରିଥାନ୍ତି । କ୍ୱଚିତ୍ କାହାର ବାଳ କେରାଏ ଥାଏ । ଲମ୍ବା ବାଳ କେହି କେହି ରଖିଥାନ୍ତି ଯେ ସେମାନେ ଅଳ୍ପ ସଂଖ୍ୟକ ପୁରୁଷ ।

ଏବେ ଘରକୁ ଫେରିଲା ବେଳକୁ ନଣନ୍ଦେଇ ନନ୍ଦବାବୁ ବଗିଚାରେ ଗଛ ସଫା କରୁ କରୁ, ପାଣି ମନ୍ଦା ଖୋଳୁ ଖୋଳୁ ପିମ୍ପୁଡି କାମୁଡାରେ ଆହାତ ହୋଇଥାନ୍ତି । ବିଷାକ୍ତ ପିମ୍ପୁଡି । ହାତ ଆଙ୍ଗୁଠି ଫୁଲି ଦରଜ ଓ ବିନ୍ଧା ହେଉଥାଏ । ପାଖରେ ଥିବା ଔଷଧ ଦେଇଥାନ୍ତି । ପୁଣି ପରଦିନ ଔଷଧ ଆହୁରି ଆସିବ । କଣ କରାଯିବ-ସବୁ କାମତ ହାତରେ କରିବ-ବାସନ ମଜାଠୁଁ କମ୍ପୁଟର ଚଳାଇବା ପର୍ଯ୍ୟନ୍ତ-କି-ପୁରୁଷ କି ସ୍ତ୍ରୀ ।

ପରଦିନ ମୁଁ ଆର୍ଲିଂଟନ ଫେରିଲି । ଡ଼ଲି ଓ ଅନୁ ଛାଡ଼ି ଦେଇଗଲେ । ସେ ଦିନ ପୁଣିଥରେ ମଲ୍‌କୁ ଗଲୁ । ଟିକେ ବି କ୍ଲାନ୍ତ ବା ବିରକ୍ତ ହେବା ଡଲି ପାଖରେ ନାହିଁ । ଏତେ ବାଟ ଡ୍ରାଇଭିଂ କରି, ଝିଅର ଠେଲା ଗାଡି ଠେଲି, କେବେ ବା ତାକୁ ପିଠିରେ ଲଦି ଦେଇ ସେ ସାରାଟା ମଲ୍ ବୁଲୁ ଥାଏ । ଆମ ନଣନ୍ଦ ଭାଉଜଙ୍କୁ ସଂଗ ଦେଉଥାଏ । ଆର୍ଲିଂଟନ୍ କ୍ୟାମ୍ପସ୍ ଘରେ ପହଞ୍ଚିଲା ବେଳକୁ ଅପରାହ୍ଣ ଛଅଟା । ମୋ ଝିଅ କିନ୍ତୁ ଦହିବରା, ଚାଟ୍ ଓ ବୁଢ଼ା ଚକୁଳି ତିଆରି କରିଛି । ପିଇସୀ ଓ ଭଉଣୀକୁ ଖୁଆଇବ । ଆଶ୍ଚର୍ଯ୍ୟ ! କନି କେମିତି ଏସବୁ ଶିଖିଲା ? ଘରେ ତ ପାଣି ଗ୍ଲାସେ ନେଇ କାହାକୁ ଦେଲାବେଳକୁ ସ୍ଵମୟେ ସମୟେ ତା' ହାତରୁ ଗ୍ଲାସଟି ଖସିପଡ଼େ, ପାଣି ଢ଼ାଳିହେଇଯାଏ । ଦଶବର୍ଷ ହେଲାଣି ତାର ବିଭାଘର । ତା' ସହ ମୋର ମାନସିକ ଯୋଗାଯୋଗ ଅବ୍ୟାହତ ଥିଲେ ବି ଚାକ୍ଷୁଷ ଯୋଗାଯୋଗ କେତେ କମ୍ ! ସତେରେ ସେ ଯଥେଷ୍ଟ ସମର୍ଥ ହୋଇଯାଇଛି । ଆଶ୍ୱସ୍ତ ଲାଗିଲା ।

ଆଉଦିନେ କନିର ଫଟୋ ଓ କଥା ଟେପ୍ କରିବାକୁ ଯାଇ ଡ଼ଲି ପଚାରିଲା 'କନି, ମାଇଁଙ୍କ ଡ଼ଲାସ୍ ଆସିବା ତୋତେ କିପରି ଲାଗୁଛି ?' କନିର ଉତ୍ତର-'ମୁଁ ତୃତୀୟ ଝିଅ ହେତୁ, ବଡ଼ ଦୁଇ ଭଉଣୀ ବୋଉ ସହିତ ନିକଟତର ହେଲାବେଳେ, ମୁଁ ଟିକେ ଦୂରରେ ରହିଯାଇଥିଲି । କିନ୍ତୁ ବୋଉ ସହିତ ଏଇ ତିନିମାସ କାଳ ମିଶିବାର ସୁଯୋଗ ପାଇ, ମୋତେ ଲାଗୁଛି ଯେ, ସେ ମୋର ଜଣେ ଅନ୍ତରଂଗ ବାନ୍ଧବୀ ।' ତା'ର ଏଇ କଥା ଦି'ପଦକୁ ଶୁଣି ସେଦିନ ଭାରତୀୟ ହୋଟେଲ୍ 'ମୟୂର'ର ଉଦ୍ୟାନରେ ଡ଼ଲାସ୍ ସହରରେ, ଆମେ ସମସ୍ତେ ଆମୋଦିତ ହେଲୁ । ମୋ ସାଥିରେ ଥିଲେ ଅନୁ, ନନ୍ଦବାବୁ, ଅରୁଣ, ରଂଜନ, ପେପୁ, ଆୟେଶା ଓ ଅୟନା ।



# ପଶ୍ଚିମ ଦିଗନ୍ତ : ସ୍ମୃତି-ପୂତ ଉପକୂଳ

ଏତେ ବିରାଟ ଦେଶ ଆମେରିକା-ଭାରତର ଅନେକ ଗୁଣ ଆୟତନ ହେବ । ମୋ କ୍ୱାଇଁ ରଂଜନ ମୋ ସହିତ ଉତ୍ତର-ପୂର୍ବ ବୁଲିବା ପାଇଁ ତାଙ୍କ ସ୍ତ୍ରୀ ଓ ପୁଅକୁ ପଠାଇଥିଲେ । ମାତ୍ର ସେତେବେଳେ ପେପୁର ସ୍କୁଲ ଛୁଟିଥିଲା ଓ କନି ମୋ ସହିତ ସମୟ କାଟାଇବ ବୋଲି ସମର୍‌ରେ କିଛି କୋର୍ସ ନେଇ ନଥିଲା । କିନ୍ତୁ ଏଇଲେ କାହାରି ଆଉ ଛୁଟି ନାହିଁ । କଥାହେଲା ପଶ୍ଚିମ ସୀମାନ୍ତରେ ଥିବା କାଲିଫର୍ଣ୍ଣିଆ ରାଜ୍ୟକୁ ମୁଁ କେମିତି ଏକା ଯାଇପାରିବି ? ଚିହ୍ନା ଜଣା ଅଛନ୍ତି ଅବଶ୍ୟ । କାହାକୁ ଯୋଗାଯୋଗ କରିବି ? ରଂଜନଙ୍କୁ ମୋ ସହିତ ଯାଇ ଚାରି ପାଂଚଦିନ କଟାଇବାକୁ ହବ । କିନ୍ତୁ କାଲିଫର୍ଣ୍ଣିଆର ସାନ୍‌ହୋଜେ ସହରରେ ବାସକରୁଥିବା ଡାକ୍ତର ଓ ସମାଜସେବୀ ଓଡ଼ିଆ ମହିଳା ଡକ୍ଟର ଅଂଜଳିକା ପଟ୍ଟନାୟକ ମୋତେ କହିଲେ, 'ଏକା ଚାଲିଆସନ୍ତୁ । ଆପଣଙ୍କୁ ବୁଲାଇବା ଦାୟିତ୍ୱ ଆମର ।' ପ୍ରଖ୍ୟାତ ଲେଖକ ଗୋପିନାଥ ମାହାନ୍ତିଙ୍କ ଦ୍ୱିତୀୟ କନ୍ୟା ଅଂଜଳିକା । 'ସାନ୍ତାକ୍ଲାରା ଭ୍ୟାଲି ମେଡ଼ିକାଲ ସେଣ୍ଟର୍'ରେ ସେ ଡାକ୍ତରାଣୀ । ସେ ବି ମୋତେ ପୂର୍ବରୁ ଓଡ଼ିଶା ଆସିଥିବା ଅବସରରେ ତାଙ୍କ ସହ ଯୋଗାଯୋଗ କରିବାକୁ କହିଥିଲେ । ଯା' ହଉ ସ୍ଥିର ହେଲା, ମୁଁ ଡଲାସରୁ ସାନ୍‌ହୋଜେକୁ ଏକାକୀ ଫ୍ଲାଇ କରିବି । ପ୍ରଶାନ୍ତ ମହାସାଗର ଦେଖିବାକୁ ମୋର ବହୁତ ଇଚ୍ଛାଥିଲା । କାହିଁକି ନାଁ ଗୋପି ମଉସାଙ୍କର ସେହି ମହାସାଗର ତଟରେ ଶେଷ ସଂସ୍କାର ହୋଇଥିଲା । ସେ ଅଂଜଳିଙ୍କ ଘରେ ଚିକିତ୍ସିତ ହେଉଥିବାବେଳେ ପ୍ରାଣତ୍ୟାଗ କରିଥିଲେ । ଲାଗୁଥିଲା ପ୍ରଶାନ୍ତ ମହାସାଗରର ତଟଦେଶରେ କାଳେ ମଉସାଙ୍କ ଆତ୍ମାର କିଛି ଭାବ ତରଂଗକୁ ମୁଁ ଛୁଇଁ ପକାଇବି । ତେବେ ସେଥି ନିମିତ୍ତ ପଥ ଉନ୍ମୁକ୍ତ ହେଲା । ବର୍ତ୍ତମାନ ପେପୁ ବଡ଼ ଅଝଟ କଲା । ଗୁଡ଼ାଏ ଦିନ ମୋ ସାଂଗରେ ବୁଲି ଦେଖି, ତାର ମନ ବଢ଼ିଯାଇଛି । ଅହୋରାତ୍ର ଲଗାଇଲା 'ବୋଉ, ମତେ ବି ସାଂଗରେ ନେଇଚାଲ ।' ଶେଷକୁ ନିରସ୍ତ ହୋଇ କହିଲା-'ଯାଅ ଯେ, କାଲିଫର୍ଣ୍ଣିଆ ଭୂମିକମ୍ପର ରାଜ୍ୟ । ହୁଏତ ତୁମର ସେଇଠି ଶେଷ ହୋଇଯିବ ।' ଏପରି କହିଥିବାରୁ ମାଆଠାରୁ ଗାଳି ଖାଇଥିଲା ଅବଶ୍ୟ । ପ୍ରକୃତରେ ଏହି ଭୂମିକଂପର ରାଜ୍ୟରେ ଘର ଓ ପୋଲ ସବୁକିଛି ଭୂକଂପର ପ୍ରତିରୋଧକ ଭାବେ ତିଆରି ହୋଇଛି । ଅବଶେଷରେ କାଲିଫର୍ଣ୍ଣିଆର ରାଜ୍ୟ ଅଭିମୁଖେ ମୁଁ ସେପ୍ଟେମ୍ବର ତିନି ତାରିଖ ରେ ଡ଼ଲାସ୍‌ରୁ ଫ୍ଲାଇକଲି । ଉଡାଣ ନିର୍ଦ୍ଧାରିତ ସମୟରୁ ଦେଢ଼ଘଣ୍ଟା ବିଳମ୍ବ ହେଲା । ମୋ ଝିଅ କ୍ୱାଇଁ ବ୍ୟସ୍ତହୋଇ ପଡ଼ିଲେ । ବୋଉ ଏକା ଯାଉଚି, କାଳେ ହଇରାଣ ହେବ । କିନ୍ତୁ ମୁଁ ଏତେବେଳକୁ ଅଭିଜ୍ଞ । ବିଦେଶର ବିମାନଯାତ୍ରା ମତେ କିଛି ନୂଆ ଲାଗୁ ନଥାଏ ।

ବିମାନ ଯାତ୍ରାର ନିରାପତ୍ତା ଯାଞ୍ଚ କଥା ନ କହିଲେ ନଚଳେ । ନ୍ୟୁୟର୍କ ଗଲାବେଳକୁ ଯାହା, ବର୍ତ୍ତମାନ ବି ସେଇଆ ଭୋଗିବାକୁ ପଡ଼ିଲା । ଚୁଡ଼ି, ଚେନ୍, ଘଣ୍ଟା, ଜୋତା, ମୋଜା, ସବୁ ସ୍କାନିଂ ହେଲା । ପୁଣି ମେଟାଲ୍ ଡିଟେକ୍ଟର୍‌ରେ ପରୀକ୍ଷା ହେଲା । ବସ, ଠିଆହୁଅ ପୁଣି ଦୁଇଗୋଡ଼କୁ ଆଗପଛ କରି ଦୁଇଫୁଟ ବ୍ୟବଧାନରେ ରଖ । ପରୀକ୍ଷା ହେବ । ଏତେ ସବୁ ପରୀକ୍ଷା ଭିତରେ ଯାତ୍ରାର ମଜା ଟିକକ ଶୁଖି ଯାଉଥାଏ । ପୂର୍ବରୁ ଆମେରିକାରେ ଏତେ ଚେକିଂ ନଥିଲା । ନିଶ୍ଚିନ୍ତର ରହୁଥିଲେ ସେମାନେ । ସନ୍ତ୍ରାସବାଦୀ ଆକ୍ରମଣ ପରେ ଯାଞ୍ଚ ବ୍ୟବସ୍ଥା କଡାକଡ଼ି ହୋଇଛି । ଥରେ ନ୍ୟୁୟର୍କରୁ ବଫ୍‌ଲୋ ଗଲାବେଳେ ବଡ ଅଡୁଆରେ ପଡିଥିଲୁ-ମୋ ହାତର ବ୍ୟାଗ୍‌ରେ ଗୋଟିଏ ନେଲ୍‌କଟର ଥିଲା-ଦିଲ୍ଲୀରୁ ରହିଥିଲା । ସେଠାରେ ଯାଞ୍ଚ ହେଲା ଓ ସେଇଟି ସେଠି ରଖିଦେଇ ଯିବାକୁ କୁହାଗଲା । ସେ ଗୋଟିଏ କଟର୍ ସବୁ କଟର୍‌ଠାରୁ ଭିନେ । ତେଣୁ ମୁଁ ଅମଙ୍ଗ ହେଲି । ତାକୁ ଛାଡ଼ିଯିବାକୁ ଇଚ୍ଛା ନଥିଲା । ସେମାନେ କହିଲେ ତା' ହେଲେ ସୁଟ୍‌କେଶ୍ ଫିଟାଇ ସେଥିରେ ରଖନ୍ତୁ । ସୁଟ୍‌କେଶ୍ ଲଗେଜ୍‌ରେ ଚେକ୍ ଇନ୍ ହୋଇ ଚାଲିଗଲାଣି । ଅତଏବ୍ କଟର୍‌ଟି ସେଇଠି ରଖିଦେଲୁ । ମୋ ଲୁଗାର ସେପ୍‌ଟିପିନ୍ ଓ ମୁଣ୍ଡ କଣ୍ଟା ପାଇଁ ସବୁବେଳେ ଡିଟେକ୍‌ଟର୍ କେଁ କେଁ କରେ ଓ ସଫେଇ ଦେବାକୁପଡେ । ଆମେରିକାର ଡୋମିଷ୍ଟିକ୍ ଏୟାର୍ ଲାଇନ୍‌ରେ ଏହିପରି କଡ଼ା ଚେକିଂ ।

ଡଲାସ୍‌ରୁ ସାନ୍‌ହୋଜେକୁ କେହି କେହି ସାପ୍ତାହିକ ଯାତ୍ରୀ ଥାଆନ୍ତି-କାଲିଫର୍ଣ୍ଣିଆରେ ରହନ୍ତି । ଡଲାସ୍‌ରେ କାମ କରନ୍ତି । ଫ୍ଲାଇଟ୍ ଡେରି ହେବାରୁ ପ୍ଲେନ୍ ଭିତରେ ଡ଼ିନର ଦିଆହୋଇଗଲା । ଅଞ୍ଜି କହିଥିଲେ, 'କିଛି ଆଣିବା ଦରକାର ନାହିଁ । ମୋର ଲୁଗାପଟା ସବୁ ଅଛି । ଚାରି ପାଂଚଟା ଦିନ ତ !' ମୁଁ କେବଳ ଗୋଟେ ଛୋଟ ଷ୍ଟ୍ରଲର୍ ନେଇ ଯାଇଥିଲି । ତିନି ଘଣ୍ଟା ଫ୍ଲାଇଟ୍ । ପ୍ଲେନ୍ କାଲିଫର୍ଣ୍ଣିଆ ଧରିଲା ବେଳକୁ ଝର୍କାବାଟେ ଦିଶୁଥାଏ, ଭୂପୃଷ୍ଠର ସୁନ୍ଦର ଆଲୋକ ସଜ୍ଜା । ସାନ୍‌ଫ୍ରାନ୍‌ସିସ୍କୋ ସହର ପର୍ବତ ଉପରେ ଅବସ୍ଥିତ ହେତୁ ଆଲୋକମାଳା ନିକଟତର ଦିଶୁଛି, ପ୍ଲେନ ମଧ୍ୟ କିଛିଟା ତଳକୁ ଖସୁଛି । ବିସ୍ତୃତ ଅଞ୍ଚଳର ଏହି ଅପୂର୍ବ ଆଲୋକ ସଜ୍ଜାକୁ ବର୍ଣ୍ଣନା କରିବା ମୋ ଶକ୍ତିର ଅତୀତ । ତାରାଭର୍ତ୍ତି ଅମାବାସ୍ୟାର ଆକାଶ ବି ଆଜିକାଲି ବିଜୁଳିବତୀ ଯୋଗୁଁ ଆଉ ଉପଭୋଗ୍ୟ ହେଉ ନାହିଁ । ବିତ୍ତଶାଳିନୀ ଆମେରିକାର ବୃହତ୍ ନଗରୀର ଏହି ଆଲୋକ ବିନ୍ୟାସ ଦୂରେଇ ଯାଉ ନଯାଉଣୁ ଆମେ ଓହ୍ଲେଇଲୁ ସାନହୋଜେରେ । ଯାତ୍ରୀମାନେ ତରବର ଚାଲିଥାନ୍ତି । ରାତି ଦଶଟା ହେଲାଣି । ହଠାତ୍ ଲକ୍ଷ୍ୟକଲି ଗେଟ୍ ପାଖାପାଖି ଜଣେ ଭଦ୍ରଲୋକ । ମୋତେ ଚାହିଁ ସୌଜନ୍ୟର ହସ

ହସୁଛନ୍ତି । ଗହଳି ଭିତରେ ଅଂଜି ଶାଢ଼ୀପିନ୍ଧିଛନ୍ତି- ତାଙ୍କର ଆଶଙ୍କା କାଳେ ମୁଁ ତାଙ୍କୁ ଚିହ୍ନି ନ ପାରିବି, ତେଣୁ ସେ ଶାଢ଼ୀ ପିନ୍ଧି ଆସିବେ ବୋଲି କହିଥିଲେ । ପ୍ରକୃତରେ ତାଙ୍କ ମୋ ଛଡ଼ା ଶାଢ଼ୀ ପିନ୍ଧାଳି କେହି ନଥିଲେ ସେଠି । ଅଂଜିଙ୍କ ସ୍ୱାମୀ ସୂର୍ଯ୍ୟବାବୁ ଡ୍ରାଇଭ୍ କଲେ । ଆମେ ପନ୍ଦର ମିନିଟ୍‌ରେ ତାଙ୍କ ଘରେ ପହଂଚିଲୁ ।

ଏବେ ଅଂଜିଙ୍କ ଘରେ ଅପେକ୍ଷା କରିଥାଏ ମୋର ସହପାଠିନୀ ସୁନୀତି । ତା'ର ସ୍ୱାମୀ ସରୋଜ ବେହେରା, ଲେଖକ୰ ଭୁବନେଶ୍ୱର ବେହେରାଙ୍କ ପରିବାରର । କଲେଜରୁ ଉଠିବାପରେ ସୁନୀତି ସହ ଦେଖାହୋଇ ନଥିଲା-ଶୁଣିଥିଲି ଆମେରିକାରେ ଖୁବ୍ ଭଲରେ, ବଡ଼ ଚାକିରୀ କରି ଅଛି । କୋଳାକୋଳି ହେଲୁ । ପରସ୍ପର ଯେ ପଢ଼ିଲା ବେଳଠାରୁ ବେଶୀ କିଛି ବଦଳିନୁ-ପରସ୍ପରକୁ ଏପରି ତାରିଫ୍ କଲୁ । ସୁନୀତି ଲସ୍ ଆଞ୍ଜେଲସ୍‌ରେ ରହନ୍ତି-ଏଠାକୁ ଆସିଥିଲେ-ମୋ ଆସିବା ଶୁଣି ତାଙ୍କ ପ୍ରିୟବନ୍ଧୁ ସୂର୍ଯ୍ୟବାବୁଙ୍କ ଘରେ ଅପେକ୍ଷା କରିଛନ୍ତି । ସୁନୀତି ରସାୟନ ଶାସ୍ତ୍ରରେ ପ୍ରଥମ ହୋଇ ଥିଲେ-ସ୍ନେହୀ ଝିଅଟି- ଆଜି ବି ସେମିତି ସ୍ନେହୀ ମନେ ହେଲା, ସୁନୀତି ଙ୍କ ସହ ସାକ୍ଷାତ ହେବାଟା ବୋନସ୍ । ତାଙ୍କ ଘରକୁ ଯିବାକୁ ସମୟ ସୁଯୋଗ ନଥିଲା । ଆଉ ଥରେ ଗଲେ ସିଧା ତାଙ୍କ ଘରକୁ ଯିବି-କହିଲି । ରାତି ବାରଟାରେ ସୁନୀତି ଡ୍ରାଇଭ୍ କରି ସାନହୋଜେରେ ତାଙ୍କ ପୁତୁରାଙ୍କ ଘରକୁ ଫେରିଲେ ।

ପରଦିନ ସକାଳ ନଅଟା ସୁଦ୍ଧା ବାହାରିଲୁ । ଆଜି ଟିଟା (ଅଧ୍ୟାପିକା ଡଃ ଜୟନ୍ତିକା, ପଦ୍ମଭୂଷଣ ଗୋପିନାଥ ମହାନ୍ତିଙ୍କ ସାନ ଝିଅ) ମୋର ଗାଇଡ୍ । ଏଇ ଷ୍ଟାନ୍‌ଫୋର୍ଡ଼ ୟୁନିଭ୍ କଥା ଗୋପି ମଉସା ବରାବର କହୁଥିଲେ, ଅଧିକାଂଶ ନୋବେଲ୍ ପୁରସ୍କାର ପ୍ରାପ୍ତ ସାହିତ୍ୟିକ ଓ ବୈଜ୍ଞାନିକଙ୍କ ଚରାଭୂଇଁ ଏଇଟା । ଏହାର ପ୍ରତିଟି ଧୂଳିକଣାରେ ମହାର୍ଘ ଚେତନାର ସ୍ପର୍ଶ ରହିଛି । ଗୋପିମଉସା ବହୁସ୍ଥାନରେ ଆମେରିକା ଭ୍ରମଣ ବକ୍ତବ୍ୟରେ ଉପରୋକ୍ତ ମତେ କହିଥିଲେ, ମୋତେ ବିଭୋର ଲାଗିଲା । ଏହି କ୍ୟାଂପସ୍‌ରେ ଏକ ବିରାଟ ଲାଇବ୍ରେରୀ, ଯେଉଁଥିରୁ ତୁମେ ଚାହିଁଲେ ବହିପତ୍ର କ୍ରୟ କରିପାରିବ । ସମୟ ଦେଇ ପଢ଼ି ବି ପାରିବ । ଅବଶ୍ୟ ପାସ୍ (ଅନୁମତିପତ୍ର) ଥିବା ଚାହିଁ । ଟିଟାଙ୍କର ଥିଲା । ତେଣୁ ମୁଁ ବସି କେତେକ କବିତା ପଢ଼ିଲି-ବିଶ୍ୱର ସବୁ ବିଶିଷ୍ଟ କବିଙ୍କ ରଚନା-ଅଥଚ୍ ସମୟ କାହିଁ-'ଜହ୍ନ ହସୁଛି, ରାତି ନାହିଁ' ପରି ଅବସ୍ଥା, ଦୁଇଖଣ୍ଡ କବିତା ସଂକଳନ କିଣିଲୁ-ଖଣ୍ଡେ ମୁଁ କିଣିଲି ଖଣ୍ଡେ ଟିଟା କିଣି ମତେ ପ୍ରେଜେଣ୍ଟ କଲେ । କ୍ୟାପଂସ୍ ଭିତରେ ଚର୍ଚ୍ଚ, ପାର୍କ, ପୁଷ୍ପସଜ୍ଜା-

ସବୁଜ ଲନ୍-କେତେ ଫଟୋ ନେଲୁ । ବିଶ୍ୱର ସର୍ବୋତ୍ତମ ଚିନ୍ତାନାୟକ ମାନଙ୍କ ପୀଠସ୍ଥଳୀ, ସତେ କେଡ଼େ ପବିତ୍ର ଏଇ ଷ୍ଟାନ୍‌ଫୋର୍ଡ଼ ୟୁନିଭରସିଟି !

ଦିନ୍ର ଦୁଇଟାରେ ଅଞ୍ଜଳିକାଙ୍କ ସିଫ୍‌ଟ୍ ଶେଷ । ମୋତେ ନେଇ ଚାଲିଲେ ପେଣ୍ଟେଳେ ଅଭିମୁଖେ । ପ୍ରଶାନ୍ତ ମହାସାଗରର ସମତଳ ବାଲୁକାଶଯ୍ୟା ବେଳାଭୂମି । ଅଥଚ ଲହଡୀ ନଥିବାରୁ ଏହି ମହାସାଗରର ନାମ ପ୍ରଶାନ୍ତ । ସୁଗଭୀର, ସୁବୃହଦ୍ ମହୋଦଧି ସତେ ଯେପରି ସୁନୀଳ, ସୁଶାନ୍ତ, ସଂଯତ । ଅଥଚ ମଣିଷ ଏ ଯୁଗରେ ଭୟଙ୍କର ହୋଇ ଉଠିଛି । ତାର ଅଶାନ୍ତ ପ୍ରଭାବ ମନେହେଲା ସମୁଦ୍ରରେ ତ ପଡିନାହିଁ ! ମନେହେଲା ଯୁଗ ପ୍ରଭାବ-ମୁକ୍ତ ଏହି ରତ୍ନାକର । ଗୋପି ମଉସାଙ୍କ ମରଶରୀରର ଭସ୍ମାବଶେଷରେ ପବିତ୍ର ଏଇ ମହୋଦଧିତଟ-ଭୂମିକୁ ମସ୍ତକରେ ସ୍ପର୍ଶକଲି । ନିକଟରେ ଥିବା ମିଲିଟାରୀ ଟ୍ରେନିଂର ପୁଅ, ଝିଅ (ସତର ଅଠର ବର୍ଷ ବୟସର) ପୁଅଙ୍କର ଛୋଟ ପ୍ୟାଣ୍ଟ ଖୋଲାଦେହ ଓ ଝିଅଙ୍କର ଛୋଟ ପ୍ୟାଣ୍ଟ-ଅଧା ଗଂଜି(ବଡିସ୍‌ପରି) ପିନ୍ଧି ଧାଉଁଥାନ୍ତି-ଆମେ ତାଙ୍କ ଫଟୋ ନେଲୁ । ଅଂଜି ତାଙ୍କ ସହ କଥାବାର୍ତ୍ତା ହେଲେ-ମୋର ପରିଚୟ କରାଇ ଦେଲେ । ଆମେରିକାରେ କିଏ ବା କାହା ପରିଚୟକୁ ଚାହିଁ ଯାଉଛି ? ଆମେ ପୁଣି ଅଣ-ଆମେରିକୀୟ । ବାଲି ଉପରେ ଚଦର ବିଛାଇ ବସି, କେବେ ସମୁଦ୍ରର ଅଗଭୀର କୁ ପଶି, ଆମେ ବହୁତ ମଜ୍ଜାକଲୁ । ଖରା ଥିଲା ଆରାମ ଦାୟକ; ସଂଖ୍ୟାରେ ଅଳ୍ପ ହେଲେବି ଥିଲେ ଗୋରା, କଳା, ପରିବାର କେତୋଟି-ବେଳାଭୂମି ପରିଚ୍ଛନ୍ନ-ତଟଭୂମି ସୀମାନ୍ତରେ ଖୁବ୍ ବଡ଼ ବଡ଼ ଗଛର ଛାଇ ମଧ୍ୟ ଥାଏ । ସୁଦୀର୍ଘ 'ମଣ୍ଟେରେ' ଉପକୂଳରେ ଆମେ ଡ୍ରାଇଭ୍ କରି ବୁଲିଲୁ ।

ଏଥର ଫେରିବା କଥା । ମୁଁ ତ ମ୍ୟାପ୍ ଦେଖି ବାଟ ବତାଇବାର ବାଗଜାଣେ ନାହିଁ । ଅଂଜି ନିଜେ ଠଉର କିର ଯାହା ଗାଡ଼ି ଚଳାଉଥାନ୍ତି ନିର୍ଭୟ ଚିତ୍ତରେ । ଭୁଲ ରାସ୍ତାରେ ଆସି ପାହାଡ ଚଢ଼ି ପହଞ୍ଚିଗଲୁଣି ବହୁଦୂର ରାସ୍ତାର ସବୁଠୁଁ ଉଚ୍ଚାସ୍ଥାନରେ-ଏଠାରେ, ପାହାଡ଼ ଉପରୁ ଗଡାଣି ରାସ୍ତା ଆରମ୍ଭ । ସେଇଠି ଗୋଟେ ପଏଣ୍ଟ ଥିଲା, ଗାଡ଼ି ବୁଲାଇ ହେଲା ଓ ଅଂଜି ଏକା ନିଶ୍ୱାସରେ ଫେରିଲେ ପ୍ରାୟ ତିରିଶ୍ କି.ମି. ରାସ୍ତା । ସମତଳକୁ ଆସି ପୁଣି ରାସ୍ତା ବୁଝି ନେଲୁ ଓ ଫେରିଲୁ । ପରେ ସୂର୍ଯ୍ୟବାବୁ କହିଲେ 'ତୁମେ ଯେଉଁ ରାସ୍ତାର ପିକ୍‌ରୁ (ଶୀର୍ଷ) ଫେରିଲ-ସେଇ ରାସ୍ତାରେ ଗଡ଼ାଣିରେ ଆଗେଇ ଯାଇଥିଲେ, ଯେଉଁଠି ପହଞ୍ଚିଥାନ୍ତ, ତାହା ସାନହୋଜେକୁ ଆସିଥାନ୍ତା-ମାତ୍ର ସେ ରାସ୍ତାଟା

ବୁଲାଣି ଓ ଜଂଗଲ ହେତୁ ବେଶିଲୋକ ତାକୁ ମାର୍ଗରୂପେ ଗ୍ରହଣ କରନ୍ତି ନାହିଁ । ତୁମେ ଅଧୈର୍ଯ୍ୟ ହୋଇ ଫେରି ଆସିଲ । କିନ୍ତୁ ଗଡାଣିରେ ଖସି ଆସିଥିଲେ ରାସ୍ତା ସେଇଠୁ କମ୍ ହେଇଥାନ୍ତା ।' ଅନ୍ଧାର ମାଡ଼ିଆସୁଚି, ପାହାଡ଼ ଘାଟି, ପୁଣି ଅଚିହ୍ନା ରାସ୍ତା । ବାଟ ଯେ ଭୁଲିଛୁ, ଜାଣିସାରିଥିଲୁ ।



# ବୃକ୍ଷ ଦେବତା

'ଧନ୍ୟ ଜୀବନ ଧନ୍ୟ ତାର ।
ଦୁର୍ଲଭ କର୍ମ ଏ ବେଭାର ।
ମୁଁ ଏହା ବୃକ୍ଷଙ୍କର ସ୍ଥାନୁଁ ।
ଶିଖିଲି ପର୍ବତ ଗହନୁଁ-' ।
*(ଶ୍ରୀମଦ୍ ଭଗବତ୍-ଏକାଦଶସ୍କନ୍ଧ-ଯଦୁରାଜା ଅବଧୂତ ସମ୍ବାଦ)*

ଜୈବିକ ଜୀବନଚକ୍ରର ଦୁଇଦିଗରେ ରହିଛନ୍ତି ବୃକ୍ଷ ଓ ମନୁଷ୍ୟ । ସେମାନଙ୍କର ଆଦାନପ୍ରଦାନରେ ତିଷ୍ଠି ରହିଛି ଜୀବଜଗତ । ଉଭୟେ ପରସ୍ପରର ନିଃଶ୍ୱାସ ଓ ପ୍ରଶ୍ୱାସ ସହ ସଂଶ୍ଳିଷ୍ଟ । ସେଥିପାଇଁ ଭାରତୀୟ ପରମ୍ପରାରେ ବୃକ୍ଷ ପୂଜିତ ହୁଏ । ତୁଳସୀ, ବେଲ, ଅଁଳା ଓ କରଞ୍ଜ ଆଦି କେତେକ ଗଛ ପୂଜିତ ହୁଅନ୍ତି । ବରଓସ୍ତ ଗଛର ବିଭାଘର ହୁଏ । ସାହାଡ଼ା ଗଛକୁ ନେଇ ଲୋକଗଳ୍ପ ଗଢ଼ିଉଠେ । ଆମ୍ବପତ୍ର, ପଣସପତ୍ର, କଦଳୀପତ୍ର ପୂଜାପାଠରେ ଲାଗେ । ଏସବୁ ସତକଥା ହେଲେ ବି ମୁଁ ପ୍ରଥମେ ସେଇଦିନ ବୃକ୍ଷର ଦେବତ୍ୱକୁ ପ୍ରତ୍ୟକ୍ଷ କଲି, ତା'ର ମହିମା ମୋର ଶିରାପ୍ରଶିରାରେ ଭେଦିଗଲା । କାଲିଫର୍ଣ୍ଣିଆ ରାଜ୍ୟର ସାନ୍ତାକ୍ରୁଜ୍ ସହରର 'ରେଡଉଡ୍‌ସ୍' ଷ୍ଟେଟ ପାର୍କ (ଜଙ୍ଗଲ କହିଲେ ଅଧିକ ଯୁକ୍ତିଯୁକ୍ତ ହେବ) କୁ ଯାଇଥାଉ, ସାଙ୍ଗରେ ଥାନ୍ତି ଓଡ଼ିଶାର ପ୍ରଖ୍ୟାତ ଲେଖକ ଦିବଂଗତ ଗୋପୀନାଥ ମହାନ୍ତିଙ୍କ ସୁପୁତ୍ରୀ ୨ଜଣ, ଜଣେ ସମାଜସେବୀ ଡାକ୍ତର ଅଞ୍ଜଳିକା ଓ ଅନ୍ୟ ଜଣକ ପିଏଚ.ଡି.ପ୍ରାପ୍ତ ସମାଜସେବୀ ଜୟନ୍ତିକା । ବ୍ୟାପକ ଅଞ୍ଚଳରେ ଏହି ପାର୍କ 'ହେନରି କଓ୍ୱେଲ୍'ଙ୍କ ନାମରେ ନାମିତ ହୋଇଛି । ସେ ଥିଲେ ଜଣେ ଇଂରେଜ ବ୍ୟକ୍ତି, ଯାହାଙ୍କର ଏହି ବିରାଟ ଇଷ୍ଟେଟ ଥିଲା । ତାଙ୍କର ଥିଲେ ଦୁଇଗୋଟି କନ୍ୟା-ସାନଝିଅ ଆତ୍ମହତ୍ୟା କଲା ଓ ବଡ଼ଝିଅ ଅକାଳ ମୃତ୍ୟୁ ଲଭିଲା । ତେଣୁ ନିଃସନ୍ତାନ 'ହେନରି କଓ୍ୱେଲ' ଏହି ଇଷ୍ଟେଟକୁ ରାଜ୍ୟକୁ ଦାନ କରି ଦେଲେ । ଏହି ରେଡଉଡ୍ ଗ୍ରୋଭ୍ ର ପ୍ରବେଶପଥରେ ବିଶ୍ୱର ସବୁଠାରୁ ଦୀର୍ଘଜୀବୀ ଏକ ରେଡଉଡ୍ ବୃକ୍ଷର ବ୍ୟବଚ୍ଛେଦାଂଶ ପ୍ରଦର୍ଶିତ ହୋଇଥିଲା । ଏହାର ଆୟୁଷ ଥିଲା ୨୨୦୦ ବର୍ଷ । ଯଦିଓ ସାନ୍ତାକ୍ରୁଜର ଏଇ ରେଡ଼ଉଡ୍ ଗ୍ରୋଭ ମଧ୍ୟରେ ଏବେ ମାତ୍ର ୧୪୦୦/୧୫୦୦ ବର୍ଷର ପୁରୁଣା ବୃକ୍ଷ ରହିଛି । କାଲିଫର୍ଣ୍ଣିଆର ଉପକୂଳ

ଅଞ୍ଚଳର ଏହି ଗ୍ରୋଭରେ ୩୦୦ ଫୁଟ ଉଚ୍ଚ ଓ ୩୨ ଫୁଟ ଓସାର (ସର୍ବାଧିକ) ବୃକ୍ଷ ଅଛି । ହିମାଳୟର ଚୂଡା ପରି ଏହିବୃକ୍ଷ ଆକାଶ ଯାଏ ଛୁଇଁଛି । ଏତେ ବିରାଟ ବୃକ୍ଷ, ଅଥଚ ଓଟ୍ ଦାନା ପରି ଛୋଟ ବୀଜରୁ ଏହାର ଉତ୍ପତ୍ତି । ଏହି ଗଛମାନଙ୍କ ମଧ୍ୟରେ ରହିଲେ, ଚିରନ୍ତନତାକୁ ସ୍ପର୍ଶ କରିବାର ଅନୁଭବ ଆସେ । ଝଡ଼ରେ ଭାଙ୍ଗିଯାଏ ଗଛର ଶୀର୍ଷ,କୋରଡ଼ ବି ଗଢ଼ି ହୋଇଯାଏ ବଜ୍ରପାତରେ । ମାତ୍ର ଗଛ ବଂଚିଥାଏ ।

ଜନ୍.ସି.ପ୍ରିମଣ୍ଟ ନାମକ ଜଣେ ବ୍ୟକ୍ତି ୧୮୪୩ରୁ ୪୬ ମଧ୍ୟରେ କାଲିଫର୍ଣ୍ଣିଆର ଏହି ଅଞ୍ଚଳକୁ ଆବିଷ୍କାର କରି ସେଠାରେ ବାସ କରିଥିଲେ, ଗୋଟେ ଗଛର ବିରାଟ କୋରଡ ଭିତରେ । ସେଇ ଏକବାଗିଆ ଲୋକଙ୍କ ବାସସ୍ଥାନ କୋରଡ ଭିତରକୁ ଆମେ ମଧ୍ୟ ଗଲୁ । ତା'ର କାନ୍ଥରେ ଠଣା ଭଳି କୋଠୋଟି ଆକାର ଅଛି । ଜଣେ ଲୋକ ରହିପାରିବା ଭଳି ଛୋଟ ବଖରାଏ ଘର । ଅବଶ୍ୟ ଜଣେ ଗାଇଡ ମହମବତୀ ଜଳାଇ ତା' ଭିତରକୁ ଆମକୁ ନେଇ ଦେଖାଇଲେ । ସେ ଗାଇଡ୍ ଜଣକ, ଜଣେ ଅବସରପ୍ରାପ୍ତ ପ୍ରଫେସର । ସେ ଚାକିରିରୁ ଅବସର ନେଇସାରି ଏଇ ଗାଇଡ୍ କାମକୁ ମାହାଳିଆରେ ଆଦରି ନେଇଛନ୍ତି । ପ୍ରାୟ ସକାଳବେଳା ଦିନ ଦୁଇଟା ଯାଏ ସେ ଗାଇଡ କରନ୍ତି ପର୍ଯ୍ୟଟନକାରୀଙ୍କୁ, ଅବଶ୍ୟ ବିନା ମୂଲ୍ୟରେ । ଖୁବ୍ ହସହସ ବ୍ୟକ୍ତି ସେ ।

ଜଙ୍ଗଲ ଭିତରେ ମାଟିଗୋଡ଼ିର ଗୋଟେ ରାସ୍ତା ଥାଏ । ରେଡ୍‌ଉଡ୍ ଗଛ ସହ ଥାଏ ଓକ୍, ୟୁକାଲିପଟାସ ଓ ବେ'ଲିଭ ଗଛ । ରେଡ୍‌ଉଡ୍ ଗଛ ଛାଇତଳେ ଅନେକ ଛୋଟ ଛୋଟ ଗଛ, ଗୁଳ୍ମ ପୁଣି ସୁନୁସୁନିଆ ପତ୍ର ପରି ଗଛ ମାଡ଼ିଯାଇଛି । ହରିଣ ଓ କାଠହଣା ଚଢ଼େଇ ଏବଂ ଧୂସର ଗୁଣ୍ଡୁଚି ଏଠାରେ ରହନ୍ତି । ଏହି ଗଛର ବକଳର ୧୦ ଇଞ୍ଚ ମଧ୍ୟରେ ଅସ୍ମୋସିସ ହୁଏ ଓ ଗଛ ଖାଦ୍ୟ ଗ୍ରହଣ କରେ । ୧୦୦ବର୍ଷ ତଳେ ଏହି ଜଙ୍ଗଲରେ ନିଆଁ ଲାଗିଥିଲା । ମାତ୍ର ନିଆଁ ଏହାର ୭ରୁ ୧୨ ଇଞ୍ଚ ବହଳର ଥିବା ବକଳକୁ ଭେଦି ପାରି ନାହିଁ-ଅଗ୍ନିର ପ୍ରତିରୋଧ କରେ ବକଳ । ଅତଏବ ଗଛ ଅମର ରହେ । ଅମର ନୁହଁ ତ କ'ଣ ? ମଣିଷର ହେପାଜତ ସେ ଲୋଡେ ନାହିଁ । ତଥାପି ତା'ର ରକ୍ଷାଣବେକ୍ଷଣ ଓ କଟାକଟି ନକରି ସୁବିଧାରେ ବଢ଼ିବାକୁ ଦେବାର ଯତ୍ନ ଏ ଯୁଗର ମଣିଷ କରୁଛି-ସେମାନେ ସଚେତନ ଆମେରିକାବାସୀ ।

ରେଡଉଡ୍ ଗଛର ରଙ୍ଗଲାଲ । କାରଣ ଏହି କାଠରେ ପ୍ରଚୁର Tarnic Acid ଥାଏ ଓ ଏହାର ଅମ୍ଳତା ଏବଂ ମୋଟୋ ବକଳ ଗଛକୁ ପୋକ, ଛତୁ ଓ ଅନ୍ୟାନ୍ୟ ରୋଗଠାରୁ ରକ୍ଷା କରେ । ତେଣୁ ଉପରୋକ୍ତ କାରଣଗୁଡ଼ିକରୁ ବହୁ ବୃକ୍ଷ ମୃତ୍ୟୁବରଣ

କରୁଥିଲା ବେଳେ ରେଡ଼ଉଡ୍ ବଞ୍ଚି ରହେ । ଗଛର ମୂଳରୁ ନୂଆଗଛ ଉଠି ମୂଳଗଛ ଗଣ୍ଡି ସହ ମିଶି ଏକାକାର ହୋଇଯାଏ, ସହଜରେ ଅଲଗା ବୋଲି ଚିହ୍ନି ହୁଏନା । ଗଛର ମୂଳରୁ ଚାରିକଡ଼ ଯାକ ଗଛ ଉଠି ଗଛଟି ଗୋଲେଇରେ ବଢ଼ିବାରେ ଲାଗିଥାଏ । ଗୋଟିଏ ଗଛର ଗଣ୍ଡି ବିରାଟ ବଖରାଏ କୋଠା ଭଳି । ଏହାର ଗଣ୍ଡି ମଧ୍ୟରେ ରାସ୍ତାଟିଏ କରିଦେଲେ ମୋଟରଗାଡ଼ି ବି ଯାଇ ଆସି ପାରିବ । କୋରଡ ତ ରହିଛି ।

ଆମେ ଯାଇଥିଲୁ ଗ୍ରୀଷ୍ମଦିନେ, ପାଗ ଭଲ ଥିଲା । ବର୍ଷା ଝଡ଼ରେ ମୋର ମନେହୁଏ, କେହି ତା ଭିତରକୁ ଯାଉ ନଥିବେ । ଆକଶରେ ସୂର୍ଯ୍ୟ ଥିଲେ ବି ମଧ୍ୟାହ୍ନରେ ତାଙ୍କ କିରଣ ଏହି ଭୂମିରେ ପଡେ ନାହିଁ । ଖାଲି ଛାଇ-ଗଛର ଉଚ୍ଚତା ଅତ୍ୟଧିକ-ମୁଣ୍ଡ ପୂରାପୂରି ବଙ୍କାଇ ପଛକୁ ନେଲେ ଗଛର ଶୀର୍ଷକୁ ଦେଖିହେବ । ବହୁବର୍ଷ ତଳେ କାଶ୍ମୀର ଯାଇଥିଲି । ଜମ୍ମୁ-କାଶ୍ମୀର ରାସ୍ତାରେ ଯେଉଁ ଅତ୍ୟୁଚ୍ଚ ପାହାଡ଼ ଶୀର୍ଷ ଆକାଶକୁ ଲୁଚାଇ ଦେଇଥାଏ, କୋଉଠି କେମିତି ପାହାଡ଼ଚୂଡ଼ା ଆଗରେ ଚେନାଏ ଆକାଶ ଦିଶେ ଠିକ୍ ସେହିପରି-ଏଠି ରେଡଉଡ ଗଛ ଅଗରେ ହାତେ ଆକାଶ ଦିଶୁଥାଏ ।

ଗଲା କେଇବର୍ଷ ତଳେ କାଲିଫର୍ଣ୍ଣିଆରେ ହୋଇଥିବା ପ୍ରବଳ ବାତ୍ୟାରେ ୨୩ଟି ଗଛ ଉପୁଡ଼ିଥିବା, ଭାଙ୍ଗିଥିବା ଆମେ ଦେଖିଲୁ । ମାତ୍ର ସେଗୁଡିକ ବି ସୁରକ୍ଷିତ । କେହି ଘେନି ପଳାଇଯିବାର ନାହିଁ । ମୂଳକଥା ସେହି ଗଛର ଜୀବନୀଶକ୍ତି ତା'ର ବାହ୍ୟ ବଳୟ (ବଲ୍‌କଳ) ରେ ରହିଥାଏ । ତେଣୁ ଗଣ୍ଡିର ମଞ୍ଜ କଣା ହୋଇଗଲେ ମଧ ଗଛର କ୍ଷତି ହୁଏନାହିଁ । ବଜ୍ରପାତରେ କୋଉଠି କେମିତି ଅଧେ ପୋଡ଼ି, ଆଉ ଅଧକ ବି ବଞ୍ଚିଥାଏ ।

ମଣିଷର ଜୀବନକାଳ ୬୦/୭୦/୮୦ ବର୍ଷ ମଧ୍ୟରେ ହାରାହାରି ସୀମିତ । ସେହିକାଳ ମଧ୍ୟରେ କେତେ ଯାତନା, ହା ହତାଶ, ପୁଣି ହିଂସା, ଦ୍ୱେଷ, ଲୋଭ, କୁକର୍ମ-ତା' ସହ ନିଷ୍ଠୁରତା । ଅଥଚ ଏଇ ରେଦ୍‌ଉଡ୍ ବୃକ୍ଷ ହଜାର ହଜାର ବର୍ଷ ବଞ୍ଚିବ, ଶାଖାଚ୍ଛେଦ, ବଜ୍ରପାତ, ବାତ୍ୟା ସହିବ, ତଥାପି ପୃଥିବୀକୁ ସବୁଜ କରିବା ନିମିତ୍ତ ଜୀବଜଗତର କଲ୍ୟାଣ ନିମିତ୍ତ ହଜାର ହଜାର ବର୍ଷ ଧରି ବଞ୍ଚି ରହିଥିବ-ଏହି ଆଦେଶ ବୃକ୍ଷକୁ କିଏ ଦେଇଛି କେଜାଣି ? ହଜାରେ ବର୍ଷ କାଳକୁ ମଣିଷ କଳ୍ପନାରେ ଆଣିବା ସହଜ ନୁହେଁ । ଅଥଚ ବୃକ୍ଷଟିଏ ସେହି କାଳକୁ ଅଙ୍ଗେ ନିଭେଇବ । ଚେର ଭେଦି ଚାଲିବ ମାଟିର ଅଭ୍ୟନ୍ତର । ଡାଳ ଶୀର୍ଷକୁ ଉଠି ଚାଲିବ ଆକାଶଆଡ଼େ । ସୂର୍ଯ୍ୟାଲୋକକୁ ଡାଳପତ୍ରର ଅଞ୍ଜି ପତେଇ ବାନ୍ଧିନବ ଅଥଚ ତା'ର ସ୍ୱାର୍ଥ ନାହିଁ, ପର

ଆପଣା ନାହିଁ । ଏହି ବୃକ୍ଷକୁ ଅନାଇଲେ ପ୍ରକୃତରେ ଈଶ୍ୱର ଦିଶିଯାଆନ୍ତି । ସେଇ ବୃକ୍ଷ ଦେବତାଙ୍କୁ ମୁଁ ସେଠାରେ ଆଭୂମ ପ୍ରଣିପାତ କଲି ସେହି ଜଙ୍ଗଲ ଭିତରେ । ମୋ ସହିତ ଅଞ୍ଜି ଓ ଟିଟା ମଧ୍ୟ । ସେମାନେ ବହୁବାର ଏଠାକୁ ଆସିଛନ୍ତି ଓ ପ୍ରତିଥର ଏହି ବିପୁଳତା କିଛି ହୃଦୟ ଭିତରେ ବୋହିନେଇ ଯାଆନ୍ତି ।

ମୁଁ ଓଡ଼ିଆଣୀଟିଏ, ଭାଗ୍ୟ ବଳରେ ବୃକ୍ଷଦେବତାଙ୍କ ମହିମାକୁ ଅନୁଭବ କଲି । ଯଥାର୍ଥରେ ବଖାଣିପାରୁ ନାହିଁ-ଦେବତାଙ୍କର କ'ଣ ଆଦିଅନ୍ତ ଥାଏ ଯେ, ତାଙ୍କୁ ବଖାଣି ହେବ ? ନିଜ ରୂପରେ, ନିଜ ବିଭୂତିରେ ସେ ମହାନ୍ । ବୃକ୍ଷର ବ୍ୟାପ୍ତି, ତା'ର ସ୍ଥାୟିତ୍ୱ ଏବଂ ଏକ ଦିଗରେ ତା'ର ଦାମ୍ଭିକତା ଓ ଅପର ଦିଗରେ ତା'ର ଅନନ୍ୟ ଉଦାସୀନତା ଦେଖିଲେ, ସାକ୍ଷାତ ଦେବତା ପରି ପ୍ରତୀତ ହୁଏ ।



# ହିପ୍ପୀଙ୍କ ଅନ୍ତୁଡ଼ିଶାଳ

ସେଦିନ ସେପ୍ଟେମ୍ବର ପ୍ରଥମ ସପ୍ତାହର ସକାଳ । ଆମେ ବାହାରିଲୁ ସାନହୋଜେରୁ ସାନ-ଫ୍ରାନ୍-ସିସ୍କୋ-ପାହାଡ଼ ଉପରେ ଅବସ୍ଥିତ ଏହି ସହରଟିକୁ ପ୍ରଶାନ୍ତ ମହାସାଗର ଘେରିଥାଏ । ତେଣୁ ସେହି ସହରଟିର ଆୟତନ ବର୍ଦ୍ଧିତ ହୋଇ ପାରୁନାହିଁ ଏବଂ ଏହା ଖୁବ୍ ଜାକିଜୁକି, କଟକ ଓ କଲିକତା ସହରର ଆମେରିକା -ସଂସ୍କରଣ ଭଳି । ପରିଚ୍ଛନ୍ନତାରେ ଅବଶ୍ୟ କଟକ ଓ କଲିକତା କାହିଁ ତଳେ ରହିଯିବେ ! ପାସଙ୍ଗରେ ପଡ଼ିବେ ନାହିଁ । କିନ୍ତୁ ଆମେରିକାର ଅନ୍ୟ ସହରଗୁଡ଼ିକ ଯେପରି ପ୍ରଶସ୍ତ ଓ ଘର ଗୁଡ଼ିକର ବ୍ୟବଧାନ ଯଥେଷ୍ଟ, ଏଠାରେ ତା' ନାହିଁ । ବାଟରେ ମୁଁ ଜାଣିବାକୁ ପାଇଲି ଯେ, ଏହି କାଲିଫର୍ଣ୍ଣିଆ ରାଜ୍ୟଟି ବହୁଦିନ ସ୍ପେନ୍ ଓ ମେକ୍ସିକାନ୍ ଶାସନରେ ରହିଲା-ସେତେବେଳ ଠାରୁ ଅନେକ ସହରର ନାମ 'ସାନ୍' ବା 'ସାନ୍ତା' ନାମରେ ନାମିତ । 'ସାନ୍' ଶବ୍ଦର ଅର୍ଥ ହେଉଛି ଧର୍ମ ପ୍ରଚାରକ ବା ସାଧୁ 'ସାନ୍ତା ହେଉଛନ୍ତି ସାଧ୍ୱୀ,' 'ସାନ'ର ସ୍ତ୍ରୀ ଲିଙ୍ଗ । ଯେପରି 'ଲସ୍' ଆଞ୍ଜେଲ୍ସ୍ ଓ 'ଲାସ୍' ଭେଗାସ୍ । 'ଲସ' ଓ 'ଲାସ୍' ସେହିପରି ଅର୍ଥରେ ବିପରୀତ ଲିଙ୍ଗବାଚକ ଶବ୍ଦ । ଅନେକ ସହରର ପୂର୍ବରୁ ଏହି ଶବ୍ଦ ଲାଗିଥାଏ, ଜାଣିଲି ।

ଆମେ ଏହି ସହରରେ ଦୁଇଟି ପ୍ରସିଦ୍ଧ ସ୍ଥାନ ଦେଖିଲୁ । ଗୋଟିଏ ଲେଖକ ଜନ୍ ଷ୍ଟେନ୍ ବେକ୍‌ଙ୍କ ବାସଗୃହ, ଅପରଟି ବର୍କଲେ ୟୁନିଭରସିଟି । ଏତେବେଳକୁ ମୁଁ ଦେଖିଥିବା ୟୁନିଭର୍ ସଂଖ୍ୟା ଛଅ ଗୋଟି ଥିଲା, ଷ୍ଟାନ୍-ଫୋର୍ଡ, ସାନ୍ତାକ୍ରୁଜ, ବର୍କଲେ, ପୂର୍ବରୁ ପ୍ରିନ୍ସଟନ୍, ପରେ ହ୍ୟୁଷ୍ଟନ୍ ଏବଂ ମୁଁ ଯେଉଁଠି ବାସକଲି ତାହା ଆର୍ଲିଂଟନ ୟୁନିଭରସିଟି । ଆମେରିକାର ଶିକ୍ଷା କ୍ଷେତ୍ରରେ ଏହି ଆର୍ଲିଂଟନ୍ ୟୁନିଭସିଟି ନାମକରା ବିଶ୍ୱବିଦ୍ୟାଳୟ । କାରଣ ଟେକ୍ସାସର ବିଶ୍ୱବିଦ୍ୟାଳୟ ମାନଙ୍କର ଶିକ୍ଷା ଓ ଶୃଙ୍ଖଳା ସାରା ଆମେରିକାରେ ମାନ୍ୟତା ଲାଭ କରିଛି । ଆର୍ଲିଂଟନ ୟୁନିଭ୍‌ର ଛାତ୍ର ଛାତ୍ରୀଙ୍କୁ ମୁଁ ପାଖରୁ ଦେଖିଛି-ସେମାନଙ୍କ ସହ ମିଶିଛି-ତାଙ୍କ ଆବାସକୁ ଯାଇଛି, ତାଙ୍କ ଲାଇବ୍ରେରୀ, ଷ୍ଟଡି ସେଣ୍ଟର, ଜିମ୍, ସୁଇମିଂପୁଲ, କ୍ଲାସରୁମ୍ ବୁଲି ଦେଖିଛି ଓ ସେ ସବୁ ସ୍ଥାନରେ ଛାତ୍ରଛାତ୍ରୀଙ୍କୁ ମଧ୍ୟ ଭେଟିଛି । ଯଦିଓ ଏ ସବୁ ୟୁନିଭ୍‌ରେ ବାହାର ଦେଶର ଛାତ୍ରଛାତ୍ରୀ ଯଥେଷ୍ଟ ସଂଖ୍ୟାରେ ପଢ଼ନ୍ତି ଓ ନିଜର ମେଧାର ବିକାଶ ପାଇଁ ବହୁ ସୁଯୋଗ ଓ ସମୟ ପାଆନ୍ତି ।

ସାନ୍ ଫ୍ରାନ୍‌ସିସ୍କୋ ସହରରେ ଏକ ବଡ଼ ବ୍ରିଜ ଅଛି-ଯାହା ଝୁଲାପୋଲ, ମାତ୍ର ଏହାର ନାମ ଗୋଲଡ଼େନ୍ ଗେଟ୍ ବ୍ରିଜ୍ । ପ୍ରଶାନ୍ତ ମହାସାଗରର ବ୍ରେକ୍‌ୱାଟ୍‌ର 'ବେ' ଉପରେ ଏହି ପୋଲ ନିର୍ମିତ । ତା' ଖୁବ୍ ଆଧୁନିକ କୌଶଳରେ ତିଆରି । ସମୁଦ୍ର ସାରା ଧଳା ପାଲଟଣା ଜାହାଜ ଗୁଡିକ ଘୁରୁଥାନ୍ତି । ତା' ଉପରେ ଆମେ ଅନେକ ଫଟୋ ନେଲୁ । ଆମେ ଅର୍ଥାତ୍ ମୁଁ, ଅଂଜି, ଟିଟା ଓ ଗୋପୀ ମଉସାଙ୍କ ସାନକ୍ୱାଇଁ ରାମବାବୁ । ସେ ଦିନ ରାମବାବୁ ଆମକୁ ଡ୍ରାଇଭ୍ କରି ନେଇଥାନ୍ତି । ସମୁଦ୍ରକୂଳରୁ ଉପରକୁ ଉଠିଗଲା ପରେ ଏକ ମୁଖ୍ୟ ରାସ୍ତାକଡ଼ରେ ଲେଖକ ଷ୍ଟେନ୍‌ବେକ୍ ରହୁଥିଲେ । ଏବେ ସେ ଗୃହଟି ଏକ ସ୍ମାରକୀ । ଆଉ ବର୍କେଲେ ୟୁନିଭ୍‌ର ଲାଇବ୍ରେରୀର ପ୍ରବେଶଦ୍ୱାର, ଯାହା ଆମର ଦେବୀମେଲା (ଦୁର୍ଗାମଣ୍ଡପ)ର ଷ୍ଟାଇଲ୍‌ର, ମାତ୍ର ସେହି ଘରଠାରୁ ୧୦ ଗୁଣ ବଡ଼ହେବ ଓ ତା'ର ପ୍ରବେଶପଥ ଗ୍ରିଲ୍ଡ ଗେଟ୍‌ଦ୍ୱାରା ବନ୍ଦଥାଏ, ଯେହେତୁ ତାହା ଥାଏ ରବିବାର । ଅଥଚ ସେହି ସ୍ଥାନଟି ଆମେରିକାରେ ବେଶ୍ ଗୁରୁତ୍ୱପୂର୍ଣ୍ଣ । କାରଣ ସେଠାରେ ହିଁ ପ୍ରଥମେ ତରୁଣ ଛାତ୍ରଛାତ୍ରୀମାନେ ବସି ଜୀବନର ଅର୍ଥ ଖୋଜିବାର ନିଷ୍ପତ୍ତି ନେଇଥିଲେ । ସେଇଠୁ ହିପ୍ପୀ ସଂସ୍କୃତିର ଜନ୍ମ । ଏକ ପ୍ରକାର ଯଯାବର ଜୀବନ । ନିର୍ଦ୍ଦିଷ୍ଟ ଜୀବନ ଦୃଷ୍ଟି ଓ ଚିରାଚରିତ ଶୃଙ୍ଖଳାରୁ ବାହାରିଯାଇ ଜୀବନର ଅର୍ଥଖୋଜା ସେଠାରୁ ଆରମ୍ଭ । ଯଦିଓ ସେହି ଅନୁସନ୍ଧାନ ଏ ଯାଏଁ ସଫଳତା ପ୍ରାପ୍ତ ହୋଇଛି ବୋଲି କେହି କହିବେ ନାହିଁ । ମାତ୍ର ସେଇ ହିପ୍ପୀ ସଂସ୍କୃତି ସାରା ପୃଥିବୀରେ ପରିଚିତ ହୋଇଯାଇଛି । ଆର୍ଲିଂଟନ୍ ୟୁନିଭ୍ ପରେ ସାନ୍ତାକ୍ରୁଜ୍ ୟୁନିଭ୍‌କୁ ଆମେ ଅନେକଟା ଦେଖିଥିଲୁ ଓ ତାର ଅଭ୍ୟନ୍ତରର ପରିଚୟ କିଛିଟା ପାଇଥିଲୁ । ଅମାପ ଜ୍ଞାନର ଭଣ୍ଡାର, ସର୍ବାଧୁନିକ, ବିତ୍ତଶାଳୀ ରାଷ୍ଟ୍ରର ବିଶ୍ୱବିଦ୍ୟାଳୟ ବହୁ ଦୃଷ୍ଟିରୁ ସଂପୂର୍ଣ୍ଣ ଓ ସମର୍ଥ । ଆମ ଓଡ଼ିଶାର ଉତ୍କଳ ୟୁନିଭ୍ ସହ ତା'ର ତୁଳନା ହୁଏ ନାହିଁ । ଆଉ ଛୋଟ ଛୋଟ ୟୁନିଭ୍ କଥା ତ ନ କହିବା ଭଲ ।

ସାନ୍ ଫ୍ରାନ୍ସିସ୍କୋର ସମୁଦ୍ରକୂଳରେ ସିଲ୍(ମାଛ) ମାନଙ୍କର ଏକ Sanctuary ଅଛି । ଏଠାରେ ଗଭୀର ସମୁଦ୍ରର ବନ୍ଦର ଓ ସେହି ପ୍ରକାଣ୍ଡ ବନ୍ଦରର ଗୋଟିଏ ଅଂଶରେ ପାଣି ଭିତରେ ୪ଗୋଟି ବଡ଼ ବଡ଼ ମଣ୍ଡପ ନିର୍ମିତ । ସେ ସବୁ ଉପରେ ହଜାର ହଜାର ସଂଖ୍ୟାରେ ସିଲ୍‌ମାଛ ଶୋଇଛନ୍ତି ଓ ମଝିରେ ମଝିରେ ମୁଣ୍ଡଟେକି ଶବ୍ଦ କରୁଛନ୍ତି- କାନ୍ଦୁଛନ୍ତି କି ହସୁଛନ୍ତି ଅବା କାହାକୁ ଡାକଛାଡିଛନ୍ତି କହିବା କଠିନ । ମାତ୍ର ସେ ଶବ୍ଦ ଅନୁଚ୍ଚ ହେଲେ ବି ହଜାର ହଜାର ସିଲ୍‌ଙ୍କ ସମ୍ମିଳିତ ସ୍ୱର । ୪ଗୋଟି ପ୍ରକାଣ୍ଡ ମଣ୍ଡପ ଉପରେ ଦଳ ଦଳ ସିଲ୍ ମାଛ । ସେତେକି ଗୋଟିଏ ଗୋଟିଏ ତେଲୁଣି ପୋକଙ୍କ

ମନ୍ଦାପରି ଦେଖାଯାଉଥାନ୍ତି । କେବଳ ଆକାରରେ ବିଶାଳ ମନ୍ଦାଗୁଡିକ- ପରସ୍ପର ଉପରେ ଲଦାଲଦି ହୋଇ ସିଲ୍‌ଗୁଡିକ ଥାଆନ୍ତି ଓ ମଝିରେ ମଝିରେ କେତେକ ସିଲ୍ ମୁଣ୍ଡଟେକି ରାବ ଦେଇଥାନ୍ତି । କୂଳର ଏକ ବିଶେଷସ୍ଥାନରୁ ଆମେ ଏ ସବୁ ଦେଖୁଥାଉ । ଅଥଚ ସେ ସ୍ଥାନଟି ଭୀଷଣ ଆଇଁଷିଣିଆଁ ଗନ୍ଧାଉଥାଏ, ବାନ୍ତି ଲାଗୁଥାଏ । ପେଟରୁ ଭାତ ବାହାରି ପଡ଼ିବା ଅବସ୍ଥା । ସିଲ୍ ଗୁଡିକହିଁ ଏପରି ଗନ୍ଧଉଥାନ୍ତି । ସେଠି ଖୁବ୍ ବେଶି ସମୟ ନରହି ଆମେ ଆଖପାଖ ବଜାର ବୁଲିଲୁ । ଖାଇବା ବଜାରରେ ପ୍ରଚୁର ଫଳ, ପ୍ରଚୁର କଂକଡ଼ା ଓ ଚୁଙ୍ଗୁଡ଼ି, ଅନ୍ୟ ସମୁଦ୍ର ମାଛ-ବାକୀ ତକ ଫୁଲର ବଜାର । ପୋଷାକର ବଜାର । ଆମେ ବଜାରର  ଯେତିକି ଅଂଶ ବୁଲିଲୁ, ବିଭିନ୍ନ ଦେଶର ତିଆରି ଜିନିଷ ସବୁ ଗୁଡିକ ବିକ୍ରୀ ହେଉଥାଏ । ନିକଟରେ ଚାଇନିଜ୍‌ଙ୍କ କଲୋନୀମାନ ଥାଏ । ଏହି ଚାଇନିଜ୍ ମାନେ ପ୍ରଥମେ ରେଳରାସ୍ତା କରିବା ନିମିତ୍ତ ଶ୍ରମିକ ଭାବରେ କାଲିଫର୍ଣ୍ଣିଆ ରାଜ୍ୟ ସାନ୍‌ଫ୍ରାନ୍‌ସିସ୍କୋ କୁ ଆସିଥିଲେ ।  ପାହାଡ଼ିଆ ଅଞ୍ଚଳରେ ରାସ୍ତା ତିଆରି କଲାବେଳେ ଅନେକ ମରିଯାଇଛନ୍ତି । ଯେଉଁମାନେ ବର୍ତ୍ତିଗଲେ ଟାଉନ୍‌ସାରା ମାଡ଼ିଗଲେ-ହାଟ, ବଜାର, ଦୋକାନ, କଟକର ଚୌଧୁରୀ ବଜାର ଭଳି, ଆଉ ଟିକେ ପରିଚ୍ଛନ୍ନ, ହୁଏତ କଲିକତା ଭଳି ମଧ୍ୟ ଲାଗିବ । ରେଳବାଇର ଧାରଣା ପରି ରାସ୍ତା ରହିଛି । କେବଲ୍ କାର୍ ଚାଲେ -ଅନେକଟା ଟ୍ରାମପରି । ଏଠାରେ ଗୋଟିଏ ସହରର ନାମ China Town- ତା' ମଝିରେ ଗାଡ଼ିରେ ଗଲାବେଳେ କଲିକତାର ସୌଧ ମାନଙ୍କ ମଝିରେ ଗଲାଭଳି ଲାଗୁଥାଏ । ସାନ୍‌ଫ୍ରାନ୍‌ସିସ୍କୋ ସହର ପାହାଡ଼ ଉପରେ ଅବସ୍ଥିତ ଥିବାରୁ ସାନ୍‌ହୋଜେକୁ ଫ୍ଲାଇଟରେ ଆସିଲା ବେଳକୁ ତା'ର ଆଲୋକମାଳା  ପ୍ଲେନରେ ଚିତ୍ତାକର୍ଷକ ଦିଶୁଥାଏ । ସତେକି ସବୁତକ ଗ୍ରହ ନକ୍ଷତ୍ର  ଏକାଠି ହୋଇଛନ୍ତି । କେଜାଣି ବିଶ୍ୱ ବ୍ରହ୍ମାଣ୍ଡର ଆଲୋକ ସଜ୍ଜା ହୁଏତ ଏହିପରି ହୋଇଥିବ ।

ଏହା ପୂର୍ବରୁ ଯାଇଥିଲୁ 'ମେଣ୍ଟରେ ବେ' ଅଂଜି ଓ ମୁଁ-ସେଠି ଲହଡୀ ନାହିଁ-ଲହଡୀର ଅସ୍ଥିର ନାଚ ନାହିଁ, ବୋଲି 'ପ୍ରଶାନ୍ତ' ମହାସାଗରର ସେପରି ନାମ ହୋଇଛି । ନୀଳ ଓ କପର୍ ସଲ୍‌ଫେଟ୍ ରଂଗ ମିଶାମିଶି ସମୁଦ୍ରର ରଂଗ-ସେଦିନ ପୁଣି ଫେରିବା ରାସ୍ତାରେ ବାଟଭୁଲି ଜଂଗଲରେ ପଶିଥିଲୁ । ସେ କଥା କହିସାରିଛି ।



# ଚର୍ଚ୍ଚ ଓ ସିନାଗଗ୍

ମୋର ଖୁବ୍ ଇଚ୍ଛା ଥିଲା ଖ୍ରୀଷ୍ଟିଆନ୍ ଓ ଇହୁଦୀଙ୍କ ଉପାସନା ଗୃହ ଦେଖିବା ପାଇଁ । ଅତି ପିଲାଦିନେ ପିଟନ୍ ସାହିର ଗୀର୍ଜାଘରକୁ କେଇଥର ଯାଇଥିଲି । ପିଉସାଙ୍କ ଘର ସାମ୍ନାରେ ଗୀର୍ଜାଥିଲା । ବର୍ତ୍ତମାନ୍ ଆର୍ଲିଂଟନ ଓ ଡ଼ଲାସ୍‌ରେ ୨ଟି ଚର୍ଚ୍ଚ ଦେଖିବା ନିମିତ୍ତ ଆଗ୍ରହ ବଢ଼ିଲା । କ୍ୟାଂପସରେ ଥାଆନ୍ତି ଜଣେ ମେକ୍ସିକାନ୍ ଷ୍ଟୁଡେଣ୍ଟ, ତାଙ୍କ ବାପା ମାଆ ତାଙ୍କ ପାଖକୁ ଆସିଥାନ୍ତି । କନି ରଂଜନ ସେ ତିନିଜଣଙ୍କୁ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ କରନ୍ତି । ସେଠାରେ କଥାହୁଏ-୧ ମାଇଲ୍ ଦୂରରେ ଥିବା 'ସାନ୍ତା ମାରିଆ ଗ୍ୟାରେଟି' ଚର୍ଚ୍ଚକୁ ମୁଁ ଯିବି । ସକାଳ ୭ଟାରୁ ମୁଁ ସେହି ମେକ୍ସିକାନ୍ ମହିଳାଙ୍କ ସହ ବାହାରିଲି । ଚାଲିକି ଯିବାର ସ୍ଥିର ହୋଇଥିଲା । ସେ ଭଦ୍ରମହିଳା ସ୍କଟ୍ ବ୍ଲାଉଜ୍ ପିନ୍ଧିଥାନ୍ତି, ମୁଣ୍ଡରେ ଟୋପି । ମୁଁ ଶାଢ଼ୀ ପିନ୍ଧିଥାଏ ।

ଚ୍ଚର୍ଚ୍ଚ:

ଚର୍ଚ୍ଚର ପରିଧି ବ୍ୟାପକ-ସୁନ୍ଦର ଫୁଲଗଛ ଓ ଲନ୍‌ଦ୍ୱାରା ସୁସଜ୍ଜିତ । ଖୁବ୍ ଶୃଂଖଳିତ ଭାବରେ ଭକ୍ତମାନେ ଆସୁଥାନ୍ତି । ସେଇଟା ଥାଏ ୱାର୍କିଂଡ଼େ । ତେଣୁ ଭକ୍ତମାନଙ୍କ ସଂଖ୍ୟା ସୀମିତ । ଅଧିକାଂଶ ବୟସ୍କ, କେତେକ ଛୋଟ ପିଲା । ଏହି ଚର୍ଚ୍ଚଟି କ୍ୟାଥିଲିକ୍ ଚର୍ଚ୍ଚ । ଯୀଶୁଖ୍ରୀଷ୍ଟଙ୍କ ବିଭିନ୍ନ ଫଟୋ ଥାଏ ।  ବଡ଼ ବେଦୀ ଉପରେ ପାଦ୍ରୀ ଉଜ୍ଜ୍ୱଳ ପୋଷାକ ପିନ୍ଧି ପହଂଚନ୍ତି-ପ୍ରାର୍ଥନା ପଢ଼ାଚାଲେ । ପ୍ରତି ବେଞ୍ଚ ସାମ୍ନାରେ ୪/୫ଟି ଲେଖାଏଁ ଧର୍ମ ପୁସ୍ତକ ବାଇବେଲ୍ ଥୁଆ ହୋଇଥାଏ । ପାଦ୍ରୀ ପଢ଼ନ୍ତି ଓ ଭକ୍ତମାନେ ଧର୍ମ ଗ୍ରନ୍ଥରୁ ଦେଖିକି ପଢ଼ନ୍ତି । କାହାର କାହାର ମୁଖସ୍ଥ ବି ଥାଏ । ୮ରୁ ୯ଟା ଯାଏଁ ପ୍ରାର୍ଥନା ଚାଲେ, କୌଣସି ବିଶୃଙ୍ଖଳା ନଥାଏ ।  ପିଲାମାନେ ବେଶ୍ ଟ୍ରେଣ୍ଡ । ମୋତେ ସେଠାରେ ପରିଚୟ କରାଇ ଦେବାରୁ ତାଙ୍କ ପରିଦର୍ଶକ ପୁସ୍ତକରେ ମୁଁ ମୋର ମତାମତ ଲେଖିଲି । ଏକତ୍ର ରହି, ପରସ୍ପରକୁ ଶ୍ରଦ୍ଧା ଓ ସହଯୋଗ କରି ବଂଚିବା ହେଲା ଜୀବନର ଧର୍ମ-ସବୁ ଧର୍ମର ମୂଳମନ୍ତ୍ରତ ଏହା ହିଁ । "All come to the foot of one altar" ଲେଖା ହୋଇଥାଏ । ଥରେ ଗୁଜୁରାଟ ପରିଭ୍ରମଣ କାଳରେ ଜୁନାଗଡ଼ଠାର ଏକ ମସ୍‌ଜିଦକୁ ଯାଇଥିଲୁ । ସମବେତ ପ୍ରାର୍ଥନା ହେଉଥାଏ । ମୁଁ, ମୋର ସ୍ୱାମୀ, ମହାପାତ୍ର ନୀଳମଣି ସାହୁ ଓ ହୃଦାନନ୍ଦ ରାୟ ଯାଇଥାଉଁ । ସେଠାରେ ଆମକୁ ମସ୍ତକ ଆବୃତ

କରିବାକୁ ପଡ଼ିଥିଲା । ମୁଁ ତ ମୁଣ୍ଡରେ ଓଢ଼ଣା ଦେଇଦେଲି । ସେମାନେ ସବୁ ଆପଣା ରୁମାଲ୍ ଖଣ୍ଡକ ମୁଣ୍ଡରେ ଢ଼ାଂକିଲେ । ସେଠାରେ ମଧ୍ୟ ନମାଜ ପଢ଼ାହେଲା । ସେହି ମସ୍‌ଜିସଦ୍‌ରେ 'ମଧ୍ୟ ସବୁ ମଣିଷ ଏକ ହୁଅନ୍ତୁ' ଏହି ବାଣୀ ଲେଖାଥିଲା ।

ପୁଣି ଦିନେ ରଂଜନ କହିଲେ ' ଚାଲନ୍ତୁ, ମୋର ବାନ୍ଧବୀ କହିଛନ୍ତି, ତାଙ୍କ ଚର୍ଚ୍ଚ ପ୍ରେୟାରକୁ ଆପଣ ଯିବେ । ମୁଁ ତାଙ୍କୁ ଆଗରୁ କହିଥିଲି ବୋଉ ଏକ ବାପ୍‌ଟିଷ୍ଟ ଚର୍ଚ୍ଚର ପୂଜା ପଦ୍ଧତି ଦେଖିବାକୁ ଚାହୁଁଛନ୍ତି ।' ଚର୍ଚ୍ଚଟି ଡ଼ଲାସ୍‌ରେ ରଂଜନଙ୍କ ବାନ୍ଧବୀ ଇଂଜିନିୟର୍ ତାଙ୍କ ସ୍ୱାମୀ ଅଧ୍ୟାପକ । ୨ଟି ପିଲା, ବଡ ଝିଅକୁ ୧୨ବର୍ଷ, ପୁଅ ୨ ବର୍ଷର ସମସ୍ତେ ସେଦିନ ଚର୍ଚ୍ଚକୁ ଆସିଥାନ୍ତି । ସେ ଦିନ ରବିବାର । ଅପେକ୍ଷାକୃତ ବଡ଼ ଚର୍ଚ୍ଚ । ସେଠାରେ ସ୍କୁଲ ମଧ୍ୟ ଚାଲେ । ସବୁ ନିୟମ କଡ଼ାକଡ଼ି । ବିଶିଷ୍ଟ ବ୍ୟକ୍ତିଙ୍କ ସୁପାରିଶ ବିନା ତା' ଭିତରେ ତୁମେ ପଶିପାରିବ ନାହିଁ । ମିସେସ୍ ଡିନା (ବାନ୍ଧବୀ) ଆମକୁ ଡାକି ନେଲେ । ସେଠାରେ ସୁଉଚ୍ଚ ଚର୍ଚ୍ଚ -ବିରାଟ ଖ୍ରୀଷ୍ଟ ମୂର୍ତ୍ତି । କାନ୍ଥସାରା ତାଙ୍କ ଜୀବନ ଚର୍ଯ୍ୟାର ଫଟୋ । ଯୀଶୁଙ୍କ ଜନ୍ମଠାରୁ ତାଙ୍କର କ୍ରୁଶବିଦ୍ଧ ହେବା ଯାଏଁ, ବିଭିନ୍ନ ଫଟୋ ଓ ତା' ତଳେ ଲେଖା-ବିଶେଷ ଘଟଣାର ବିଜ୍ଞପ୍ତି । ସବୁ ମିଶାଇ ଦେଖୁ ଦେଖୁ ମନେ ହେଲା ମୁଁ ଯେପରି ଅନ୍ୟ କେଉଁ ରାଜ୍ୟରେ ବିଚରଣ କରୁଛି । ଯୀଶୁଙ୍କ ସଂପର୍କରେ ମୁଁ ପ୍ରସିଦ୍ଧ ଗୋଟେ ବହି ପଢ଼ିଥିଲି 'ଦିଲାଷ୍ଟ ଟେଂପ୍‌ଟେସନ୍ ଅଫ୍ କ୍ରାଏଷ୍ଟ୍' । ତା'ର ସତ୍ୟାସତ୍ୟ ଏଠାରେ ଚିତ୍ରରେ ଦେଖିଲି ।

ସେଥିରେ ଥିବା କରୁଣ ବର୍ଣ୍ଣନା ସହ ମନେ ମନେ ଚିତ୍ରଗୁଡିକ ମିଶାଉଥିଲି ଓ ମଣିଷ ଜନ୍ମ ନେଇ ଏତେ ଦୁଃସ୍ଥିତି ଯନ୍ତ୍ରଣା ଭିତରେ କାଳାତିପାତ କରିବା ଓ ମୃତ୍ୟୁବରଣ କରିବା ବାସ୍ତବିକ୍ ଅଦ୍ଭୁତ ମନୋବଳର ପରିଚାୟକ । ଲାଗୁଥିଲା-ମଣିଷର ଇତିହାସ କେତେ କଠୋର, ହୃଦୟହୀନ! -ମର୍ଯ୍ୟାଦାବନ୍ତ ବ୍ୟକ୍ତି କେତେ କଷ୍ଟ ଭୋଗେ ସତେରେ । ଏଠାରେ ମଧ୍ୟ କବିରୂପେ ପରିଚିତ ହୋଇ ବହୁ ଶ୍ରଦ୍ଧା ଅନ୍ତରଂଗତା ଲାଭକଲି । ପରିଦର୍ଶନ ଖାତାରେ ମତାମତ ଲେଖିଲି, ଠିକଣା ଲେଖିଲି । ଏତେ ଦୂରରୁ ମୁଁ ଆସିଛି, ସେମାନେ ଆହ୍ଲାଦିତ ହେଲେ । ତା' ପରେ ମିସେସ୍ ଡିନା ଆମକୁ ଗୋଟେ ରେଷ୍ଟୁରାଣ୍ଟରେ ଚା' ପିଆଇଲେ ।

### ସିନାଗଗ୍:

ଖ୍ରୀଷ୍ଟିୟାନଙ୍କ ଉପାସନାର ଗୃହ ଦେଖିବା ପରେ, ସିନାଗଗ୍ (ଇହୁଦୀଙ୍କ ଉପାସନା ଗୃହ) ଦେଖିବା ନିମିତ୍ତ ମୋର ପ୍ରବଳ ଆଗ୍ରହ ବାକୀ ରହିଲା । ଡ଼ଲାସ୍‌ରେ

ସିନାଗଗ୍ ଥିଲେ ମଧ୍ୟ ଆମେ ଯାଇପାରି ନାହୁଁ । ଜୁଲାଇ, ଅଗଷ୍ଟ ମାସ ବିତିଲାଣି । ସେପ୍ଟେମ୍ବର ୨୪ ତାରିଖରେ ମୁଁ ଆମେରିକା ଛାଡ଼ିବି । ବେଳ ଅଣ୍ଟିବ କି ନାହିଁ । ଅଂଜିଙ୍କୁ ମୋର ମନୋଭାବ ବ୍ୟକ୍ତ କଲି । ସିନାଗଗ୍ ଦେଖିବା ନିମିତ୍ତ ମୋର ଆଗ୍ରହ ଦେଖି ସେ ଆଶ୍ଚର୍ଯ୍ୟ ହେଲେ । କହିଲି 'ମୁଁ ଆଇଜାକ୍ ବାସେଭିସ୍ ସିଂଗରଙ୍କ ଉପନ୍ୟାସ 'ଦି ସ୍ଲେଭ୍'ର ଅନୁବାଦ କରିଛି । ଇହୁଦିଙ୍କୁ ନେଇ ଉପନ୍ୟାସଟି ବଡ଼ ମର୍ମସ୍ପର୍ଶୀ । ସିନାଗଗ୍ ବିଷୟରେ ଅନେକ କଥା ପଢ଼ିଛି । ତେଣୁ ମୋର ବହୁତ ଇଚ୍ଛା-।' ସେ ସ୍ଥିର କଲେ, ଯିବା । ସକାଳ ୯ଟା ବେଳକୁ ଘରୁ ବାହାରିଲୁ । ସାନ୍‌ହୋଜେ ସହରରେ ଅନେକ ସିନାଗଗ୍ । ପୂର୍ବ ରାତିରୁ ବହୁ ସମୟ ଦେଇ ଅଂଜି ମ୍ୟାପ୍ ଦେଖି ସ୍ଥିର କରି ଥିଲେ । ତେଣୁ ଆମେ ସିନାଗଗ୍ ଅଭିମୁଖେ ଚାଲିଲୁ । ଅବଶ୍ୟ ସକାଳ ୮ଟାରୁ ଏହି ଉପାସନା ଗୃହ, ଖୋଲେ ଓ ୧୦/୧୧ଟା ଭିତରେ ବନ୍ଦ ହୁଏ । ପୁଣି ଯାଇ ସଂଧ୍ୟାକୁ ଖୋଲେ । ତେବେ ସେଦିନ ସଂଧ୍ୟାରେ ଆମେ 'ସାନ୍ତାକ୍ରୁଜ୍'ରେ ଥିବୁ । ତେଣୁ ଏଇ ସକାଳବେଳାଟି ପ୍ରକୃଷ୍ଟ କାଳ ।

ଏବେ ସାନ୍‌ହୋଜେ ସହରରେ (ସାରା ପାଶ୍ଚାତ୍ୟଦେଶ ଗୁଡ଼ିକରେ ମଧ୍ୟ) ୨ ପ୍ରକାର ସିନାଗଗ୍ ଅଛି । କେତେଗୁଡ଼ିଏ ଆଧୁନିକ ଓ ଆଉ କେତେକ ପ୍ରାଚୀନ ମତବାଦର । ମୁଁ ଅବଶ୍ୟ ପ୍ରାଚୀନ ଓ ଆଧୁନିକ ମତବାଦର ପ୍ରଭେଦ କ'ଣ, ଜାଣିବାକୁ ପାଇଁନାହିଁ, ବିହଙ୍ଗ ଦୃଷ୍ଟି, ସମୟ ନାହିଁ । ତେବେ ଆଧୁନିକ ସିନାଗଗ୍ ବନ୍ଦହେଇ ସାରିଥିଲା । ତା ସାମ୍ନାରେ ଫଟୋ ନେଲୁ । ପୁଣି ଅନ୍ୟ ଗୋଟିଏ ସିନାଗଗ୍ (ପ୍ରାଚୀନ) ଦିଗକୁ ଗଲୁ । ସେ ସିନାଗଗ୍‌ରେ ସେ ଦିନ ମିଟିଂ ଥାଏ । ତେଣୁ ଉପାସନା ପର୍ବ ଶେଷ ହୋଇଥିଲେ ମଧ୍ୟ, ରାବୀ (ପୁରୋହିତ) ଓ ଅନ୍ୟମାନେ ଥାଆନ୍ତି । ଅଂଜି ଓ ମୁଁ କଲିଂ ବେଲ୍ ଦେଲୁ । ଦ୍ୱାରଦେଶରୁ ଖବର ପଠାଇଲୁ । ସେମାନେ ଭିତରକୁ ପଛୋଟି ନେଲେ । ଆମେ ପରିଚୟ ଦେଲୁ । ବିଖ୍ୟାତ ଇହୁଦୀ ଲେଖକ ଆଇଜାକ୍ ସିଂଗରଙ୍କ ବିଷୟରେ ରାବୀ ଜାଣିଛନ୍ତି । କିଛି ସମୟ ଦେଇ ସେ ଆମ ଦୁହିଁଙ୍କୁ ବୁଲାଇଲେ । ଧର୍ମଗ୍ରନ୍ଥ ତୋରା ଓ ତାଲ୍‌ମୁଦ୍ ଦେଖାଇଲେ । ଫଟୋ ନେଲୁ । ସେ ସବୁ ଦେଖିଲା ବେଳକୁ ମୋର 'ସ୍ଲେଭ' (କ୍ରୀତଦାସ) ଉପନ୍ୟାସର କେତେକ ପରିବେଶ ମନେପଡ଼ିଲା । ଆଶା ସଫଳ ହୋଇଥିବାର ଅନୁଭବ କିପରି, ତାହା ଜାଣି ପାରିଲି ।

ଯା' ଭିତରେ ତାଙ୍କର ମିଟିଂ ସରିଯାଇ ଟି ପାର୍ଟି ଆରମ୍ଭ ହେଇ ଗଲାଣି । ଆମକୁ ବାଧ୍ୟ କଲେ କିଛି ହେଲେ ଖାଆନ୍ତୁ । ଆମେ ସକାଳ ଜଳଖିଆ ଖାଇଛୁ ।

୨ ଦିନତଳୁ ନାନା ଖାଦ୍ୟ, ଅନ୍ନ, ବ୍ୟଂଜନ ଫ୍ରିଜ୍‌ରେ ଭର୍ତ୍ତି ହୋଇଛି । ସେମାନେ କିନ୍ତୁ ବାରଣ ମାନିଲେ ନାହିଁ । ଅତଏବ ଫଳଖଣ୍ଡେ, କେକ୍‌ଖଣ୍ଡେ ଦୁହିଁଙ୍କୁ ଖାଇବାକୁ ହେଲା । କଫି ପିଇଲୁ ନାହିଁ । ଭେଲ୍‌ଭେଟ୍ କନା ଉପରେ ସିଲ୍‌କ୍ ଜରିରେ ଲେଖା ଇହୁଦୀ ଅକ୍ଷରର ଧର୍ମଶାସ୍ତ୍ର 'ତୋରା' ଆଲ୍‌ମିରାରେ ରହିଛି, ଦେଖିଲି । ଚକ୍ଷୁ ଓ ମନର ବିବାଦ ତୁଟିଲା । ଜାଣ, ଥିଓରୀରୁ ପ୍ରାକ୍ଟିକାଲ୍ । ଅଂଜିଙ୍କ ଆନ୍ତରିକତା ପାଇଁ ହିଁ ସମ୍ଭବ ହେଲା ।



# ଅମନ୍ କାର୍ଟର ମ୍ୟୁଜିୟମ

ଊନବିଂଶ ଶତାବ୍ଦୀରେ ଆମେରିକାର ଆଦିମ ଅଧିବାସୀମାନେ ଖୁବ୍ ସରଳଥିଲେ । ସାହସୀ ଓ ଯୋଦ୍ଧା ଥିଲେ ସତ, ମାତ୍ର ଆଧୁନିକ, ପାଶ୍ଚାତ୍ୟ ଯୁଦ୍ଧ ଓ ବାଣିଜ୍ୟ ନୀତିରେ ଧୁରନ୍ଧର ନଥିଲେ । ସେମାନଙ୍କୁ 'ଲୋହିତ ଭାରତୀୟ' କୁହାଗଲେ ମଧ୍ୟ ସେମାନେ 'ଭାରତୀୟ' ରୂପେ ଚିହ୍ନିତ ହେବାକୁ ପସନ୍ଦ କରୁଥିଲେ । ଉତ୍ତର ଆମେରିକାରେ ଭାଲୁ ଓ ବାଇସନ୍ ଅଧ୍ୟୁଷିତ ବୋଷ୍ଟନ୍ ଅଞ୍ଚଳରେ ମ୍ୟାକ୍ସମିଲିଆନ୍ ବଦମର୍ ୧୮୩୨ ଜୁଲାଇରେ ଓହ୍ଲାଇଥିଲେ । ତା' ପୂର୍ବରୁ ଯୁଦ୍ଧଖୋର ମାନଙ୍କର ଛୋଟ ଛୋଟ ଦଳ ମଧ୍ୟରେ ହିଂସା ଓ ରକ୍ତପାତ ଜାରି ରହିଥିଲା । ବଦମର୍ ୧୮୩୪ରେ ଉତ୍ତର ଆମେରିକା ଭ୍ରମଣକରି ଜନଜାତିଙ୍କ ଜୀବନଧାରାକୁ ନିରୀକ୍ଷଣ କରି ଐତିହାସିକତା-ସମୃଦ୍ଧ ଘଟଣାବଳୀର ଚିତ୍ର ଆଂକିଥିଲେ । ଊନବିଂଶ ଶତାବ୍ଦୀରେ ଆମେରିକା ଓ ୟୁରୋପର ଜର୍ଣ୍ଣାଲରେ ଏହା ପ୍ରକାଶିତ ହୋଇଥିଲା । ନଭେଲରେ ଓ Text book ରେ ଉତ୍ତର ଆମେରିକାର ଚିତ୍ର ଏହିପରି ଥିଲା । ୧୯୬୨ ବେଳକୁ ବଦ୍‌ମର୍‌ଙ୍କ ଚିତ୍ର, ଜଳରଂଗ (Water colour) ପ୍ରିଣ୍ଟିଂ ପ୍ଲେଟ୍ ଆବିଷ୍କାର ସଂପର୍କିତ ବସ୍ତୁସବୁ Joslyn Art ମ୍ୟୁଜିୟମ୍‌ର 'ମାକ୍ସମିଲାନ୍-ବଦ୍‌ମର୍' ସଂଗ୍ରହାଳୟରେ ରହିଲା ।

ଉପରୋକ୍ତ ୨ଜଣ ତାଙ୍କ ଭ୍ରମଣର ଦୃଶ୍ୟ ଭିତ୍ତିକ ଚିତ୍ର ପ୍ରସ୍ତୁତି ଓ ପ୍ରକାଶନରେ ଯେତେ ଖର୍ଚ୍ଚ କଲେ, ତାହା ଫେରି ପାଇ ନଥିଲେ । ୧୮୪୨ ରେ ତେଣୁ କମ୍ ଖର୍ଚ୍ଚରେ ସେମାନେ ସାନ୍ ଆଣ୍ଟୋନିଓରେ 'ଚିତ୍ରରେ ଉତ୍ତର ଆମେରିକା' ପୁସ୍ତକ ଲେଖିଲେ ଓ ବିକ୍ରୀ ଏବଂ ଛପା କାର୍ଯ୍ୟ କରାଇବା ପାଇଁ ବିଭିନ୍ନ ପ୍ରତିଯୋଗୀ ପ୍ରକାଶକଙ୍କୁ ଦେଲେ । ଏହି ମ୍ୟୁଜିୟମରୁ ବିଶିଷ୍ଟ ଚିତ୍ରରାଜି ମଧ୍ୟ ଅମନ୍ କାର୍ଟର ମ୍ୟୁଜିଅମ୍ କୁ ଆସିଛି । ଦକ୍ଷିଣ ପଶ୍ଚିମ ଆମେରିକାର ଏହି ଚମତ୍କାର ମ୍ୟୁଜିୟମ ଓ ଆର୍ଟ ଗ୍ୟାଲେରୀରେ ଆମେରିକାର ଅତୀତ ଇତିହାସ ଓ ଆଦିମ ଅଧିବାସୀଙ୍କ ଯୁଦ୍ଧ ତଥା ପରାଜୟର ବିବରଣୀର ହୃଦୟସ୍ପର୍ଶୀ ଚିତ୍ର, ଗାଥା ଓ ମୂର୍ତ୍ତି (ବ୍ରୋଞ୍ଜ) ମାନଙ୍କରେ ଖୋଦିତ ହୋଇଛି । ସାନ୍ ଆଣ୍ଟୋନିଓ ଠାରେ ଅବସ୍ଥିତ ଅଲ୍‌ମାନ ମ୍ୟୁଜିୟମ୍‌ରେ ଟେକ୍ସାନ୍ ଓ ମେକ୍ସିକାନ୍ ମାନଙ୍କ ଯୁଦ୍ଧ ଓ ସେହି ଯୁଦ୍ଧରେ ଟେକ୍ସାନ୍‌ମାନଙ୍କ ବିଜୟର ନାନା ବିବରଣୀ ଚିତ୍ରସମ୍ବଳିତ ହୋଇ ସୁରକ୍ଷିତ ରହିଛି । ଏହି ଯୁଦ୍ଧ ପୂର୍ବରୁ ଟେକ୍ସାସ ମେକ୍ସିକୋ ଅଧିନରେ ଥିଲା । ସେହି ବିଜୟରେ ବୀରତ୍ୱ ଓ ଚତୁରତାର ସମନ୍ୱୟରେ ବିଜୟୀ ହେଲେ ଟେକ୍ସାନ ମାନେ ।

ପୂର୍ବରୁ ଆମେରିକାର ଏହି ଦକ୍ଷିଣ ପଶ୍ଚିମାଂଚଳ ଚାରଣ ଭୂମି ଥିଲା ଓ ତାର କିମ୍ବଦନ୍ତୀ, ଲୋକଗୀତି ଓ ଚାରଣ ସଭ୍ୟତା ରହିଥିଲା । ପୂର୍ବରୁ ସ୍ପାନିଶ୍‌ମାନେ ମେକ୍‌ସିକୋଠାରୁ କାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ଅଧିକାର କରିଥିଲେ । ଏଠାକାର ଆଦିମ ଅଧିବାସୀ ଅନେକ ଛୋଟଛୋଟ ଦଳ ଓ ଜାତିରେ ବିଭକ୍ତ ହୋଇ ରହି ବରାବର ଯୁଦ୍ଧରେ ମାତି ରହୁଥିଲେ । ଏମାନଙ୍କ ମଧ୍ୟରେ (୧) କୁଆପର ମୁଣ୍ଡରେ ଖୋସିଥିବା ଲୋହିତ ଭାରତୀୟ ଦଳ (୨) କଳା ପାଦଥିବା ଦଳ (୩) ନାଭାଜୋ ଦଳ ପ୍ରଧାନ । ୧୮୪୨ ରେ ଏହି ୩ପ୍ରକାର ଦଳର ଲୋହିତ ଭାରତୀୟ ମାନଙ୍କୁ ବାଣିଜ୍ୟ କରିବା ନିମିତ୍ତ ନିମନ୍ତ୍ରଣ କରି, ନୂତନ ଅଧିବାସୀଗଣ ବିଶ୍ୱାସ ଘାତକତା କରି ମାରିଦେଲେ ଓ ଆମେରିକା-ଭୂମି ଦଖଲ କରିନେଲେ । ଏହି ଅଦିମ ଅଧିବାସୀଗଣ ମୁଖ୍ୟତଃ ଘୋଡ଼ାସବାର ଥିଲେ । ଏମାନଙ୍କ କାଓବୟ୍ ସଭ୍ୟତାରେ ଗାଈ ମଇଁଷିର ଚମଡ଼ା ଓ ମାଂସ ପ୍ରଧାନ ପଣ୍ୟ ଥିଲା । ବଣ ମଇଁଷି ଗୋଠକୁ ଏମାନେ ଶିକାର କରୁଥିଲେ ଘୋଡ଼ାରେ ଚଢ଼ି । ନାରୀମାନେ ମଧ୍ୟ ଏକ କ୍ୟାଂପ୍‌ରୁ ଅନ୍ୟ କ୍ୟାପ୍‌କୁ ଘୋଡାରେ ଚଢ଼ି ଯାଉଥିଲେ ।

ଡ଼ଲାସ୍ ସହରର ଏହି ମ୍ୟୁଜିୟମ୍‌ରେ ସଂରକ୍ଷିତ ଚିତ୍ର ଓ ମୂର୍ତ୍ତି(ବ୍ରୋଞ୍ଜ) ତିଆରି କରିଛନ୍ତି ଚାର୍ଲାନ୍ M Russel (1864-1926) । ତାଙ୍କ ପରେ ତାଙ୍କ ପତ୍ନୀ Nancy Russel (1878-1940) ମଧ୍ୟ ଅନେକ ଚିତ୍ର ଓ ମୂର୍ତ୍ତି ନିର୍ମାଣ କରିଛନ୍ତି । ଆଉ ଜଣେ ଚିତ୍ରକର ଫ୍ରେଡ଼େରିକ୍ ରେମିଂଟନ୍ (୧୮୭୧-୧୯୯୦) ଙ୍କର ଅଙ୍କିତ ଚିତ୍ର ଗୁଡିକ ମଧ୍ୟ ରହିଛି । ଏହି ଚିତ୍ର ଗୁଡିକ ଜୀବନ୍ତ ପୁଣି ଇତିହାସ ଗର୍ଭିତ । କେବଳ କାଳ୍ପନିକ ନୁହେଁ । ଉପରୋକ୍ତ ଚିତ୍ରକର ଓ ଶିଳ୍ପୀମାନଙ୍କର ଚିତ୍ର ଓ ମୂର୍ତ୍ତିକୁ 'ଅମନ କାର୍ଟର'ଙ୍କ ସଂଗ୍ରହ ନାମରେ ନାମିତ କରାଯାଇ ୧୯୭୧ ରେ ଏହି ମ୍ୟୁଜିୟମରେ ସ୍ଥାପିତ କରାଗଲା-ଡ଼ଲାସ୍ ଠାରେ । ଅମନକାର୍ଟରଙ୍କ ସଂଗ୍ରହ ମଧ୍ୟରେ ପ୍ରାୟ ୨୫୦,୦୦୦ ଚିତ୍ର ଓ ମୂର୍ତ୍ତି ରହିଛି ସେଗୁଡ଼ିକ ୧୯ଶ ଓ ବିଂଶ ଶତକର ଆମେରିକାନ୍ art form ର (କଳାକୃତି) ଉନ୍ନତ ନମୁନାରୂପେ ସ୍ୱୀକୃତ ହୁଏ ।

ଆଦିମ ଅଧିବାସୀଙ୍କ ଜୀବନ, ଗୌରବ ପୂର୍ଣ୍ଣ ସାମାଜିକତା; ବୀରତ୍ୱମୟ ଯୁଦ୍ଧ ଓ ଶେଷକୁ ପ୍ରତାରଣାର ଶିକାର ହୋଇ ପାଶ୍ଚାତ୍ୟ ରାଷ୍ଟ୍ର ସମୂହର ଆଗନ୍ତୁକମାନଙ୍କ ଦ୍ୱାରା ପରାଜିତ ଓ ନିହତ ହେବାର ଇତିହାସ ଓ ଚିତ୍ର ସନ୍ଦର୍ଶନ କଲେ ମନରେ ମଣିଷ ଜାତିର ସଭ୍ୟତାର ଉତ୍‌ଥାନ ପତନର ବୈଚିତ୍ର୍ୟ ଅନୁଭବ କରିହୁଏ ।

**ପଦ୍ମହ୍ରଦ :**

ସେଠାରୁ ଆମେ ଡ଼ଲାସ୍‌ର ଲୋଟସ୍ ପ୍ୟାଚକୁ ଗଲୁ । ଅରଣ୍ୟ ଭିତରେ ଛୋଟ ଏକ ଚିଡ଼ିଆଖାନା ଓ ହରିଣର Sanctuary । ତା' ମଧ୍ୟରେ ଝଡ଼ାପତ୍ର ଉପରେ ପାଦଥାପି ଆମେ ପଦ୍ମ-ହ୍ରଦ ଦିଗକୁ ଆଗେଇଲୁ । ଯିବା ପୂର୍ବରୁ ଦେଖିଲୁ ଚିଡ଼ିଆଖାନାରେ ଏକ ବୃହତ୍‌କାୟ ପେଚା । ଆମେ ତା' ପାଖକୁ ଗଲେ, ସେ ଆଖି ମିଟ୍ ମିଟ୍ ତ କରେ, ଆଖି ସ୍ଥିର ରଖେ ନାହିଁ । ବରଂ ତା'ର ବେକକୁ ଫୁଲାଇ ଦିଏ । ଏକୁଟିଆ ପେଚାଟି ବସିଥାଏ-କଳା ବେତାମପରି ତା' ଆଖି-ରାଗରେ କି ଭୟରେ କେଜାଣି ବେକକୁ ଫୁଲାଇ ଦେଉଥାଏ ଥରକୁ ଥର ଗମ୍ଭୀର ଭାବେ । ପେପୁର କୌତୂହଳ-ମୁଁ କହିଲି, ଦେଖିରେ ପେପୁ । ସେ ତୋତେ ବେକଫୁଲାଇ ସ୍ୱାଗତ କରୁଛି-ସେ କଥା କହିପାରିବନି ନା'-ମଟ୍ ମଟ୍ ଅନେଇଁଥିବା ପେଚା ପାଖରେ ଠିଆହେବାରୁ ଖୁବ୍ ସତେଜ ଲାଗୁଥିଲା । ବଣ ଓ ହରିଣ ପାର୍କ ମଧ୍ୟରେ ସେ ବିପୁଳାକାର ପଦ୍ମହ୍ରଦ । ଜଂଗଲ ଭିତରେ ପାଦଚଲା ରାସ୍ତାଟି ଝାଡ଼ପତ୍ର ଦ୍ୱାରା ଲିଭି ଯାଇଛି । ଆମେ ଆଗେଇଲୁ-ହ୍ରଦ ମଧ୍ୟକୁ ଲମ୍ବି ଯାଇଛି ଏକ ଲୁହା ଓ କାଠର ସେତୁ । ହ୍ରଦ ମଝିରେ ଗୋଟିଏ ଗୋଲେଇ ମଣ୍ଡପ । ସେତେବେଳକୁ ଅଗଷ୍ଟ ମାସ ଶେଷ । ଆମେରିକାରେ ଗ୍ରୀଷ୍ମ ଦିନ । ପଦ୍ମ ବଣର କୂଳ ଅଞ୍ଚଳରୁ ପାଣି ଛାଡ଼ି ଯାଇଛି । ଶୁଖିଲା ପଦ୍ମପତ୍ର ଓ ପୁଷ୍କରରେ ପୂର୍ଣ୍ଣ କୂଳରେ ଏଇଲେ ନାନାଜାତି ଗଛ ମାଡ଼ି ଗଲାଣି । କିନ୍ତୁ କୂଳରୁ ଅଳ୍ପ କେଇଗଜ ଛାଡ଼ି ପ୍ରଚୁର ପାଣି-ସାମ୍ନାକୁ ଅନାଇଁଲେ ହ୍ରଦର ଆରକୂଳ ଦିଶୁଛି-ମାତ୍ର ବାମ ଓ ଦକ୍ଷିଣ ପାର୍ଶ୍ୱରେ ଏହାର ବିସ୍ତାର ମାଡ଼ି ଯାଇଛି-ସୀମା ଦିଶୁନାହିଁ । ଧଳା ପଦ୍ମରେ ହ୍ରଦଟି ଭରପୁର୍, କଷି ଓ ପାକଳ ପୁଷ୍କର ବି ଅସଂଖ୍ୟ । ଅଥଚ ସେଠିକୁ ତୁମ ହାତ ପାଇବ ନାହିଁ । 'ଲୋଟସ୍ ପ୍ୟାଚ୍' ଦେଖିବାର ଦିନ ଏପ୍ରିଲ ମେ' ମାସ-ସେତେବେଳେ ବହୁତ ଟୁରିଷ୍ଟ ଆସନ୍ତି ।

ଦେଖୁ ଦେଖୁ ମୋର ମନେ ପଡ଼ିଲେ କବିବର ରାଧାନାଥ ଓ ତାଙ୍କର 'ସୁରୂପା ଅଂଶୁପା' । ପ୍ରାୟ ତିନିବର୍ଷ ତଳେ ଜୁନ୍ ବା ମେ' ମାସରେ ଆମେ ଯାଇଥିଲୁ, ଅଂଶୁପା ହ୍ରଦ ଦେଖି । ସାନ ଝିଅ ଫୁକୁ, କ୍ୱାଇଁ ବାପୁ, ବଡମଝିଆ ଝିଅ ପେନି ଓ ୨ ନାତୁଣୀ ଆନ୍ନା ଆଉ ମଗ୍ନା, ତାଙ୍କ ସହିତ ପାକି । ପ୍ରଥମଥର ଦେଖିଲି ଅଂଶୁପା-କୂଳରୁ ପ୍ରାୟ ୧୦/୧୫ ଗଜଯାଏଁ କାଦୁଅ ଭର୍ତ୍ତି-ମ୍ରିୟମ୍ରାଣ ପଦ୍ମଲତା । କିନ୍ତୁ ତା' ପରକୁ ସେହିପରି ପ୍ରଶସ୍ତ ଅଥଚ ବିଶେଷ ଭାବରେ କାଦୁଆ । ଗୋଲାପୀ ପଦ୍ମ, ପୁଷ୍କର ଓ ପଦ୍ମ ପତ୍ରରେ

ଆଚ୍ଛାଦିତ ଅଂଶୁପା-ଅଥଚ ତା'ର-ଅଧାରୁବେଶି ପୋତି ହୋଇ ପଡ଼ିଲାଣି-କବିବର ରାଧାନାଥଙ୍କ କାଳର ଅଂଶୁପାର ୧୦ ଭାଗରୁ ଭାଗେ ଯେ ଅଂଶୁପା ! କେବେ ଆଉ ଫେରିବ ତା'ର ପୂର୍ବଶ୍ରୀ ? ବହୁତ କଳ୍ପନା ଜଳ୍ପନା ପରିବେଶ ସଂରକ୍ଷକ ଓ ସରକାରଙ୍କ ଠାରୁ ଶୁଣାଯାଉଛି; ଅଥଚ କାମ ନାହିଁ । କିନ୍ତୁ ଏଠାରେ 'ଲୋଟସ୍ ପ୍ୟାଚ୍' ଗଭୀର ପାଣି ଭରପୁର । ଯଦିଓ ଏପ୍ରିଲ୍ ମେ'ରେ ଆହୁରି ପାଣିଥାଏ-ଅଗଷ୍ଟକୁ ଅଳ୍ପ ଛାଡ଼ି ଆସିଲାଣି । ତଥାପି କଳା ଘୁମର ପାଣି, କେତେକ ଚଢ଼େଇ ଓ ପତଙ୍ଗ । ଭଅଁରକୁ ଖୋଜୁଥିଲି, ଠିକ୍ ପାଇଲି ନାହିଁ । ମାତ୍ର ସେ ପତଙ୍ଗ ଭଅଁର ଜାତୀୟ ନିଶ୍ଚେ ହୋଇଥିବେ । 'ଲୋଟସ୍ ପ୍ୟାଚ'ରେ କିଛି ସମୟ କଟାଇଲୁ-ଫଟୋ ନେଲୁ ଓ ଇଚ୍ଛା ନଥିଲେ ବି ଫେରିଲୁ । ଅପରାହ୍ଣର ଛାଇ ଜମିଗଲାଣି ଜଂଗଲ ଭିତରେ । ପଦ୍ମ ସରୋବର ମଝିରେ ଆମେ ମଣ୍ଡପ ଉପରେ ରହିଛୁ-ବିଷାକ୍ତ ସର୍ପ ମଧ୍ୟ ଥିବେ । ଟୁରିଷ୍ଟ ବି କିଛି ଥିଲେ ସେଦିନ । ଥରକୁ ଥର ନାଚି ଉଠୁଥିଲା ଆଖି ଆଗରେ ୪ବର୍ଷ ତଳର ଅଂଶୁପା, ହାୟରେ, ଆମର ନାହିଁ କଅଣ ! ଆମେ ତ ଗ୍ରହଣ କରି ପାରୁନାହୁଁ । ଯେଉଁ ଭୂଖଣ୍ଡ ଏଠାରେ ଏଡ଼େ ସବୁଜ, ପରିଚ୍ଛନ୍ନ ଓ ସୁନ୍ଦର, ଠିକ୍ ସେଇ ଭୂଖଣ୍ଡର ଆଉ ଗୋଟିଏ ପାର୍ଶ୍ୱ ଆମ ଭାରତ-କଲିକତା କଟକ କଥା ତ କହିଲେ ନସରେ । ଭୁବନେଶ୍ୱର ବି ଅପରିଚ୍ଛନ୍ନ, ନାଳ, ନର୍ଦ୍ଦମା, ଟାଂଗରା ଭୂଇଁ, ମର ମର ଗଛ ବୃଛ । ମଣିଷର ତ ଯତ୍ନ ନେଇହଉନି, ଆଉ ଗଛ ଲତା, ଅରଣ୍ୟ, ପଶୁପକ୍ଷୀ ଓ ପ୍ରକୃତି-ସବୁ ଯେମିତି ଅଧାପ୍ରାଣ ହୋଇ ରହିଛନ୍ତି ଆମର ଏଇ ଭାରତ ଭୂଇଁରେ ।



# ବିଶ୍ୱାସ କର ନକର

ଆର୍ଲିଂଟନ ନିକଟବର୍ତ୍ତୀ ସହରରେ ମଧ୍ୟ ଆକର୍ଷଣୀୟ ଅପୂର୍ବ ଦର୍ଶନୀୟ ସ୍ଥାନମାନ ଅଛି । ଏଥିରୁ ଗୋଟିଏ Wax museum । ସେଥିରେ ୨ ଗୋଟି ବିଭାଗ- 'ବିଶ୍ୱାସକର ନକର' ଓ ଅନ୍ୟଟି 'ମହମ ତିଆରି ମୂର୍ତ୍ତି', ସତ ମଣିଷ ଭଳି ମନେହେବ । ଆମେ ରଂଜନଙ୍କ ସାଂଗେ ଯାଇଥିଲୁ । ଏହି ମ୍ୟୁଜିୟମ୍‌ର ପ୍ରଥମ ଭାଗରେ ପ୍ରବେଶ କଲୁ Bilieve it or not । ପ୍ରଥମରୁ ଆଶ୍ଚର୍ଯ୍ୟକର ଲୋମହର୍ଷକ ଏକ ଦୃଶ୍ୟ ଆଖିରେ ପଡ଼ିଲା । ୧୮୯୦ରେ Littleton ଜାହାଜ ବୁଡିଯାଇଥିଲା- ମାତ୍ର ବହୁ ପରେ Cape Horn ଠାରେ ସମୁଦ୍ର ଗର୍ଭରୁ ମିଳିଲା ଜାହାଜର ଧ୍ୱଂସାବଶେଷ । ସେଇ ଜାହାଜର ଅନୁକୃତି ରହିଚି ସେ କୋଠରୀଟି ରେ । ସିଡ଼ି ପଡ଼ିଚି ଉପର ମହଲାକୁ । ସିଡ଼ିରେ ଲାଗିଚି ଗୋଟେ ନାରୀର କଂକାଳ-ଗାଉନ୍-ପିନ୍ଧିଚି । ଜାହାଜ ବୁଡ଼ିଲାବେଳେ ସିଡି ଉଠୁ ଉଠୁ ଅଧାବାଟରେ ରହିଯାଇଚି ସେ । ସିଟ୍‌ରେ ବସିଚି ଆଉ ଜଣେ କଂକାଳ-ପ୍ୟାଣ୍ଟ କୋର୍ଟ ପିନ୍ଧିଚି । ପୁଣି Cargo Box ବି ମିଳିଚି-ସେଥିରୁ ରେକର୍ଡ କରାଯାଇଚି-ଜାହାଜ ବୁଡ଼ିବା କାଳରେ ଲୋକଙ୍କ ଆର୍ତ୍ତନାଦ । Cargo Box ରେ ବଟନ ଟିପିଲେ ଶୁଭିବ ହୃଦୟ ବିଦାରକ ଚିତ୍କାର-ସାଧାରଣରେ ତାକୁ ଶୁଣି ସହ୍ୟ କରିବା କଷ୍ଟ । ୧୧୦ବର୍ଷରୁ ଅଧିକ ସମୟ ପୂର୍ବରୁ ମୃତ ଲୋକଙ୍କ ଆସନ୍ନ ମୃତ୍ୟୁର ଚିତ୍କାର-ବିଜ୍ଞାନ ସାହାଯ୍ୟରେ ଆମେରିକା ଜାତିର ଅଦ୍ଭୁତ କରାମତି । ବାସ୍ତବିକ ଅନୁଭବ୍ୟ ଓ ଅଭିନବ ।

ତା' ପରେ ବିଭିନ୍ନ ପ୍ରାଣୀଙ୍କର ଶରୀର Zoology Laboratary ପରି ବଡ଼ ବଡ଼ ଜାର୍‌ରେ ସଂରକ୍ଷିତ । ଅଥଚ ସେଠାରେ ଦୁର୍ଗନ୍ଧ ନଥାଏ ଆଦୌ-ତା' ଭିତରୁ ଗୋଟେ କୁକୁଡ଼ା ଛୁଆର ଗୋଡ଼ (U) ଭଳି ହୋଇଥିବ-ପୁଣି କୋଉଠି ଦୁଇ ମୁଣ୍ଡିଆ ବାଛୁରୀ, ୨ ମୁଣ୍ଡିଆ ବିରାଡ଼ି-ଯାହାର ଖାଦ୍ୟନଳୀ ମାତ୍ର ଗୋଟିଏ । ଯୋଡ଼ି ହଂସ-କାହାର ଆଖିର ୨ଟା ପୁଅ, ହଂସର ମୁଣ୍ଡପଛପଟେ ଆଉ ଗୋଟେ ମୁଣ୍ଡ ଇତ୍ୟାଦି ଚମତ୍କାର ଆକର୍ଷଣୀୟ ଜୈବ ବ୍ୟତିକ୍ରମ ଅନୁଧ୍ୟାନ କଲା ବେଳକୁ ପ୍ରକୃତରେ କୌତୁହଳ ବଢୁଥାଏ ।

ଅନ୍ୟ ଏକ ବିଭାଗରେ ରହିଛି-

'Candle in the wind'

'ବତାସରେ ଦୀପଶିଖା' ଶୀର୍ଷକରେ ରୂପସୀ ଚଳଚ୍ଚିତ୍ର ଅଭିନେତ୍ରୀ ମେରିଲିନ୍ ମନ୍‌ରୋଙ୍କ ଫଟୋ, ମୂର୍ତ୍ତି ତାଙ୍କର ଜୀବନର ବିଶିଷ୍ଟ ଘଟଣାରୁ ଠିକେ ଠିକେ ରହିଛି । ଏହି ବିଖ୍ୟାତ ମହିଳା ଜନ୍ମପରେ ମାତୃ ପରିତ୍ୟକ୍ତା ଥିଲେ । ପ୍ରେମ ଜଗତର ରାଣୀ । ହଲିଉଡ୍‌ରେ...ବିଖ୍ୟାତ ଅଭିନେତ୍ରୀ ଯେ କି, ୨ଥର ୧୯୫୧,୧୯୫୬ରେ ଓସ୍‌କାର ପୁରସ୍କାର ପାଇଥିଲେ ଓ ୧୯୫୯ Oscar ପାଇଁ ବି ମନୋନୀତ ହୋଇଥିଲେ । ଏହି ସୁନ୍ଦରୀ ଅଭିନେତ୍ରୀ ୧୯୬୨ରେ ଆତ୍ମହତ୍ୟା କଲେ । ତାଙ୍କର ଜୋତା, ଡ୍ରେସ୍, ସ୍କର୍ଟ୍, ବ୍ଲାଉଜ, ଚୁଡ଼ି, ସେଣ୍ଟ, ଲିପ୍‌ଷ୍ଟିକ୍, ନେଲ୍ ପଲିସ୍ ସବୁ ସେଇ ମ୍ୟୁଜିୟମ୍‌ରେ ସୁରକ୍ଷିତ । ଅଗଣିତ ପ୍ରସାଧାନ ସାମଗ୍ରୀ । ବଡ଼ିଲୋସନ, ମାସ୍କରା, ଗ୍ଲୋଭ୍ସ, ପାଉଡ଼ର ଇତ୍ୟାଦି ସୁରକ୍ଷିତ ଓ ପ୍ରଦର୍ଶିତ । ଏହି ସୁଯୋଗ୍ୟ ମହିଳା କିନ୍ତୁ ଅନ୍ତଃକରଣରେ ବଡ଼ ଏକାକିନୀ ଥିଲେ । ତାଙ୍କର କେତେକ ବକ୍ତବ୍ୟ ମଧ୍ୟରୁ ମୁଁ ଗୋଟିଏ ମାତ୍ର ବକ୍ତବ୍ୟ ଏଠାରେ ଉଲ୍ଲେଖ କଲେ ଯଥେଷ୍ଟ ହେବ-

"Hollywood is a place where they pay you a thousand dollar for a kiss and fifty cents for your soul"

ଏହି ପର୍ଯ୍ୟାୟରେ ଆସେ ମହମ ମୂର୍ତ୍ତିର କାରୁକାର୍ଯ୍ୟ । ବହୁ ବିଶ୍ୱବିଖ୍ୟାତ ବ୍ୟକ୍ତିଙ୍କର ମହମର ପ୍ରତିକୃତି, ଜୀବନ୍ତ ଭଳି ପ୍ରତୀତ ହୁଏ । Lincoln ଙ୍କ Proclaim of the emancipation ର ଲେଖା, ଫ୍ଲୋରେନ୍ ନାଇଟିଂଗେଲ୍‌ଙ୍କ ମୂର୍ତ୍ତି ସହ ସେ କ୍ରିମିଅନ୍ ଯୁଦ୍ଧରେ Nursing ପାଇଁ ପାଇଥିବା 'British Order of Merrit ଉପାଧି ଏବଂ ତାଙ୍କୁ ସମ୍ବୋଧିତ 'Lady with lamp' ଲିଖିତ ରହିଛି । ରାତି ଅଂଧାରରେ ଯୁଦ୍ଧ କ୍ଷେତ୍ରରେ ସେବାରତ ଏହି ମହିଳାଙ୍କ ଚିତ୍ର ନୂତନ ଏକ ସଚେତନତାର ଦ୍ୱାର ଖୋଲିଦିଏ । ଏହା ବ୍ୟତୀତ ସେଠାରେ ନିଗ୍ରୋ କୃଷିବିତ୍ G.W. Conver ଙ୍କ ଚିତ୍ର, ଗାନ୍ଧି, ମଦର ଟେରେସା, ନେଲସନ୍ ମାଣ୍ଡେଲା, ଲିଓନାର୍ଡୋ ଦା ଭିନ୍‌ସି, ରେଗାନ୍ ଓ କ୍ଲିଣ୍ଟନଙ୍କ ପ୍ରତିମୂର୍ତ୍ତିମାନ ଉଲ୍ଲେଖ ଯୋଗ୍ୟ । କ୍ଲିଣ୍ଟନ୍‌ଙ୍କ ସାମ୍ନାରେ ଠିଆ ହୋଇ ମୁଁ ଫଟୋ ନେଲି । ମୂର୍ତ୍ତି ଗୁଡିକ ପ୍ଲାଷ୍ଟିକ୍ କେସ୍‌ରେ ଥାଆନ୍ତି-କେସ୍‌କୁ ଛୁଇଁବା ନିଷେଧ ହୋଇଥାଏ । ନିଷେଧକୁ ସମସ୍ତେ ମାନନ୍ତି ଏବଂ ଯଦ୍ୟପି କେହି ନ ମାନେ, ସେ ଖସିଯାଇ ପାରେ ନାହିଁ-ଦଣ୍ଡିତ ହୁଏ । ହେଉପଛେ ସେ ଆମେରିକାନ୍ ପ୍ରେସିଡେଣ୍ଟଙ୍କ ନିଜଲୋକ । କେତେକ ବିଶ୍ୱପ୍ରସିଦ୍ଧ ମନ୍ଦବ୍ୟକ୍ତିଙ୍କର ମୂର୍ତ୍ତିମଧ୍ୟ ଏଠାରେ ରହିଛି । 'Nero' "Nero is fiddling, Rome is burning" ନେରୋଙ୍କ ସହ ଆୟାତୋଲ୍ଲା ଖୋମିନି ଓ ସଦ୍ଦାମ

ହୁସେନ୍, ଆଡ଼ଲଫ୍ ହିଟଲର୍ ଓ ଷ୍ଟାଲିନ୍‌ଙ୍କ ମୂର୍ତ୍ତିମାନ ପ୍ରଦର୍ଶିତ ହୋଇଛି । ଟିକିନିଖି ଦେଖିଲେ ଗୋଟିଏ ସାରା ଦିନର ସେ କାର୍ଯ୍ୟକ୍ରମ ।

ଅପରାହ୍ଣରେ Zoopool lake ଦେଖିବାକୁ ଗଲୁ । ବିଶାଳ ହ୍ରଦ ଲମ୍ବିଯାଇଛି- ୧୦/୧୫ କେଜି ଠାରୁ ୫ କେଜିଆଯାଏଁ ହଜାର ହଜାର ସଂଖ୍ୟକ ମାଛ ଘୂରିଛନ୍ତି- ମାଛଙ୍କୁ ପର୍ଯ୍ୟଟକମାନେ ଖାଦ୍ୟ ଦେଉଛନ୍ତି-ଖାଦ୍ୟର ଅର୍ଥ ପପ୍‌କର୍ନ । କୂଳରେ ମାଛଙ୍କ ଲୀଳାଖେଳା ମଧ୍ୟ ଏକ ଦର୍ଶନୀୟ ଘଟଣା । ହ୍ରଦର ଗଭୀରତାରେ ବହୁ ଡଂଗା ନେଇ ନୌକା ବିହାର ଚାଲିଥାଏ । ସୌଖୀନ ଲୋକେ ବଡ଼ ଗାଡ଼ିରେ ଡଂଗା ବାନ୍ଧ ଆଣିଥାନ୍ତି- ଏଠାରେ ଫିଟାଇ ପାଣିକୁ ନିଅନ୍ତି । ସେଥିପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ମଧ୍ୟ ଥାଏ-ଲୋକେ ନିଜ ନିଜ ଡଂଗାରେ ସାରାଦିନ ଭାସି ବୁଲନ୍ତି । କିନ୍ତୁ ମାଛ ମାରିବା ମନା । ଲେକ୍ ଠାରୁ ଉଚ୍ଚ ସ୍ଥାନରେ ଲେକ୍‌ରିନ୍ ଟାଉନ୍ । ଖୁବ୍ ମନୋରମ ପ୍ରାକୃତିକତାରେ ପରିବେଷ୍ଟିତ । 'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ' ପରି ସେ ସବୁ ସ୍ଥାନ । ସପ୍ତାହ ସାରା ନାକ ବୁଡ଼ା କାମରେ ବ୍ୟସ୍ତ ରହି ଆମେରିକାନ୍‌ମାନେ ଶନି ଓ ରବିବାର ସପ୍ତାହାନ୍ତରେ ମଉଜ ମଜଲିସ୍ କରନ୍ତି । ତେଣୁ ବହୁ ସଂଖ୍ୟାରେ ଲୋକ ସଠାରେ ସମବେତ ହୁଅନ୍ତି । ଠେଲାଗାଡ଼ିରେ ଛୋଟ ଛୁଆଙ୍କୁ ବସାଇ ବାପ, ମାଆ, ବୁଢ଼ା'ପା, ବୁଢ଼ୀମାଆ, ଯୁବକଯୁବତୀ, ପତିପତ୍ନୀ ପ୍ରକୃତିରୁ ଆନନ୍ଦର ଉପାଦାନ ସଂଗ୍ରହ କରନ୍ତି ।



# ହ୍ୟୁଷ୍ଟନ୍ ଓ ସାନ୍ ଆଣ୍ଟୋନିଓ

ସେଦିନ ବେ'ଅଫ୍ ମେକ୍‌ସିକୋରେ ବସିଥାନ୍ତି ଦଳ ଦଳ ମହିଳା, ଶିଶୁ ଓ ପୁରୁଷ । ସେହି ଉପକୂଳର ବାଲି ଖୁବ୍ ପତଳା ଓ ଶୁଭ୍ର । ସ୍ଥାନେ ସ୍ଥାନେ ମହିଳା ଓ ଶିଶୁ-ବାଲି ଖୋଳି ପାଣି ମିଶାବାଲିକୁ ଦେହଯାକ ଲଦୁଥାନ୍ତି । ଜଂଘଯାକ, ହାତ, ପେଟ, କିଏ ବସି କିଏ ବା ଶୋଇରହି । ସେ ତ ଓଦା ବାଲି ନୁହେଁ, ଓଦା ଚିକିଟା ମାଟିପରି । ତା' କାଳେ ଦେହର ରଂଗ ଓ ଚର୍ମର ସ୍ନିଗ୍ଧତା ବଢ଼ାଇଥାଏ । ତା' ପରେ ବିରାଟ ଲଞ୍ଚରେ ୮/୧୦ ଗାଡ଼ି ଲଦା ହେଲା-ଗାଡ଼ିର ଲୋକେ ଓ ଆମେ ବି ରହିଲୁ; ଠିଆ ହେଲୁ । ସେହି ଲଞ୍ଚ ଗଭୀର ସମୁଦ୍ର ବକ୍ଷଦେଇ କିଛି ସମୟ ଯାତ୍ରାକରି ଆଉ ଗୋଟିଏ ସ୍ଥାନରେ ଲାଗିଲା, ଗାଡ଼ିମାନ ଲଞ୍ଚରୁ ବାହାରିଲା ଓ ଆମେ ଗାଡ଼ିନେଇ ଆସିଲୁ । ସାଙ୍ଗରେ ଥିଲେ ରଂଜନଙ୍କ ବନ୍ଧୁ ରଘୁବାବୁ ଓ ତାଙ୍କ ପତ୍ନୀ ଅରୁଣିମା, ପୁଅ ଦେବାରୁଣ ।

ଆମେ ଯେତେବେଳେ ୨ଟି ଗାଡ଼ିରେ ଆଗିଲି ପିଛିଲି ହେଇ ଉପକୂଳର ଫେରି (ferry)ଅଭିମୁଖେ ଯାଉଥାଉ, ରାସ୍ତାର ଦି' କଡ଼ରେ ଉଠା ଟଏଲେଟ୍ ସବୁଥାଏ । ଉଠା ଚୁଲି ଅନୁସାରେ ମୁଁ ଏହାର ନାମକରଣ କଲି । ବାସ୍ତବିକ ବେଶ୍ ମଜା ଦାୟକ । ଆମର ଏଠା ଛୋଟ PCO ଆକାରର । ଡବଲ୍ ରୋଡ଼ର ମଝିରେ ଥିବା ଜାଗାରେ ସେଗୁଡିକ ଫିକ୍ସଡ୍ ହୋଇଥାଏ । ପ୍ରାୟ ୧ କି.ମି. ବ୍ୟବଧାନରେ ଗୋଟିଏ ଲେଖାଏଁ ଥାଏ । ସେଠାରେ ଦୂରତ୍ୱର ମାପ ମାଇଲ୍, ଓଜନର ମାପ ପାଉଣ୍ଡ ଓ ସୁଇଚ୍ ସବୁ ଓଲଟା, ଆମର ଏଠାର 'ଅନ୍'ତାଙ୍କର 'ଅଫ୍' । ପୁଣି ଗାଡ଼ି ଡ୍ରାଇଭିଂରେ ଡ୍ରାଇଭର ଷ୍ଟିଅରିଂ ଧରି ବସିବ ବାଁ ହାତି-ଆମର ଏଠି ଡାହାଣ ହାତି । ରଂଜନ କହନ୍ତି 'ଆମେରିକା ନିଜର ଗୁରୁତ୍ୱ ବଜାୟ ରଖିବାକୁ ଏସବୁ କରିଛି-ସବୁ ଓଲଟା ପ୍ରକାର ।' ପ୍ରାଗ୍ ଐତିହାସିକ ନାସା ସ୍ପେସ୍ ସେଣ୍ଟରରେ ବୁଲାବୁଲି କଲୁ । ଜୀବମାନଙ୍କ କଂକାଳ, ଜୀବନ୍ ଧାରଣ, ବଡ଼ ବଡ଼ space କ୍ରାଫଟ୍ ଓ ମହାକାଶଚାରୀ ମାନଙ୍କର ଚିତ୍ର ଦେଖିଲୁ । ଛୋଟ ଟ୍ରେନ୍‌ରେ ସେଣ୍ଟରର ଚତୁଃପାର୍ଶ୍ୱ ଘୂରିଲୁ । ହ୍ୟୁଷ୍ଟନ୍ ସହରର ସ୍ପେସ୍ ସେଣ୍ଟରରେ ପୁଣି ସେଇ କଲମ୍ବିଆ ଓ ତା'ର ଯାତ୍ରୀଙ୍କୁ ସମ୍ବର୍ଦ୍ଧନା ଦେବାର ବ୍ୟବସ୍ଥା । କାଳେ ଏଇ ଟେକ୍‌ସାସ୍ ପ୍ରଦେଶରେ ହିଁ କଲମ୍ବିଆର ଅଳ୍ପ କିଛି ଧ୍ୱଂସାବଶେଷ ମିଳିଥିଲା । ଏଇଠି ତାହା ଅବତରଣ କରିଥାନ୍ତା । ସେ ସବୁଥିରେ କଳ୍ପନାଙ୍କ ଛବି ମଧ୍ୟ ଅନେକ ଦେଖାଉଥାଏ ଓ ଆମେ ବିଶେଷଭାବେ ଅଭିଭୂତ ହେଉଥାଉ ।

ଏବେ (୨୦୦୩) ଖବର ପ୍ରଚାର ହୋଇଛି-ଆମେରିକାର ନ୍ୟୁୟର୍କ ସହରର ଗୋଟିଏ 'ଷ୍ଟ୍ରୀଟ୍' କଳ୍ପନାଙ୍କ ନାମରେ ନାମିତ ହେବ । ସମସ୍ତ ମହାକାଶ ଚାରୀଙ୍କ ନାମରେ ନ୍ୟୁୟର୍କର ବିଭିନ୍ନ ରାସ୍ତାର ନାମକରଣ ହେବ (୨୦୦୪ ତାହା ହୋଇ ସାରିଛି) । ତା' ହେଲେ କଳ୍ପନାଙ୍କ ନାମ ବିଶ୍ୱର ନାଗରିକଗଣ ବହୁଳଭାବେ ଉଚ୍ଚାରଣ କରିବେ । ବିଶ୍ୱର ମଣିଷଜାତି ପାଇଁ ପ୍ରାଣବଳି ଦେଇଥିବା ଏହି ମହାକାଶଚାରୀ ଗଣଙ୍କୁ ଯେତେ ସମ୍ମାନ ପ୍ରଦର୍ଶନ କଲେ ବି ତାହା ଯେପରି ଯଥେଷ୍ଟ ହେବନାହିଁ । ମାନବଜାତିର ବିପୁଳ କୃତଜ୍ଞତାର ଏହା ଏକ ନିଦର୍ଶନ ।

**ସାଗର ବିଶ୍ୱ :**

ଆଉ ଗୋଟିଏ ଶନିବାର ପାହାନ୍ତାରୁ ଗଲୁ San Antonio । ୫.୩୦ରେ ବାହାରିଲୁ-ଝାପ୍‌ସା କୁହୁଡ଼ି, ଚାରିଆଡ଼େ ଆଲୁଅ ଫିଟି ନଥାଏ ଆହୁରି । ଆର୍ଲିଂଟନ୍ କ୍ୟାମ୍ପସ୍‌ର ଲନ୍ ଓ ଗଛମାନଙ୍କରେ ପାଣିଫୁଆରରୁ ପାଣିଢ଼ଳା ଚାଲିଥାଏ । ଯେଉଁ ପାଣିତକ କ୍ୟାଂପସ୍‌ବାସୀ ବ୍ୟବହାର କରିଥାନ୍ତି-ସେହି ପାଣିସବୁ ଆନୁପାତିକ ଭାବେ ପରିଚ୍ଛନ୍ନ କରାଯାଇ କ୍ୟାଂପସର ଗଛମାନଙ୍କରେ ଦିଆଯାଏ । ଆଜି ନିର୍ଦ୍ଧାରିତ ପଡ଼ିଆର ମାଟି ଖୋଳା ହେଲା-କାଲି ପଲିଥିନ୍ ମାନଙ୍କରେ ଫୁଲଗଛ ମାନ ଆସିଲେ ଓ ପରଦିନକୁ ବଗିଚା ପୂର୍ଣ୍ଣ-ତା' ପରେ କ୍ୟାଂପସର ଯତ୍ନରେ ସେଗୁଡିକ କେବକାର ଗଛପରି ଲାଗନ୍ତି-ଲାଗନ୍ତି ପରିପୁଷ୍ଟ ଓ ସତେଜ । ଦିନକୁ ନିହାତି ୨ଥର ଗଛରେ ପାଣି ଦିଆଯାଏ । ପେକନ୍ ଗଛ ଗୁଡିକ ଫଳ ଭରପୁର ହୋଇଥାଏ, ସେତେବେଳକୁ ପୁଣି ନାଲି ଶିମ୍ବର ଲଟା ଫୁଲ ଓ ଫଳ ଦ୍ୱାରା କ୍ୟାଂପସ୍‌ର କେତେକ ସ୍ଥାନ ସୁସଜ୍ଜିତ ହୋଇଥାଏ । ଗଛପତ୍ରରେ କେହି ହାତ ଦିଅନ୍ତି ନାହିଁ । ଆମେ ସାନ୍ ଆଣ୍ଟୋନିଓ ଗଲୁ-ହ୍ୟୁଷ୍ଟନ୍ ଯିବା ରାସ୍ତାରେ ବେଶ୍ କିଛି ବାଟ ଗଲାପରେ ପୁଣି ରାସ୍ତା ଅଲଗା ହେଇଥାଏ । ମ୍ୟାପ୍ ଦେଖି ଯିବାକୁ ହେଉଥାଏ । କନି ମ୍ୟାପ୍‌ଦେଖୁଥାଏ । ରଂଜନ, ଡ୍ରାଇଭିଂ କରୁଥାନ୍ତି । ପଛ ସିଟ୍‌ରେ ପେପୁ ଆଉ ମୁଁ । ପେପୁ ସବୁବେଳେ ଜାଗତିଆର୍ ମୁଁ ଗାଡ଼ିରେ ବସି ବେଲ୍‌ଟ୍ ବାନ୍ଧିଲି କି ନାହିଁ । ସିଟ୍‌ର ଅଧା ଜାଗା ତା'ର-କାଳେ ମୁଁ ସେଠିକୁ ମାଡ଼ିଯିବି ବୋଲି ସେ ଜଗିଥାଏ । ବଡ଼ପାଟିରେ ଆପତ୍ତିକରେ ନା, ବାପା ମାଆ ବିରକ୍ତ ହେବେ ବୋଲି । ନହେଲେ ବାଟସାରା ରନିଂ କମେଣ୍ଟାରୀ କରୁଥାଏ-ବିଭିନ୍ନ ସ୍ଥାନ ସଂପର୍କରେ ମିଛସତ କଥା ଯାହା ଜାଣିଥାଏ ଆଉ କିଛି ମନକୁ ଯୋଡ଼ି କହୁଥାଏ । ଆଉ କୁତୁ କୁତୁ ଖେଳିବାକୁ ଖୁବ୍ ଆଗ୍ରହ ଦେଖାଉଥାଏ ।

ସାନ୍ ଆଣ୍ଟୋନିଓରେ ହୋଟେଲ୍ ବୁକ୍ କରିଥିଲୁ କଂପୁଟର୍ ଜରିୟାରେ । ସେତେବେଳେ ବ୍ରେକ୍‌ଫାଷ୍ଟ ଫ୍ରି ଦେବବୋଲି କହିଥିଲା । ମାତ୍ର ପ୍ରକୃତରେ ତା ଦେଲା ନାହିଁ ଓ ପ୍ରଶ୍ନର ଉତ୍ତରରେ ହସି ଦେଲା । ତେବେ ଆମେରିକା ଭଳି ଦେଶରେ ଠକାମି ଯେ ନାହିଁ, ତାହା ନୁହେଁ । ସମସ୍ତେ ହୁସିଆର୍ । ଠକିବାକୁ ବି ତିଆର୍ । ବହୁ ଜନହିତକର କାର୍ଯ୍ୟ ଯେମିତି ଆମେରିକାନ୍ ମାନେ କରନ୍ତି, କେତେକ ଆମେରିକାନ୍ ଓ ଅଣ ଆମେରିକାନ୍ ମାନେ ବି ଠକନ୍ତି । ସାନ୍ ଆଣ୍ଟୋନିଓର ସି ୱାଲ୍ଡ଼ରେ ମତେ ସବୁଠୁ ବେଶୀ ଆକୃଷ୍ଟ କଲା । ବଡ଼ ଘର ଆକୃତି ଆକ୍ୱାରିୟମର ପ୍ରବାଳ ଲତା । ପ୍ରବଳା ଲତା ମରିଯାଇ ପଥର ହୋଇ ଯାଇଥାଏ ଓ ପୁଣି ସେଇ ପଥର ଉପରେ ପ୍ରବାଳ ଲମ୍ବି ଯାଇଥାଏ-ପ୍ରବାଳ ଯେ କେତେ ଜୀବନ୍ତ, ତା'ର ଅଭ୍ୟନ୍ତର ଅନୁକ୍ଷଣ ସ୍ପନ୍ଦିତ ଓ ଚଳଚଂଚଳ-ତା' ମୁଁ ଦେଖି ପାରିଲି ଓ ଏକ ଅନନ୍ୟ ଅନୁଭବରେ ଆପ୍ଲୁତ ହେଲି । ଆଉ ସାର୍କ ମାନଙ୍କ କଥା-ବିଭିନ୍ନ ଆକାର ତାଙ୍କର, କାହା ମୁହଁରେ ଅର୍ଦ୍ଧଚନ୍ଦ୍ରାକୃତିର ପୃଷ୍ଠପରି ଧାରୁଆ ଅସ୍ତ୍ର, କାହାର ତେଣ୍ଟାପରି ପାଟିରୁ ଲମ୍ବିଛି-କାହାର ବଡ଼ ପାଟି ବଡ଼ଦାନ୍ତ, ଅନବରତ ଘୂରିବୁଲୁଥାନ୍ତି-ପାଣିର କେସ୍‌ଭିତରେ । ବିରାଟ ରୋହିମାଛ ପରି ଗୋଟେ ସାର୍କ ସ୍ଥିତପ୍ରଜ୍ଞ ଭାବେ ଘୂରିବୁଲୁଥାଏ, ସାର୍କ ମାନଙ୍କ ଆବେଷ୍ଟନୀ ଭିତରେ, ଜଳ ମଧ୍ୟରେ । ଲକ୍ଷ୍ୟକଲି ତା'ର ପାଟି ସାଧାରଣ ରୋହିଠାରୁ ୫ଗୁଣ ବଡ଼ ହେବ । ଯଦିଓ ଦାନ୍ତଗୁଡାକ ଦିଶୁନଥାଏ । ଏତେ ପ୍ରକାର ସାର୍କ ଦେଖିବା ମହାସମୁଦ୍ରର କିଛି ଅଂଶ ପ୍ରତ୍ୟକ୍ଷ କରିବାର ଅନୁରୂପ ଅନୁଭବ । ଆମର ସମୟ ଅପରାହ୍ନ ହୋଇଥିବାରୁ, ସେମାନଙ୍କୁ ଖାଇବାକୁ ଦିଆଯାଉଥାଏ । ଟିକିଟିକି ରଂଗବେରଂଗ ମାଛଙ୍କ କଥା କ'ଣ ଅବା କହିବା ! ସେଗୁଡିକ ତ ଅନ୍ୟ ସବୁଠି ଦେଖିବାକୁ ମିଳନ୍ତି । ତଥାପି ସେଠା ଆକ୍ୱାରିୟମ୍‌ରେ ଥାନ୍ତି ବିରଳ ମାଛ ।

ଦେଖିଲୁ କୋହିନୂର ହୀରା-କେତେ ପ୍ରକାର ହୀରକ, ରତ୍ନଗର୍ଭ ସମୁଦ୍ରର ତଟ ଦେଶରେ-କେତେ ଆକାର ଓ ତେଜ ବିଶିଷ୍ଟ ହୀରକ । ବିରାଟ ସମୁଜ୍ଜ୍ୱଳ କୋହିନୂର ହୀରା ରଖାଯାଇଛି ସ୍ୱତନ୍ତ୍ର ଭାବେ ଓ ତା'ର ଇତିହାସ ଲିପିବଦ୍ଧ । କେଉଁ କେଉଁ ମସିହାଯାଏ ସେ କାହା ଅକ୍ତିଆରରେ ଥିଲା । ସେଠାରେ ଭାରତର ନାମ ରହିଛି । ଅନ୍ୟାନ୍ୟ ରତ୍ନ ନିଜ ରୂପ ଗର୍ବରେ ମାତି ଉଠୁଥାନ୍ତି । ମୋର ପର୍ଯ୍ୟଟକର ଆଖି-ଦେଖିଯିବା, ମନ ଭିତରେ ଘେନିଯିବା ମୋର ଭୂମିକା । ତେଣୁ ଅମାପ ରତ୍ନଭଣ୍ଡାରକୁ ଦେଖି ବିଶ୍ୱର ବିଶାଳତା ବିଷୟରେ କିଛି ହେଲେ ଅବଧାରଣା କରିବା ମୋ ପକ୍ଷରେ ସମ୍ଭବ ହେଲା ।

ସେ ଦିନ ରାତିରେ ଖାଇବାର ହେଲା 'C.C.Pijja' ରେ । ସେହି ଦୋକାନରେ ପ୍ରତ୍ୟେକ ଲୋକ ୪ ଡ଼ଲାର୍ ଦେବେ, ଯେତେ ଇଚ୍ଛା ପିଜା ଖାଇବେ-ଜଣେ ଲୋକ ଅର୍ଥାତ୍ ୫ବର୍ଷର ପିଲାବି ୪ ଡ଼ଲାର ଦବ । କେତେ ପ୍ରକାର ପିଜା, ଛେନା, ଛତୁ, ପାଳଂଗ ଶାଗ ନାନା ପ୍ରକାର ପିଜା-ସୁସ୍ୱାଦୁ । ମାତ୍ର ଜଣେ ଲୋକ ଯେତେ ଖାଉଟିଆ ହେଲେ ବି, ୪ଡଲାର୍ ଠାରୁ ଅଧିକ ମୂଲ୍ୟର ପିଜା ଖାଇପାରିବ ନାହିଁ, କଦାପି । ଆଉ ମୋ ଭଳି ସାଧାରଣ ବୟସ୍କ ଲୋକ-ତ୨-ଡ଼ଲାର୍ ଦାମ୍‌ର ପିଜା ଖାଇପାରିବ କି ନାହିଁ ସନ୍ଦେହ । ତେଣୁ ବ୍ୟବସାୟିକ ବୁଦ୍ଧିର ଯେ ଗୋଟିଏ ଚାଲ୍ । ଆଉ ଥରେ ସେମିତି ଅସିତା ଗୋଟେ ପାର୍ଟିଦେଲା-ଡଲାସ୍‌ର ମୟୂରୀ (ଭାରତୀୟ) ହୋଟେଲ୍ ରେ । ଜଣେ ପିଛା ୧୦ଡ଼ଲାର୍-ତୁମେ ଯେତେ ଖାଅ । ଦକ୍ଷିଣ ଭାରତୀୟ ଠାରୁ ଉତ୍ତର ଭାରତୀୟ ଖାନା ପର୍ଯ୍ୟନ୍ତ । ମର୍ଟନ ବିରିଆନୀ ଠାରୁ ଇଡ୍‌ଲି ସମ୍ବର ପର୍ଯ୍ୟନ୍ତ । ୨୦୦ ରକମର ଖାଦ୍ୟ । ସେଠି ବି ସେଇ ବ୍ୟବସାୟାତ୍ମିକ ବୁଦ୍ଧି । ଜଣେ ଲୋକ କଦାପି ୧୦ଡଲାର ମୂଲ୍ୟର ଖାଦ୍ୟ ଖାଇପାରିବ ନାହିଁ । ଏହା ସତ ଯେ ୧୦୦ ରକମ୍ ଖାଦ୍ୟ ଚାଖି ପାରିବ । ତା' ଠୁଁ ଅଧିକ ପ୍ରକାର ଖାଦ୍ୟକୁ ଚାଖି ମଧ ପାରିବ ନାହିଁ ।

'C.C.Pijja' ଆମେ ପହଂଚିଲା ବେଳକୁ ୯ଟା ରାତିରୁ ଅଧିକ । ରୋଷ୍ଟୋରାଁ ବନ୍ଦ ହେବାର ବେଳ । ବେଶୀ ଗରାକ ନାହାନ୍ତି, କେବଳ କର୍ମଚାରୀମାନେ ଅଛନ୍ତି । ନାରୀ ଓ ପୁରୁଷ ୱେଟର୍‌ମାନେ । ଆମେ ଯାଇଥାଉ କନି, ରଂଜନ୍, ପେପୁ, ମୁଁ ଓ ରଘୁବାବୁ, ଅରୁଣିମା, ୨ବର୍ଷର ଦେବାରୁଣ । ଆମେ ରେଷ୍ଟୋରାଁ ଭିତରେ ପଶୁପଶୁ ଦେବାରୁଣ ଖୋଜା ପଡ଼ିଲା । ସେତେବେଳକୁ କେତେକ କର୍ମଚାରୀ କାମ ସରି ଆସିଥିବାରୁ ଗୋଟେ ଘରେ ଟି.ଭି. ଦେଖୁଥିଲେ । ଏଣେ ଦେବାରୁଣ ଦେଖିବାକୁ ମିଳୁନାହିଁ-ଡାକ ପଡ଼ିଲା । କୋଉଠି ମିଳୁ ନାହିଁ-ତା' ମା ଚିତ୍କାର କରି ଡାକି ବୁଲୁଚି-ରେଷ୍ଟୋରାଁର ଗଳିକନ୍ଦି । ରଂଜନ୍ ଚାଲିଗଲେ, ବାହାର ରାସ୍ତାରେ ପତ୍ତା ଲଗାଉଛନ୍ତି । ମତେ ଲାଗିଲା, ସତେରେ ପିଲାଟାକୁ କିଏ ନେଇଗଲାନାଁ କ'ଣ ? ଚିହ୍ନ ବର୍ଣ୍ଣ ନାଇଁ । ଅରୁଣିମା ଚାରିଆଡ଼ ଖୋଜି ଡ଼ାକି ଡାକି ଟଏଲେଟ୍ ବି ଦେଖି ଆସିଲେ । ମୁଁ ପ୍ରାର୍ଥନା କରିବାକୁ ଲାଗିଲି । ଆମ ଅସ୍ତବ୍ୟସ୍ତ ଦେଖି ଜଣେ କର୍ମଚାରୀ ଦେବାରୁଣକୁ ଟି.ଭି.ଘରୁ ଧରିଆଣି ଆମ ଜିମାକଲା । ଦେବାରୁଣ ଟି.ଭି. ରୁମ ଗହଳିକୁ ପଶିଯାଇଚି ଓ ସେଠାରେ ରହିଯାଇଛି । ମାଆର ପ୍ରତି ଡାକର ଉତ୍ତର ଦେଉଛି । 'ଆଇ ଆମ୍ ହିଅର୍' କହି କହି । ଅଥଚ ତା'ର ଜବାବ୍ ଆମ ପାଖରେ ପହଂଚିପାରୁ ନାହିଁ । ଆମେରିକାରେ ଏମିତି ପିଲାଚୋରି କାଳେ ଖୁବ୍ ସହଜ ।

'ସି ୱାର୍ଲଡ'ର ଗ୍ୟାଲେରିରେ ଡଲ୍‌ଫିନ୍ ମାନଙ୍କ ନାଚ-ଲୋକଙ୍କ ସର୍କସ୍ ଓ ଧଳା ଡଲ୍‌ଫିନ୍ (ହିଂସ୍ର ନୁହଁ) ସହ ନାରୀ ପୁରୁଷଙ୍କ ଖେଳ ଦେଖିବା ବଡ଼ ଆମୋଦ ଦାୟକ । ଡଲ୍‌ଫିନ୍‌ମାନେ ଘୁରି ଘୁରି ନାଚିବେ, ଚକାଭଉଁରୀ ଖେଳିବେ-ହାତରୁ ଖାଦ୍ୟ ନେବେ, ପାଟିମେଲାଇ । ଅନ୍ୟତ୍ର ସାଧାରଣ ଦେଖଣାହାରି ମଧ୍ୟ ପୁଲ୍‌ରେ ଥିବା ଡଲ୍‌ଫିନ୍‌ଙ୍କୁ ମାଛ କିଣି ଖାଇବାକୁ ଦେବେ । ଡଲ୍‌ଫିନ୍ ପାଖକୁ ଆସିବ-ତାକୁ ଛୁଇଁବାକୁ ମନା ଅବଶ୍ୟ । ତଥାପି କେହି କେହି ଛୁଇଁ ପକାନ୍ତି । ଗାଲେରି ଭିତରେ ପୁଲ୍‌ରେ ଡ଼ଲ୍‌ଫିନ୍ ଓ ଧଳାତିମିଙ୍କ ଖେଳ ପ୍ରାୟ ୪୫ ମିନିଟ୍ ଚାଲେ । ଧଳା ତିମିର ପାଟିରେ ଗୋଡ଼ରଖି ଠିଆହୋଇ ଝିଅଟେ ପହଁରି ଆସେ । ବହୁ ଭଂଗୀରେ ସେମାନେ ପାଣିରେ ଡାଇଭ୍ ମାରନ୍ତି ।

ତା' ପରେ ଆସେ 'ସାମୁ' । ଭୟଙ୍କର ହିଂସ୍ର ତିମି, ବିରାଟ କାୟ-ବାହାର ସ୍ୱିମିଂ ପୁଲ୍‌ରୁ ଗ୍ୟାଲେରି ଭିତର ସ୍ୱିମିଂ ପୁଲ୍‌କୁ ପଶେ, ଖୁବ୍ ସତର୍କତା ଅବଲମ୍ବନ କରାଯାଏ । ଦୁଇ ସ୍ୱିମିଂ ପୁଲ୍‌ର ମଝି ଫାଟକ ଖୋଲାଯାଏ ଓ ଖେଳ ସରିଲେ, ସାମୁକୁ ବିଦାକରି ଫାଟକ ବନ୍ଦକରାଯାଏ । 'ସାମୁ' ଖେଳ ଦେଖାଇଲା ବେଳେ ସମସ୍ତେ ସତର୍କ । ଗ୍ୟାଲେରି ବି ଖୁବ୍ ଦୂର ଛଡ଼ାରେ । ୪ଫୁଟ ଗ୍ରୀଲ୍‌ଡ୍ କରାଯାଇଥାଏ । ମେଞ୍ଚାଏ ଲେଖାଁ ମାଛ, ଦୂରରୁ ଠିଆହେଇ ତା'ର ଟ୍ରେନର୍ ସାମୁର ଆଁ ଭିତରକୁ ପକାଇ ଦଉଥାଏ । ସାମୁ ଗୋଟେ ମଣ୍ଡପକୁ ଉଠି 'ୟୁ' ଭଳି ଆକାରରେ ପେଟକୁ ତଳେ ଲଗାଏ ଓ ଲାଂଜ ମୁଣ୍ଡ ଟେକିଦିଏ, ଅଧଘଣ୍ଟାଏ ଭିତରେ ସାମୁର ଖେଳ ସରେ ପ୍ରାୟ । ସି ୱାର୍ଲଡ୍ ଜଳଜୀବଙ୍କର ଜୀବନ୍ତ ଚିଡିଆଖାନା କହିଲେ ଅତ୍ୟୁକ୍ତି ହେବ ନାହିଁ । ସମୁଦ୍ରର ଅଭୟାରଣ୍ୟକୁ ଏକ ଦିନରେ ଯେତେ ବେଶୀ ଦେଖିହେବ ଆମେ ଦେଖିଲୁ । ବିରଳ ଜୀବଜନ୍ତୁ ଯେଉଁଗୁଡିକ ଆମେ ଦେଖି ନଥିଲୁ ଆଦୌ-ଜଳ ଘୋଟକ ମଧ୍ୟ ଦେଖିଲୁ।

ସେଠାରେ ପୁଣି ଆମେ ନୌକା ବିହାର କଲୁ । ଜଳସ୍ରୋତରେ ଗୋଲେଇ ଡଂଗା ସବୁ ଥାଏ । ରବର ଚ଼କ ଡଂଗାର ବାହାର ପଟେ ବନ୍ଧା ହୋଇଥାଏ । ଚୌକି ୫ଟି ପଡ଼ିଥାଏ-ଇଂଜିନ୍‌ରେ ଚାଲୁଥାଏ । କେଉଁଠି କୃତ୍ରିମ ପାହାଡ଼ ଉଚ୍ଚାକୁ ପାଣିସ୍ରୋତ ସହ ଡଂଗା ଉଠିଯାଏ ତ କେଉଁଠି ଉପରୁ ପ୍ରପାତ ଭଳି ପାଣି ଅଜାଡ଼ି ହୋଇପଡ଼େ ଡଂଗାଉପରେ । ଲୁଗା, ପୋଷାକ ସମୁଦାୟ ଓଦା । ତଥାପି ନୂଆ ପ୍ରକାର ଆନନ୍ଦରେ ଉଲ୍ଲସିତ ହୋଇ ଉଠୁଥାଏ ମନ । ନୌକା ବିହାର ପରେ ପୂରା ଓଦାଲୁଗା, ପୋଷାକ ପତ୍ର ବଦଳିବାକୁ, ପରିଚ୍ଛନ୍ନ, ପ୍ରଶସ୍ତ ଶୌଚାଳୟ ଥାଏ । ମୋର ଓଦା ହୋଇଯାଇଥିବା ଲୁଗାକୁ ମୁଁ ସେଠାରେ ବଦଳାଇଲି । ଶାଢ଼ୀ ଲମ୍ବା ଓ ଯେ କୌଣସି

ସ୍ଥାନରେ ବଦଳାଇବାକୁ ଝିଂଟ୍‌ଟ । ସେମାନଙ୍କର ଛୋଟ ସଂକ୍ଷିପ୍ତ ଡ୍ରେସ୍ -ସେ ସବୁ ସୁବିଧା । ତେବେ, ମୁଁ ୧୨ବର୍ଷରୁ ୧୨ହାତର ଶାଢ଼ୀ ଗୁଡ଼େଇ ହୋଇ ଆସିଛି । ମତେ ଏତେ ଅସହଜ ଲାଗିଲା ନାହିଁ । ସମୁଦ୍ରରେ ଯେତେ ପ୍ରକାର ଜୀବଜନ୍ତୁ, ରତ୍ନରାଜି ରହିଛି, ସେସବୁ ଏଠାରେ ଦେଖିବାକୁ ମିଳିଲା ।



# ପ୍ରାଚ୍ୟ ମାଟି ଓ ଭାରତୀୟତାର ଚିହ୍ନ

ଦମ୍‌ଦମ୍‌ରୁ ବାହାରିଲୁ ରାତି ଗୋଟାଏ ବେଳକୁ । ଥାଇଲାଣ୍ଡର ସମୟ ପ୍ରାୟ ରାତି ସାଢ଼େ ୨ଟା । ପୂର୍ବଦିଗ ଅଭିମୁଖେ ୨ଘଣ୍ଟାର ଉଡାଣ । ଥାଇଲାଣ୍ଡ ଏୟାର ଓ୍ୱେଜ୍‌ର ଏୟାର ହୋଷ୍ଟେସ୍ ସବୁ ଥାଆନ୍ତି ଥାଇ ପୋଷାକରେ । ମତେ ଲାଗିଲା ଚୀନା, ଜାପାନୀ କିମୋନୋ ଓ ଆସାମୀ ମେଖଳାର ମିଶାମିଶି ସିଲ୍‌କ୍ ଡ୍ରେସ୍ ଏଇ ଥାଇ ପୋଷାକ, ଅଣ୍ଟାଠୁଁ ପାଦଯାଏଁ ସଂକୀର୍ଣ୍ଣ ଖୋଳ ଭଳି-ତା ସହ ବ୍ଲାଉଜ୍ ଓ ଓଢ଼ଣୀ । ମନେହେଲା, ଏମାନଙ୍କୁ ଚାଲିବାକୁ କଷ୍ଟ ହେଉଥିବ ତ ! ଏଇ ପୋଷାକରେ ପାଦ ପକାଇ ହେବନି ସହଜରେ । ଝିଅମାନଙ୍କର ଏଇ ଡ୍ରେସ୍‌କୁ ପୁଅ, ଏୟାର ହୋଷ୍ଟର ପ୍ୟାଣ୍ଟ ସାର୍ଟ ଓ ଟାଇ । ତେବେ ଏୟାର ହୋଷ୍ଟେସ୍ ଙ୍କ ପୋଷାକ ସିନା ଏପରି, କିନ୍ତୁ ସାରା ଥାଇଲାଣ୍ଡ, ରାଜଧାନୀ ବ୍ୟାଙ୍କକ୍, ପଟ୍ଟାୟା ସବୁଠିଁ ଆମେରିକା ଅନୁରୂପ ପୋଷାକ । କେତେମାସ ତଳେ ଆମେରିକା ଛାଡ଼ିଛି ମୁଁ, ତେଣୁ ସେଇ ଆମେରିକାର ପରିଧାନ ଦେଢ଼ ଚାଖଣ୍ଡେ ପ୍ୟାଣ୍ଟ, ଓ ସଂକ୍ଷିପ୍ତ ବକ୍ଷ-ବସ୍ତ୍ର ମଧ୍ୟ ଏଠାରେ ଝିଅମାନେ ପିନ୍ଧନ୍ତି । ନହେଲେ ଜିନ୍‌ସ୍, ସ୍କର୍ଟ୍ ବ୍ଲାଉଜ୍-ପୁଅମାନେ ବି ପିନ୍ଧନ୍ତି ସବୁ ଆମେରିକାର ଷ୍ଟାଇଲ୍ ।

ଆମ ଦଳରେ ଗୀତ ଗାଇବା, କବିତା ଲେଖିବା ଲୋକ ଅଛନ୍ତିଥିଲେ । କେତେକ ଟୁରିଷ୍ଟଙ୍କ ସହ ଆମେ ମିଶିକି ଯାଇଥିଲୁ । ରାତି ପାହାପାହା ହେଇ ଆସିଲା ବେଳକୁ ଅଶୋକା ଗ୍ରୁପ୍ ଅଫ୍ ହୋଟେଲ୍‌ସ୍‌ର ଏକ ଏ.ସି.ମିନିବସ୍ ଛିଡା ହୋଇଛି । ଗାଇଡ୍ ଝିଅଟି ଲମ୍ବା ନୁହେଁ, ପତଳା ଫୁଲ୍‌ପ୍ୟାଣ୍ଟ ଟି ସାର୍ଟ ପିନ୍ଧା, ଥାଇ ଝିଅନାମ 'ସୁଫୋକାନ୍' ପହଞ୍ଚିଯାଇଛି । ସେ ଆମକୁ ପଟ୍ଟାୟା ସହର ନେଇଯିବ । ଏଇ ପଟ୍ଟାୟା ସହରକୁ ପ୍ରତ୍ୟେକ ଦିନ ଲକ୍ଷ ଲକ୍ଷ ପର୍ଯ୍ୟଟକ ପ୍ରବେଶ କରନ୍ତି । ବ୍ୟାଙ୍କକ୍ ସହରକୁ ୪ଲକ୍ଷ ଓ ସାରା ଥାଇଲାଣ୍ଡକୁ ପ୍ରତିଦିନ ୧୦ଲକ୍ଷ ଟୁରିଷ୍ଟ ପ୍ରବେଶ କରନ୍ତି, ଏହି ଖବର ମିଳିଲା । ଏହି ଦେଶର (Kingdom of Thailand) ର ମୁଖ୍ୟ ଆୟ ଟୁରିଜ୍‌ମ୍‌ରୁ ହୋଇଥାଏ । ତେଣୁ ସମସ୍ତଙ୍କୁ ପ୍ରବେଶ ଓ ପ୍ରସ୍ଥାନର ଟ୍ୟାକ୍ସ ଦେବାକୁ ପଡ଼ିଥାଏ । ଆମେ ମିନିବସ୍‌ରେ ବସି ପଟ୍ଟାୟା ଅଭିମୁଖେ ଚାଲିଲୁ-୨ଘଣ୍ଟାର ରାସ୍ତା । ପରିଚ୍ଛନ୍ନ ସୁନ୍ଦର ସଯତ୍ନ ବର୍ଦ୍ଧିତ ବୃକ୍ଷରାଜି ଦୁଇପାର୍ଶ୍ୱରେ । ଲାଗିଲା ଯେ ଅବା ଆମେରିକାର ଏକ ଅଂଶ ! ଅବଶ୍ୟ ରାସ୍ତାରୁ, ଦୃଶ୍ୟମାନ ଘର ଗୁଡିକ ଛୋଟ ଓ ଦୃଶ୍ୟମାନ ଲୋକମାନେ ଆମେରିକାନ୍‌ଙ୍କ

ଠାରୁ ନ୍ୟୂନ ଦିଶନ୍ତି ଓ ବାରି ହୋଇପଡନ୍ତି । କିନ୍ତୁ ମୁଖ୍ୟ ସହର ବ୍ୟାଙ୍କକ୍‌ରେ ସୁଉଚ୍ଚ ଅଟ୍ଟାଳିକାମାନ (କେବଳ ହୋଟେଲ୍, କେବେବା ବ୍ୟାଙ୍କ) ଆମେରିକାର ଭ୍ରମ ଆଣନ୍ତି । କେଉଁଠି ବଡ ବଡ଼ ଦୋକାନ (Mall) ମଧ୍ୟ ରହିଛି । ଏହି ସବୁ ରାସ୍ତାଘାଟ ଓ ସୌଧ ନିର୍ମାଣ କରିଛି ଆମେରିକା, ଆମେରିକା ବିନିଯୋଗ କରିଛି ଅର୍ଥ ଓ ଟୁରିଜିମ୍‌ରୁ ପଇସା ମଧ୍ୟ ଟାଣି ନେଉଛି । ଏକଦା ମୁଖ୍ୟ ଆଦିବାସୀଙ୍କ ବାସସ୍ଥଳୀ ଥିବା ଥାଇଲାଣ୍ଡ ଏବେ ବେଶ୍ ସମୃଦ୍ଧ ହେଲାଣି । ନଗରଗୁଡିକ ଖୁବ୍ ସମୃଦ୍ଧ । ଯଦିଓ ସୁଫୋ (ଡାକନାମ ଓୟେ) କହିଲା, ଗ୍ରାମାଞ୍ଚଳ ଏବେ ବି ଦାରିଦ୍ର୍ୟରେ ଅଛି । ରାଜା ପ୍ରତିଗ୍ରାମକୁ ଏବେ ଲକ୍ଷେ ଭାଟ୍ (ଥାଇମୁଦ୍ରା) ଦେଉଛନ୍ତି, ଗ୍ରାମର ବିକାଶ ପାଇଁ । ଥାଇଲାଣ୍ଡରେ କୃଷିକାର୍ଯ୍ୟ ହୁଏ, ମାତ୍ର ଏହାର ମୁଖ୍ୟ ଅର୍ଥକାରୀ ଉପାୟ ହେଲା ପର୍ଯ୍ୟଟନ । ତେଣୁ ଏଠାରେ ସବୁକିଛିର ଦାମ୍ ବେଶ୍ ଚଢ଼ା । ଗୋଟିଏ ଡ଼ଲାର୍‌କୁ ୩୮ ଭାଟ ହିସାବରେ ଆମେ ମୁଦ୍ରା ବଦଳାଉଥିଲୁ । ଓୟେକୁ ମୁଁ ପଚାରୁଥାଏ 'ଥାଇ' ଭାଷାର ଜଣେ ବଡ଼ କବି, ସାହିତ୍ୟିକ ଙ୍କ ନାମ କହ । ପ୍ରଥମେ ତ ସେ ଏହି ପ୍ରଶ୍ନକୁ ବୁଝିପାରିଲା ନାହିଁ । ଟୁରିଜମ୍ ତ ବଡ଼ ସଂସ୍କୃତି, ଆଉ ପୁଣି ସଂସ୍କୃତି କ'ଣ ? ପ୍ରକୃତରେ ଥାଇଲାଣ୍ଡରେ ଥିବାତକ ଅଧିକଂଶ ଥାଇବାସିନ୍ଧାକୁ ଆମେ ଠାର ଠୁରାରେ ଆମ ବକ୍ତବ୍ୟଟି ଜଣେଇ ଥାଉ । ଇଂରାଜିରେ କହିଲେ ସୁଦ୍ଧା ଆମ ଉଚ୍ଚାରଣ କମ୍ ଲୋକ ବୁଝନ୍ତି । ସେମାନଙ୍କ ଇଂରାଜୀ ଉଚ୍ଚାରଣ ଅଦ୍ଭୁତ । ଓୟେ ଠାରୁ ବୁଝିପାରିଲି-ଟୁରିଷ୍ଟ ଗାଇଡ୍ ମାନେ ବାସ୍ତବିକ ସଂସ୍କୃତିର ଗଭୀର ତଥ୍ୟ କିଛି ଜାଣି ନଥାନ୍ତି । କେତେକ ଦର୍ଶନୀୟ ସ୍ଥାନ ଓ କ୍ରୟଯୋଗ୍ୟ ରତ୍ନରାଜି ବିଷୟରେ କିଛି ଜାଣନ୍ତି । ଥାଇ ଇତିହାସ ସମୃଦ୍ଧ ତ ନୁହେଁ, ଯାହା ହେଲେ ବି ସେ ବିଷୟରେ ଏମାନେ ବିଶେଷ କିଛି ଜାଣନ୍ତି ନାହିଁ । ପୂର୍ବରୁ ଜାପାନୀ ଓ ଚୀନାମାନେ ଏଠାରେ ପ୍ରଭାବ ବିସ୍ତାର କରିଥିଲେ । ପରବର୍ତ୍ତୀ ସମୟରେ ବିଶେଷ କରି ଭିଏତ୍‌ନାମ୍ ଯୁଦ୍ଧରେ କ୍ଲାନ୍ତ ଶ୍ରାନ୍ତ ଆମେରିକୀୟ ସୈନ୍ୟଙ୍କ ବିଶ୍ରାମ ଓ ମନୋରଂଜନ ନିମିତ୍ତ 'ଥାଇଲାଣ୍ଡ' ଭୂମି ବ୍ୟବହୃତ ହେଲା, ଏଠାକାର ମଉଜ ମଜଲିସ୍ ବିଷୟରେ ସାରା ପୃଥିବୀ ଜାଣିବାକୁ ପାଇଲା ଓ ପର୍ଯ୍ୟଟକଙ୍କ ସୁଅ ଛୁଟିଲା । ଏତିକି ବେଳକୁ କ୍ରମଶଃ ଆମେରିକା-ତା'ର ଅର୍ଥ ଚାକଚକ୍ୟ ଓ ପ୍ରଭାବ ରେ ଥାଇଲାଣ୍ଡକୁ ପ୍ରଭାବିତ କଲା ଏବଂ ଅପରପକ୍ଷରେ ଏଠାରେ ନିର୍ମାଣ କାର୍ଯ୍ୟକୁ, ରୁଚି ସଂପନ୍ନ କରି ଏହାର ସମୃଦ୍ଧି ସାଧନ କଲା ଓ ପର୍ଯ୍ୟଟନ ଆୟକୁ ଉତ୍ସାହିତ କଲା ।

ଓ'ୟେକୁ ପ୍ରଶ୍ନ କରିଥିଲି ଥାଇର ଭାଷା ଓ ଲିପି ସମ୍ବନ୍ଧରେ । ସେ କହିଲା,'ତାଙ୍କ ଭାଷା ସ୍ୱତନ୍ତ୍ର, ଥାଇଭାଷା ଏବଂ ଏହାର ଲିପି 'ସଂସ୍କୃତ' ଓ 'ବାଲି' (ବାଲିଦ୍ୱୀପ)

ଲିପିର ମିଶ୍ରଣ । ପକୃତରେ ଥାଇ ଭାଷାର ଲେଖା ଦେଖିଲେ ମନେହେବ, ଏହା ଦକ୍ଷିଣ ଭାରତୀୟ ଲିପି । ଏଥିରେ ଅନେକ ଅକ୍ଷର ସଂସ୍କୃତ ଅକ୍ଷର ପରି । ଏହାର ଧର୍ମ ବୌଦ୍ଧଧର୍ମ । ଏଠାଲୋକେ ମୁଖ୍ୟତଃ ଓ'ୟେ ଭାଷାରେ 'ବୁଡ଼ିଷ୍ଟ' ନ ହେଲେ 'ଭୁଦିସ୍ତ' ।

**ପଟ୍ଟାୟାର ଉପବନ:**

୨ଘଣ୍ଟାର ଡ୍ରାଇଭ୍‌ପରେ ଆମେ ପହଞ୍ଚିଲୁ 'ସେଣ୍ଟ୍ରାଲ ପଟ୍ଟାୟା' ହୋଟେଲ୍‌ରେ । ଭିତରକୁ ପଶୁ ପଶୁ ସୁସଜ୍ଜିତ ଟ୍ରେରେ ରଂଗିନ୍ ପାତ୍ରରେ ଥଣ୍ଡା ପାନୀୟ ନେଇ ହୋଟେଲ କର୍ତ୍ତୃପକ୍ଷ ସ୍ୱାଗତକଲେ । ସେଠାରେ ଧୁଆଧୋଇ ହେଲାପରେ ବାହାରିଲୁ ଉଦ୍ୟାନ ଅଭିମୁଖେ ୬୦୦ ଏକର ଭୂମି ଉପରେ ଯେ ଗାର୍ଡନ । ଖରାଦିନ ଖରାବେଳ, ଆମ ଓଡ଼ିଶା, ଭାରତ ଭଳି ଜଳବାୟୁ, ପାଗଯୋଗ । ତେଣୁ ଖରାକାଟୁ ଥାଏ, କିନ୍ତୁ ଛାଇବି ଥାଏ ପ୍ରଚୁର । ମୁଖ୍ୟତଃ ନଡ଼ିଆ ଗଛ ଛାଇ ଥାଏ, କେତେକ କାଫେଟେରିଆ-ସେଠାରେ ଫଳ ଓ ପଇଡ ପାଣି ପ୍ରଚୁର ମିଳେ । କିନ୍ତୁ ସବୁ ଜାଗାରେ ଦାମ୍ ଟିକେ ଅଧିକ । ହୋଟେଲରେ ଓ ଟୁରିଷ୍ଟ ପ୍ଲେସ୍‌ରେ ପାଣି ଓ ଫଳର ଦାମ ସବୁଠୁଁ ଅଧିକ । ମାତ୍ର ହୋଟେଲ ନିକଟବର୍ତ୍ତୀ ବଜାରରେ ଏ ସବୁର ଦାମ୍ ଅପେକ୍ଷାକୃତ ଶସ୍ତା । ଏହି ପଟ୍ଟାୟାରେ ହୋଟେଲ ରୁମ୍‌ର ୨ ବୋତଲ ପାଣିପିଇ (ସମୁଦାୟ ୨ଲିଟର ହବ) ମତେ ୧୪୦ଭାଟ୍ ଦବାକୁ ପଡିଲା । ଅର୍ଥାତ୍ ୧୬୦ ଟଙ୍କା । ମୁଁ ପସ୍ତେଇଲି ସେଥିପାଇଁ । କାରଣ ବଜାରରେ ସେତିକି ପାଣି ମାତ୍ର ୩୦ଟଙ୍କାରେ ମିଳୁଥିଲା । ଟୁରିଷ୍ଟ ମାନଙ୍କ ପାଇଁ ଥାଇଲାଣ୍ଡରେ ଶୃଙ୍ଖଳା ବ୍ୟବସ୍ଥା ଖୁବ୍ ଭଲ । ପରିଚ୍ଛନ୍ନତା ବି ରହିଛି ହେଲେ 'ଠକିନେବ' ଘଟଣାବି ବେଳେବେଳେ ଘଟେ ।

ସେଦିନ ସେଠାରେ ଦେଖିବାର ହେଲା ନୁଂ ନୁଚ୍ ଟ୍ରପିକାଲ୍ ଉଦ୍ୟାନ । ଏହି ଉଦ୍ୟାନ ୧୯୫୨ ମସିହାରେ ଆରମ୍ଭ ହେଲା-'ନୁଂ ନୁଚ୍' ନାମକ ଜଣେ ବ୍ୟକ୍ତିଙ୍କ ନାମରେ ନାମିତ ହେଲା-୬୦୦ ଏକର ପରିମିତ ଏହି ସ୍ଥାନଟି ଥିଲା ସେ ବ୍ୟକ୍ତିଙ୍କର । ଏହି ଉଦ୍ୟାନରେ ତାଳ, ଖଜୁରୀ, ନଡ଼ିଆ ଗଛ ସହିତ ନାନା ପ୍ରକାରର ବନ୍‌ସାଇ ଗଛ ଓ ପୁଷ୍ପୋଦ୍ୟାନ ରହିଛି । ଏକର ଏକର ବ୍ୟାପୀ ବନ୍‌ସାଇ-ବିଭିନ୍ନ ଆକାରରେ କଟା ହୋଇଥିବା ଗଛର ସୁବିସ୍ତୃତ ଉଦ୍ୟାନ । ସ୍ୱ ଚକ୍ଷୁରେ ପ୍ରତ୍ୟକ୍ଷ ନକଲେ ଏହାର ବିବିଧ ସୁଷମାକୁ ହୃଦୟଙ୍ଗମ କରିବା ସଂଭବ ନୁହଁ । ଆମକୁ ସତେକି ନନ୍ଦନ କାନନ ପରି ପ୍ରତୀତ ହେଲା । କେଉଁଠି ବା ବିଭିନ୍ନ ଆକୃତିର ଏକର ଏକର ବ୍ୟାପୀ ପଥର 'ରକ୍‌ଗାର୍ଡନ' ରହିଥାଏ, କାକ୍‌ଟସ୍ ଗାର୍ଡେନ ମଧ୍ୟ । ବଡ ବଡ ଜଳାଶୟ, ଫୁଲ

ବଗିଚା, ଏସିଆର ସବୁଠୁ ବଡ ମିନିଟ୍ରେନ୍ ଲାଇନ୍ ଇଲେକଟ୍ରିକ୍‌ରେ ଚାଲେ । ଉଦ୍ୟାନ ଭ୍ରମଣକାରୀଙ୍କ ନିମିତ୍ତ ମଝିରେ ଥାଏ ହାତୀଖେଳ-ଏଥିରେ ହାତୀମାନଙ୍କ ଖେଳ ଦେଖାଯାଏ । ହାତୀ ମାନେ ବଲ୍ ଖେଳିବେ-ବାସ୍କେଟ ବଲ ପକେଇବେ । ଗୋଟିଏ ଛୋଟ ହାତୀ ପଛ ଦୁଇ ଗୋଡ଼ରେ ଛିଡା ହେଇ ବଡ କଷ୍ଟ କରି ଆଁ କରି ଥୋଡ ପାହାଡରେ ବଲଟିକୁ ବାସ୍କେଟ ଭିତରେ ପକାଇବା ଦୃଶ୍ୟଟି ଏବେ ଯାଏଁ ବି ମୋ ମନରୁ ଲିଭି ଯାଇନାହିଁ । ହାତୀମାନେ ଲୋକଙ୍କ ହାତରୁ କଦଳୀ ଖାଇବେ । କେତେ ପ୍ରକାର ଖେଳ ଦେଖାଇବେ । ଏହା ପରେ ଉଦ୍ୟାନ ମଧ୍ୟରେ ଏକ ପ୍ରକାର ନୃତ୍ୟ ପ୍ରଦର୍ଶନ (କଲଚରାଲ୍ ଭେରାଇଟଇ ସୋ) ହେଉଥାଏ-ସେଠାକୁ ଯିବାକୁ ହେଲେ ୪୦ ମିନିଟ୍ ସମୟ ଦେବାକୁ ହୁଏ । ଏହି ସମୟ ମଧରେ ଏହି ଗ୍ରୁପ ନୃତ୍ୟ-ବିଭିନ୍ନ ପୋଷାକରେ ସୁସଜ୍ଜିତ ନାରୀ ଓ ପୁରୁଷ ଗଣ ନୃତ୍ୟ ପ୍ରଦର୍ଶନ କରନ୍ତି । ଅବଶ୍ୟ ଏହି ନୃତ୍ୟ କିଛି ଉନ୍ନତ କଳା, କୃତିର ନିଦର୍ଶନ ନୁହେଁ, କେବଳ ବିଭିନ୍ନ ସାଜ ପୋଷାକ ପିନ୍ଧି ନର୍ତ୍ତକ ନିର୍ତ୍ତକୀଗଣ ଉଦ୍ୟାନ ଭ୍ରମଣ ଉଦ୍ଦେଶ୍ୟରେ ଆସିଥିବା ଦର୍ଶକଙ୍କ ମନୋରଂଜନ କରିବା ଏହାର ମୂଳ ଉଦ୍ଦେଶ୍ୟ । କେହି ବିଭିନ୍ନ ଆକାର ପ୍ରଜାପତି ଓ କେହି ବିଭିନ୍ନ ଫୁଲ, ଫଳର କଟିଂରେ ସଜ୍ଜିତ ହୋଇଥିବେ । ଏହା ଦେଖିବାପରେ ଆମେ ଅନ୍ୟ ଏକ ସ୍ଥାନକୁ ଗଲୁ । ଉଦ୍ୟାନରେ ଏକ ଶୀର୍ଷସ୍ଥାନକୁ ଯାଇ ଚତୁର୍ଦ୍ଦିଗକୁ ଆମେ ଯେତେବେଳେ ଅନାଇଲୁ ଆମକୁ ସତେକି ସ୍ୱପ୍ନଉଦ୍ୟାନ ପରି ପ୍ରତୀତ ହେଲା ।

ସାରା ଉତ୍ତୀର୍ଣ୍ଣ ସଂଧ୍ୟାଟି ଏଇଠି ବିତି ଯାଆନ୍ତା କି ? ପରିବେଶ ସତେ ସାଧାରଣ ସ୍ଥିତିରୁ ଉଠାଇ ନେଉଥିଲା ଏକ ଅସାଧାରଣ ଉପଲବ୍ଧିର ଜଗତ ଆଡେ । ନାଁ, ମୋର ସକଳ ଅଭିଳାଷ ପରି ଏହା ମଧ୍ୟ ଅପୂର୍ଣ୍ଣ ରହିଲା । ଉତ୍ତରରେ ଲଛମନ୍‌ଝୁଲା, ଦକ୍ଷିଣରେ କନ୍ୟାକୁମାରୀ ଠାରେ ଅଳ୍ପ ସମୟ ରହଣି ମଧ୍ୟ ଏହିପରି, ଅତୃପ୍ତି ଜାଗ୍ରତ କରାଇଥିଲା । ଆମେ 'ସେଣ୍ଟ୍ରାଲ ପଟ୍ଟାୟା' ଅଭିମୁଖେ ଫେରିଲୁ । 'ସୁଫୋକାନ୍' ର ଅର୍ଥକ'ଣ ? ଓ' ଯେ ଉତ୍ତର ଦେଲା ମୋ ନାମର ଅର୍ଥ 'ସୁନାଝିଅ' ଆଉ 'ଥାଇ' ଶବ୍ଦର ଅର୍ଥ 'ସ୍ୱାଧୀନ' ।

ପ୍ରଥମ ଦିନ ସଂଧ୍ୟାରେ ଯାଇଥିଲୁ 'ଆଲ୍‌କାଜାର୍' ଥିଏଟର । ଏଥିରେ ସାଂସ୍କୃତିକ ଉତ୍ସବ ନାଚଗୀତ ଇତ୍ୟାଦି ଥାଏ । ଦିନକୁ ୩ଟି ସୋ ହୁଏ । ପଟ୍ଟାୟା ସହରକୁ ଆସି 'ଆଲ୍‌କାଜାର୍' ନ ଦେଖି ଫେରିବା ଲୋକ ପ୍ରାୟ କେହି ନାହାଁନ୍ତି । ପଟ୍ଟାୟାର ବଡ ଆକର୍ଷଣ 'ଆଲ୍‌କାଜାର' । ସେଠାରେ ପିଲାଦିନୁ ଟ୍ରେନିଂ ପାଇଥିବା ହିଂଜଡାମାନେ ନାରୀ

ବେଶରେ ବିଭିନ୍ନ ଭଂଗିମା ଦେଖାଇ ନୃତ୍ୟ କରନ୍ତି । ଅଥଚ ଅବୟବର ଗଠନରୁ, ମୁଖଶ୍ରୀରୁ କିମ୍ବା ପୋଷାକ ପରିଚ୍ଛଦ ମଧ୍ୟରୁ କିଛି ଅସ୍ୱାଭାବିକତା ବାରି ହେଲା ନାହିଁ- ଚେଷ୍ଟା କରି ମଧ୍ୟ ବାରି ପାରିଲି ନାହିଁ । ଝିଅ ହିଁ ଝିଅ । ଉତ୍ତୁଂଗ ବକ୍ଷଦେଶ, ଉରୁ ଓ ଜଘନ ସବୁକିଛି ସୁଗଠିତ, କୋମଳ ଓ ଆକର୍ଷଣୀୟ । ଥାଇମାନେ ଅବଶ୍ୟ ସ୍ଥୂଳକାୟ ନୁହଁନ୍ତି । ଅତ୍ୟନ୍ତ ଗୌରବର୍ଣ୍ଣ-ତେଣୁ ଆକର୍ଷଣୀୟ ଦିଶୁଥାନ୍ତି । ଏହି ଥିଏଟର୍‌ରେ ନାରୀବେଶ ସାଜିଥିବା ଅଭିନେତ୍ରୀଗଣ ଅବଶ୍ୟ ସଂକ୍ଷିପ୍ତତମ ପୋଷାକ ପରିଧାନ କରି ଥାଆନ୍ତି । ମାତ୍ର ଖିଏ ସୂତାର ଜାଲିରେ ନିଜକୁ ଢ଼ାଙ୍କି (ସଂପୂର୍ଣ୍ଣ ଉଲଗ୍ନ ଅବସ୍ଥାରୁ) ବର୍ତ୍ତିଯାଇ ଥାଆନ୍ତି । ଓୟେକୁ ପଚାରିଲି 'ସତକଥା କହ, ଏମାନେ ହିଂଜଡା ଅଥଚ ଏମାନଙ୍କ ବକ୍ଷ ଏତେ ସ୍ୱାଭାବିକ ଓ ଉନ୍ନତ ହୋଇଛି କିପରି ? ଏତେ ସୁଲଳିତ ଅଂଗ ପ୍ରତ୍ୟଂଗ ? ଆଧୁନିକ ଶଲ୍ୟ ଚିକିତ୍ସା ସାହାଯ୍ୟରେ ?' ସେ ରହସ୍ୟମୟ ହସ ହସି କହିଲା-'ହିଂଜଡ଼ା ତ ନିଶ୍ଚୟ, ପିଲାବେଳୁ ସେମାନଙ୍କୁ ଏଥିପାଇଁ ତିଆରି କରାଯାଇଥାଏ ।' ଯେ ଗୋଟେ ଉତ୍ତର ! ସେଇ ଥିଏଟରର ଗୋଟେ ସୋ ସରିଲା- ପଦାକୁ ବାହାରିଲା ବେଳକୁ ରାତି ସାଢ଼େ ୯ଟା । ପଟ୍ଟାୟା ବଜାରରେ 'ଆଲ୍‌କାଜାର'ରୁ ସୁବେଶିତ ସୁନ୍ଦର ନାରୀ ଗଣ(transvistite) ପ୍ରାୟ ଉଲଗ୍ନ ହୋଇ ରାସ୍ତାରେ ଦଣ୍ଡାୟମାନ । ପୁରୁଷ ଲୋକମାନେ ପାଖକୁ ଯାଇ ତାଙ୍କ ସହ ବିଭିନ୍ନ ଭଂଗୀରେ ଫଟୋ ନେଉଥାନ୍ତି ।

ପରଦିନ ଅର୍ଥାତ୍ ଏପ୍ରିଲ୍ ୧୯ ତାରିଖ ଥାଇ ଲୋକଙ୍କ ନୂଆ ବର୍ଷର ପ୍ରଥମ ଦିନ । ଅଥଚ ଏମାନେ ଆମର 'ହୋଲି' ପରି ଏହି ପର୍ବକୁ ପାଳନ କରନ୍ତି । ତେଣୁ 'ଆଲ୍‌କାଜାର୍' ଦେଖିବା ପରଦିନଟି 'ହୋଲି' ଉତ୍ସବ କହିଲେ ଅତ୍ୟୁକ୍ତି ହେବନାହିଁ । ପଟ୍ଟାୟା ସହରର ରାସ୍ତାଘାଟରେ ଦଳଦଳ ଯୁବତୀ ଓ ଯୁବକ ଏକତ୍ର ହୋଇ ପାଣି ପିଚ୍‌କାରୀ ମରାମରି ହେଉଥାଆନ୍ତି, ଓ ପଥିକଙ୍କୁ ପାଣିପିଚ୍‌କାରୀରେ ଓଦା କରୁଥାନ୍ତି । ପୁଣି ଚକ୍‌ଖଡି ପେଷ୍ଟଭଳି ଧଳା କାଦୁଆ ପଦାର୍ଥ ଦେହରେ ବୋଳି ହେଉଥାନ୍ତି ଓ ଅଚିହ୍ନା ଲୋକଙ୍କୁ ବି ପାଣିପିଚ୍‌କାରୀ ଓ ଧଳା କାଦୁଅ ବୋଳି ଦେଉଥାନ୍ତି । ଆମ ଅଜ୍ଞତାରୁ ଆମେ ବାହାରକୁ ବାହାରିଥାଉ । ସବୁ ଦୋକାନ, ବଜାର ବନ୍ଦ । ଆମେ 'ଥାଇ' ଲୋକଙ୍କ ଠାରୁ ପାଣିମାଡ଼ ଖଇ ଓ ଧଳାରଂଗ ବୋଳିହେଇ, ଓଦା ହୋଇ ଆସୁଥାଉ- ଶାଢ଼ୀ ବ୍ଲାଉଜ୍, ମୁଣ୍ଡବାଳ, ପ୍ୟାଣ୍ଟ ସାର୍ଟ ସବୁକିଛି ଓଦା । ହୋଟେଲ ସବୁ ବନ୍ଦ, ଦିନ ୨ଟା ବାଜିଲାଣି, ଖାଇବୁ କୋଉଠି ? 'ଟୁକ୍‌ଟୁକ୍' (ଟେମ୍ପୋ) ଟ୍ୟାକ୍ସି, ସବୁ ବନ୍ଦ । ଆମେ ଚାଲିକି ଯାଉ ଯାଉ ହୋଲି ଖେଳର ଟାର୍ଗେଟ ହେବାର ହେଉଥାଉ । ବହୁ ସମୟ

ଚାଲିବାପରେ ଗୋଟିଏ ମାତ୍ର 'ମ୍ୟାକ୍‌ଡୋନାଲଡ୍' ଦୋକାନ ଖୋଲାଥିଲା । ଅଗତ୍ୟା ଆମେ ମୋର ସହଯାତ୍ରୀ ଓ ସହଯାତ୍ରିଣୀ ସେହିଠାରେ ହିଁ ଖାଇଲୁ । 'ସେଣ୍ଟ୍ରାଲ ପଟ୍ଟାୟା' ହୋଟେଲକୁ ଫେରିବା ବେଳକୁ ଗୋଟି ସୁଦ୍ଧା ଓଦା ଓ ଧଳାରଂଗ ବୋଳା । ଚାଲିଚାଲି ଫେରଲା ବେଳକୁ ବି 'ହୋଲି'ର ଶିକାର ହୋଇଥିଲୁ । ଅବଶ୍ୟ ସେମାନେ ଦିନ ୩ଟା ବେଳକୁ 'ହୋଲି' ଖେଳ ବନ୍ଦ କରିଥିଲେ । ସେଇଟା ସେମାନଙ୍କର ନୂଆବର୍ଷର ପ୍ରଥମ ଦିନର ମଜଲିସ୍ । ପ୍ରକୃତରେ ଆମ 'ହୋଲି' ନୁହଁ ।

ବୋଧହୁଏ ଧର୍ମଠାରୁ ସଂସ୍କୃତି ପର୍ଯ୍ୟନ୍ତ (ଲିପିସମେତ) ଭାରତୀୟତାର ପ୍ରଭାବ ଏବେବି ଥାଇଲାଣ୍ଡରେ ପ୍ରଚୁର ଭାବେ ଲକ୍ଷ୍ୟଣୀୟ । ଏଠାରେ ସାଂସ୍କୃତିକ ଉତ୍ସବରେ ଏକତ୍ର ବସିଥିବାବେଳେ ମୋତେ ଭାରତୀୟ କବିତା, ସଂସ୍କୃତି ବିଷୟରେ କେହି କେହି ପ୍ରଶ୍ନ କରିଛନ୍ତି । ତେବେ, ପ୍ରାଚ୍ୟଦେଶ 'ଥାଇଲାଣ୍ଡ'ର ଅତୀତ ସହ ଭାରତୀୟତାର ଅନେକ କିଛି ଯେ ମିଶି ରହିଛି, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଧର୍ମରେ, ଲିପିରେ, ଖାଦ୍ୟରେ । ବିଶେଷ ଦୃଶ୍ୟମାନ ପରିବର୍ତ୍ତନ ହେଉଛି ଥାଇଲାଣ୍ଡ ଦେଶର ପାଶ୍ଚାତ୍ୟକରଣ । ବଡ ସହର, ବଡ ପର୍ଯ୍ୟଟନ ସ୍ଥଳୀମାନ ପାଶ୍ଚାତ୍ୟ କାଇଦାରେ ସଜ୍ଜିତ ହୋଇଛନ୍ତି-ଅଭ୍ୟନ୍ତର ତଥାପି ଅନ୍ଧାରରେ । ମୂଳ ଅଧିବାସୀଙ୍କ ଅନ୍ଧକାର ଏବେ ବି ପୂରାପୂରି ଲିଭିନାହିଁ । ଥାଇଲାଣ୍ଡ ପରିମାର୍ଜିତ ହୋଇଛି । ତା ସତ, ମାତ୍ର ଏହାର ସହରାଞ୍ଚଳରେ ଆମେରିକାର ପ୍ରତିବିମ୍ବ ହିଁ ଦିଶିଯାଉଛି । ଥାଇଲାଣ୍ଡକୁ ସମୂଳ ପ୍ରଭାବିତ କରିପାରି ନାହିଁ ଆମେରିକା । ତଥାପି କିଛିଟା ଅଗ୍ରଗତି ଓ ବିକାଶକୁ ସୂଚିତ କରୁଛି ।



# ପ୍ରବାଳ ଦ୍ୱୀପ

ପ୍ରବାଳ ଦ୍ୱୀପ । ପରୀକାହାଣୀର, ଯେଉଁଠି ରାଜକୁମାର ରାଜକୁମାରୀ ଥାଆନ୍ତି । ସତ କହିବାକୁ ଗଲେ, ପ୍ରବାଳଦ୍ୱୀପଟି ନିର୍ଜନ, ପୁରୁଣା ଅବ୍ୟବହୃତ ଘର ୨/୩ଟି ଅଛି । ମାତ୍ର ସେଗୁଡିକ ରାଜନଅର ପରି ନୁହେଁ । ଆମେ 'ଗଲଫ୍ ଅଫ୍ ଥାଇଲାଣ୍ଡ' ଭିତରେ ପଶିଲୁ, ସେଇ ଓଯେ ବି ତାକୁ କେତେବେଳେ 'ଗଲଫ୍ ଅଫ୍ ଆଣ୍ଡାମାନ୍' କହୁଥାଏ । ଯାହା ହେଉ ଆମେ ବିରାଟ ଏକ ଜାହାଜ ଉପରକୁ ଗଲୁ । ସେଠାରେ ଲୋକମାନେ ସମୁଦ୍ର ଉପରେ ଉଡ଼ିବାକୁ ଯାଉଥାନ୍ତି-ଯାଉଥାନ୍ତି ଅର୍ଥାତ୍ ଦୋଳିରେ ଝୁଲି ଝୁଲି ସମୁଦ୍ର ଉପରେ ୧୦ ମିନିଟ୍ ଖଣ୍ଡେ ଉଡନ୍ତି । ଉଡ଼ିବା ପାଇଁ ଟିକଟ୍ କରିବାକୁ ପଡେ । ଯିଏ ଉଡୁଥିଲେ, ଡର ମାଡ଼େ ନାହିଁ ବୋଲି କହୁଥିଲେ । ମୁଁ କିନ୍ତୁ ଉଡ଼ିଲି ନାହିଁ । ସେଠାରୁ ଆମେ ଏକ ଲଞ୍ଚରେ ବସି ପ୍ରବାଳଦ୍ୱୀପ ଅଭିମୁଖେ ଚାଲିଲୁ । ନୀଳ ମୟୂରକଣ୍ଠୀ ପାଣିର ଆସ୍ତରଣ କାଟି ଆମେ ଚାଲିଥାଉ । ମୁଁ ଯାଇଁ ଲଞ୍ଚର ମଂଗ ପାଖରେ ବସିଥିଲି । ସେଠାରେ ଯାତ୍ରୀଥିଲେ ତରୁଣ ତରୁଣୀ, ମୁଁ ଏକମାତ୍ର ବୟସ୍କା । ଲଞ୍ଚ ଆମକୁ ଛେଚି କୁଟି ଉଠାପକା କରୁଥାଏ । ମୋ ପାଇଁ ବଡ଼ ବିପଜ୍ଜନକ, ଅଥଚ ଲଞ୍ଚ ଭିତରକୁ ଫେରିବାର ବି ରାହା ନଥାଏ । ଲଞ୍ଚ ଅଟକିଲେ ସିନା ମୁଁ ମଂଗ ଉପରୁ ଭିତରକୁ ଆସିବି ! ଖୁବ୍ ଜୋରରେ ଲଞ୍ଚ ବାଡ଼କୁ ଜାବୁଡ଼ି ଧରି ଓହଳିଲାପରି ମୁଁ ସେତକ ସମୟ ପାରି ହୋଇଗଲି । ପାଣି ଝଲକାଏ ଲେଖାଁ ଉଠି ଫୁଲଝରି ଖରାରେ ଚକ୍‌ଚକ୍ ମାରି ଖସି ପଡୁଥାଏ । ପ୍ରବାଳଦ୍ୱୀପରେ ଓହ୍ଲାଇଲାବେଳକୁ ଦିନ ପ୍ରାୟ ୧୨ଟା ପାଖାପାଖି ।

ଦ୍ୱୀପରେ କିଛି ବଡ଼ ବଡ଼ ଗଛ ଅଛି-ଗଛ ଛାଇରେ ବେଞ୍ଚ ପଡିଛି-ଚା, କଫି ଥଣ୍ଡା ପାନୀୟ ମିଳେ । ଦ୍ୱୀପଟି କଳ୍ପନାରେ ଯେଉଁ ବୈଭବ ମଣ୍ଡିତ ହୋଇଥିଲା, ପ୍ରକୃତରେ ସେପରି ନୁହେଁ । ଧଳା ଧଳା ରଂଗର ମୃତ ପ୍ରବାଳ ପଥର କହିଲେ ଠିକ୍ ହେବ । ସେଗୁଡିକ ଦ୍ୱାରା ଗଠିତ ଭୂଭାଗ । ସମୁଦ୍ର ମଝିରେ କାହିଁ କେଉଁ ଯୁଗରୁ ପ୍ରବାଳ ଗୁଡିକ ମୃତ୍ୟୁ ଲଭି ପଥର ପାଲଟି ଯାଇଛି । ସ୍ଥାନେ ସ୍ଥାନେ ବଡ ବଡ ଗଛ ଓ ଛୋଟ ଛୋଟ ଉଦ୍ଭିଦ । ଘାସ ପରି ଗଛ ସବୁ ଉଠିଛି । ଚାଲିଚାଲି କିଛି ବାଟଗଲୁ । ଛୋଟ ଦ୍ୱୀପଟିଏ । ତା' ଚାରିପଟରେ ଘୂରି ହେବ ବୋଟରେ ବସି । ପ୍ରବାଳଦ୍ୱୀପ ଚାରି କଡରେ ଗଭୀର ପାଣି-ନୀଳ ଓ ଠାଏ ଠାଏ ମୟୂରକଣ୍ଠୀରଂଗ । ପ୍ରବାଳ ପଥର-ଯାହା ଲାଲ୍/ କମଳା ରଙ୍ଗର ଆମେ ଗହଣା କରି ପିନ୍ଧୁ । ଯେ ସେଇ ପ୍ରବାଳ ନୁହେଁ । ଯେ ପ୍ରବାଳ

ଧଳା ରଙ୍ଗର, ପଥରରେ ଫୋଡ଼ ଫୋଡ ହୋଇଥାଏ ଦେହ ସାରା । ଜୀବନ୍ତ ପ୍ରବାଳ ଅତି ପାଖରୁ ଦେଖିଥିଲି ଆମେରିକାର ଟେକ୍ସାସ ଜିଲ୍ଲାର ସାନ୍ ଆଣ୍ଟୋନିଓ ସହରର 'ସିଓ୍ୱାଲର୍ଡ'ରେ । ବିରାଟକାୟ କୋଠା ଆକୃତିର ଆକ୍ୱାରିୟମ୍ ଭିତରେ । ଏହିପରି ଧଳା ପଥର ଓ ତା' ଉପରେ ଜୀବନ୍ତ ପ୍ରବାଳ ସୋରିଷ ଦାନା ଠାରୁ ଟିକେ ଛୋଟ-ପ୍ରବାଳ ଲତାର ଅଗ୍ରଭାଗ-ଯାହା ସ୍ପନ୍ଦିତ ହେଉଥାଏ-ବୋଧହୁଏ ମଣିଷର ହୃତପିଣ୍ଡ ଭଳି କହିଲେ ଅନେକଟା ଠିକ୍ ହେବ । ତଥାପି ଏଠାରେ ପ୍ରବାଳ ଦ୍ୱୀପକୁ ଯିବାର ଯୋଜନା ହୋଇଥିଲା । ଗୋଟିଏ ଛୋଟ ବୋଟ୍‌କୁ ଉଠିଲୁ । ସେହି ବୋଟ୍‌ଟି ମୋର ଜଂଘଯାଏ ପାଣିରେ ଥିଲା-ଏବେ ଓଦାହୋଇ ବୋଟ୍ ପାଖକୁ ଗଲୁ । ତା' ପରେ ସିଡ଼ିରେ ଚଢ଼ି ବୋଟ ଉପରକୁ ଉଠିବା କଥା । ଲୁଗାପଟା ଓଦା, କାନ୍ଧରେ ଏକ ବିରାଟ ବ୍ୟାଗ୍, ଏଣେ ପାଞ୍ଚ ଫୁଟିଆ ମଣିଷ ମୁଁ । ଅଧାସିଡ଼ିରେ ରହିଲି । ଭାବିଲି, ଆଉ ଉଠି ହେବନାହିଁ । ଏଇଠି ବୋଧେ ଅଟକିବି । ମୋ ପଛରେ ଲୋକଙ୍କ ଧାଡ଼ି । ତତ୍‌କ୍ଷଣାତ୍ ଜଣେ ସହଯାତ୍ରିଣୀ ମୋତେ ଗୋଟିଏ ପଟରୁ ସାମାନ୍ୟ ଠେଲି ଉଠାଇ ଦେଲେ । ବାସ୍, ମୁଁ ଯାଇ ବୋଟ ଉପରେ । ବୋଟ୍ ଭିତରେ ଦୁଇଧାଡ଼ି ନୀଚା ଚେୟାରରେ ଆମେ ବସିଲୁ । ବୋଟ ତଳେ ଥିବା କାଠପଟାକୁ ଉଠାଇ ଦେଲେ, ତଳେ ଏକ ବିଶେଷ ଧରଣର କାଚ ଲାଗି ଥିବାରୁ, ମୁଣ୍ଡ ନୁଆଁଇଁ ସେହିକାଚ ଭିତର ଦେଇ ଆମେ ଜୀବନ୍ତ ପ୍ରବଳ ଲତା ଦେଖିଲୁ । ବିଭିନ୍ନ ରଂଗର, ନାଲି, ଗୋଲାପୀ, ବାଇଗଣୀ, ନୀଳ, କଳା ରଂଗର ପ୍ରବାଳ ଲତାମାନ ପାଣିରେ ଆନ୍ଦୋଳିତ ହେଉଥାନ୍ତି । ସେଗୁଡ଼ିକ ପୁଣି ପ୍ରତ୍ୟେକେ ବିଭିନ୍ନ ଆକାରର, ନାନା ବାଗରେ, ନାନା ପ୍ରକାରରେ ଝୁଲୁ ଥାଆନ୍ତି । ବଡ଼ ଝିଅ ଠାରୁ ଶୁଣିଥିଲି ସେମାନେ ଆଣ୍ଡାମାନ୍ ସମୁଦ୍ର ଗଭୀରରେ ଦେଖିଥିଲେ ପ୍ରବାଳ ଲତାକୁ । ବାସ୍ତବିକ୍ ଶୁଣାକଥା, ଦେଖାକଥା ଭିତରେ ବହୁତ ଫରକ୍ । ନହେଲେ ଆମେ ଟି.ଭି.ରେ କେତେ ପ୍ରବାଳ ଲତା ଦେଖି ଥାଉଁ ଓ ପୃଥିବୀର କେଉଁ ଅଂଶ ବା ଆମେ ଟିଭିରେ ନ ଦେଖୁଛୁ ! ପ୍ରବାଳ ଦ୍ୱୀପଟି ବହୁ ପର୍ଯ୍ୟଟକଙ୍କ ଗହଳି ସତ୍ତ୍ୱେ ବେଶ୍ ନିରୋଳା, ନିକାଞ୍ଚନ ମନେହେଲା । ଅଳ୍ପଉଚ୍ଚା,ଛୋଟ ପାହାଡ଼ଟିଏ ଯେପରି ଚାରିକଡ଼ରୁ ସମୁଦ୍ର ଘେରା । ଅଥଚ ଗଭୀର ସମୁଦ୍ର-ଏକ ଦିଗରେ ଲଞ୍ଚରୁ ଓହ୍ଲାଇବା ଓ ଉଠିବାର ସୁବଧା ରହିଛି । ପାଣିରେ କେତେ କେଜାଣି ରଂଗ !

ଶୁଣିଥିବା, କଳ୍ପନାରେ ଦେଖିଥିବା ଅନେକ ଦୃଶ୍ୟ ଓ ଅନୁଭବ, ବାସ୍ତବରେ ଭିନ୍ନ ପ୍ରକାର ଏକ ଅଭିଜ୍ଞତା ପ୍ରଦାନ କରିଥାଏ । ପରୀ କାହାଣୀର ପ୍ରବାଳ ଦ୍ୱୀପ ସତକୁସତ

ଏତେ ବେଶୀ ରୋମାଞ୍ଚକର ଲାଗିଲା ନାହିଁ । ଅବଶ୍ୟ ମଣିଷର ରୋମାଂଚିତ ହେବାର ଯୋଗ୍ୟତା ଥିଲେ ହିଁ ବେଳେ ବେଳେ ଦୃଶ୍ୟ ଓ ଘଟଣା ନିଜେ ରୋମାଂଚକର ହୋଇଯାନ୍ତି । ମୁଁ ତାରୁଣ୍ୟ ଅତିକ୍ରମ କରିସାରିଥିବା, ବାସ୍ତବତାର ଚିଆଁରେ ଚେତାପାଇଥିବା, କଳ୍ପନାରେ ଲଗାମ ଭିଡ଼ିବା ଅଭ୍ୟାସ କରିଥିବା ଏକ ସ୍ତ୍ରୀ ଲୋକ, ପ୍ରବାଳଦ୍ୱୀପର କୁହୁକ କୁ ଯେ ଶତକଡ଼ା ଶହେ ଅନୁଭବ କରି ନପାରିଲି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବରଂ ପ୍ରବାଳ ଦ୍ୱୀପ ହିଁ ପ୍ରବାଳ ଦ୍ୱୀପ ହୋଇ ରହୁ ।



# ବ୍ୟାଂକକ୍‌ର ଶୁଖୁଆ ହାଟ

'କାହିଁକି ଶୁଖୁଆ ହାଟ ବସେଇଛ କିରେ ?' ମାଷ୍ଟ୍ରେ ବେତ ନଚେଇ ନଚେଇ ପଶି ଆସନ୍ତି ଶ୍ରେଣୀ ଗୃହକୁ । ୩ୟ, ୪ର୍ଥ ଶ୍ରେଣୀରେ ପଢ଼ିଲା ବେଳ କଥା । 'ମାଛ ହାଟ' 'ଶୁଖୁଆ' ହାଟ ରେ କାଳେ ବେଶୀ ଘୋ' ଘୋ-ହୋ ହାଲ୍ଲା-କେଜାଣି ! ଆମର ପାରାଦ୍ୱୀପ ରାସ୍ତାରେ କେନାଲ ପାଖାପାଖି ଶୁଖୁଆ ଗନ୍ଧ-ମାଛ ହାଟରେ ବି ଦୁର୍ଗନ୍ଧ । କିନ୍ତୁ ଥାଇ ରାଜ୍ୟରେ ଶୁଖୁଆ ଗୋଦାମକୁ ଯିବାକୁ ହେଲା-ଗନ୍ଧହୀନ ଗୋଦାମ । ସହରର ଫୁଟ୍‌ପାଥିରେ ବୁଲୁବୁଲୁ ଏହି ଗୋଦାମ ରାସ୍ତାରେ ପଡ଼ିଲା । ଅତଏବ ଭିତରେ ପଶିଗଲୁ । ମୁଁ ମୋ ଝିଅର ଜଣେ ବନ୍ଧୁ ଓ ତାଙ୍କର ଜଣେ ବନ୍ଧୁ । ଶୁଖୁଆ କେତେ ପ୍ରକାର ? ଇଲିଶି, ଖଂଗା, ଚାଆଁରା, କୋକଲୀ, ଲୁଣି ଶୁଖୁଆ, ପିତା ଶୁଖୁଆ ଆଉ ତାଂପଡ଼ା ଶୁଖୁଆ, ଚୁଂଗୁଡ଼ି ଶୁଖୁଆ ଏତିକି ତ ଆମ ଜଣା କଥା ! କିନ୍ତୁ ଏଠାରେ ଶୁଖୁଆ ଶତାଧିକ ପ୍ରକାରର । ନଈ ସମୁଦ୍ରରେ ଯେତେ ପ୍ରକାର ମାଛ, ସେତେ ପ୍ରକାର ଶୁଖୁଆ ମିଳେ । ଅଥଚ, ଶୁଖୁଆ ଗୋଦାମ ଭିତରେ ଗନ୍ଧ ନାହିଁ । ନୂଆ ଉପାୟରେ ପ୍ରସେସ୍‌ଡ୍ ହେଇଥିବା ଶୁଖୁଆ ମାନ । ମାଛସହ 'ଶିଶୁମାର' ଶୁଖୁଆ ମଧ୍ୟ ଅଛି । କେତେ ପ୍ରକାର ସମୁଦ୍ର ମାଛ, ମାଛ ଚେହେରାରୁ ଶୁଖୁଆ ଚେହେରା ସୃଷ୍ଟି ହୋଇଛି । ଆଶ୍ଚର୍ଯ୍ୟ ! ଶତାଧିକ କିସମର ଶୁଖୁଆ-ସୂତା ପରି ଗୋଲେଇ, ଇଞ୍ଚ/ ଦୁଇ ଇଞ୍ଚେ ଲମ୍ବ, ଉଲ ଖଣ୍ଡେ ପରି ଗୋଲେଇ ଇଞ୍ଚେ, ଦି' ଇଞ୍ଚ ଲମ୍ବର ଶୁଖୁଆ । ଖଣ୍ଡାପରି ଚେହେରା, ମାଟିଆ ରଂଗର ଶୁଖୁଆ-କେମିତି ତାକୁ ଖାଆନ୍ତି ? ରାସ୍ତା କଡ଼ ସାରା, ବଡ଼ ବଡ଼ ଚୁଲାରେ, ବଡ ନନଷ୍ଟିକ୍ ତାୱାରେ, ଲାଲ ଲାଲ ମାଛଭଜା, ଚୁଂଗୁଡି, କଂକଡା, ଠିକ୍ ଝିଟିପଟି ଭଳି ଚେହେରା ର ମାଛଭଜା ଗୁଚ୍ଛା ହୋଇ ରହିଥାଏ । ଶୁଖୁଆ ବି ସେମିତି । କିଣାବିକା ଚାଲିଥାଏ ବେଶ୍ । ଏକଦା ଶୁଖୁଆ ପ୍ରିୟ ମୁଁ, ଅନେକ ବର୍ଷ ହେଲାଣି ଶୁଖୁଆ ଖାଇବା ଛାଡ଼ିଛି । ଡିସେଣ୍ଟ୍ରି, ଗ୍ୟାସଟ୍ରିକ୍, ପିଲାଙ୍କ ଅନିଚ୍ଛା-ତେଣୁ ଆଉ ଶୁଖୁଆ ଘରେ ପଶେ ନାହିଁ । କିନ୍ତୁ ଏଠି ଏତେ ପ୍ରକାର ଶୁଖୁଆକୁ ବୁଲିବୁଲି ଦେଖୁଥାଏ । କିଛି ପଚାରିବା ବା ଉତ୍ତର ପାଇବାର ଆଶା ତ ନଥାଏ । ସାଧାରଣ ଲୋକେ 'ଥାଇ' ଭାଷା ଛଡା କିଛି ବୁଝନ୍ତି ନାହିଁ କି କହନ୍ତି ନାହିଁ । ବଡ ବଡ ଦୋକାନରେ ଜଣେ ଅଧେ ସେଲ୍‌ସ୍ ଗାର୍ଲ ଥାଆନ୍ତି ଯିଏ ଇଂରାଜୀ ଭାଷା କିଛିଟା ବୁଝନ୍ତି ଓ ଖଣ୍ଡି ଖଣ୍ଡି ଭାଷାରେ କିଛି ପ୍ରକାଶ କରନ୍ତି । ତେବେ ବେଶୀ ଭାଗ ଠାରା ଠାରି ଆଦାନ ପ୍ରଦାନ ଚାଲେ ।

ତେଣୁ ଆଖିରେ ଦେଖି ଚମତ୍କୃତ ହେବା ଛଡା ଅନ୍ୟ କିଛି ଉପାୟ ନଥାଏ । ପାଣିର ପୋକ ଭଳି ଚେହେରାର ବି ଶୁଖୁଆ ଅଛି-ଆମେ ବୁଝିଲୁ, ମୁଁ ତ କିଣିଲି ନାହିଁ । ମୋ ସାଙ୍ଗରେ ଥିବା ଦି'ଜଣ ୨ କେ.ଜି ଚୁଂଗୁଡ଼ି ଶୁଖୁଆ କିଣିଲେ, ମୁଣ୍ଡ ନଥିବା ଚୋପା ଛାଡ଼ିଥିବା ଧଳା ଧଳା ଲୁଣ ଲାଗିଥିବା, ଚିନିପାଗ ପରି ଦିଶୁଥାଏ ଶୁଖୁଆ-କେ.ଜି ୬୦୦ଟଙ୍କା । ଗନ୍ଧ କିନ୍ତୁ ନାହିଁ-ହୁଏତ ରାନ୍ଧିଲେ ବାସ୍ନା ବାହାରୁ ଥିବ । ଆମର ଯାଡେ ଶୁଖୁଆ ମାତ୍ରେ ଗନ୍ଧ । କିନ୍ତୁ ଥାଇଲାଣ୍ଡରେ ଲୋକେ ପ୍ରଚୁର ଶୁଖୁଆ ଖାଆନ୍ତି । ସେଠାରେ ଭିନ୍ନ ଉପାୟରେ ସଜ ମାଛରୁ ଶୁଖୁଆ ହୁଏ ।

ତଥାପି ଗୋଟେ ନୂଆ ପ୍ରକାର ଶୁଖୁଆ ଦେଖିଲି, ଛତୁ ଶୁଖୁଆ । ବଡ ବଡ ଛତୁ-ଶୁଖୁଆ, ପାଣି କଖାରୁ ବଡି ପରି ଆକାର-ବିରି ବରା ପରି ଦିଶୁଥାଏ । ତାର ଉପରିଭାଗ-ଛବିଲା ହୋଇଥାଏ-କଳାଧଳାରେ । ଛୋଟ ଛତୁ ଶୁଖୁଆ ବି ଥାଏ-ବଡ ଛତୁ ଶୁଖୁଆ ବସ୍ତା ବସ୍ତା ରହିଥାଏ । ବଟନ୍ ଛତୁ ଭଳି କିଛିଟା ଶୁଖୁଆ ବି ଦିଶୁଥାଏ । ତାକୁ ବି ଲୋକେ କିଣିନେଉ ଥାଆନ୍ତି । ସେ ଗୁଡିକର ରନ୍ଧା ପ୍ରଣାଳୀ, ଶୁଖୁଆଭଳି ହେଉଥିବ । କିନ୍ତୁ ଛତୁ ଯେ ଶୁଖୁଆ ହୋଇ ରହେ ମତେ ଜଣା ନଥିଲା । ମାଂସ ଶୁଖୁଆ ମୁଁ ଜାଣିଥିଲି, ଖାଇଥିଲି ବି । ବାପା କୋରାପୁଟରେ ଚାକିରୀ କରୁଥିଲା ବେଳେ କେତେଥର ଛୋଟ କାଠ ବାକ୍ସରେ ପ୍ୟାକ୍ କରି ଆମପାଇଁ, ଆମର ଜଣେ ସାଇର ଜେଜେଙ୍କ ପାଇଁ ବାର୍‌ହା ମାଂସର ଶୁଖୁଆ ପଠାଉଥିଲେ । ସୋୟାବିନ୍ ବଡି ଖଣ୍ଡପରି ଆକାରର ମାଂସ ଶୁଖୁଆ ପାଣିରେ ବତୁରା ହୁଏ, ୩/୪ ଘଣ୍ଟା, ତା' ପରେ ରନ୍ଧାହୁଏ । ପ୍ରାୟ ୩୦/୪୦ ବର୍ଷ ତଳେ ଫୁଲ କୋବିର ଶୁଖୁଆ ବି ଖାଇଥିଲି-ଆଜିକାଲି ବର୍ଷସାରା ସଜଫୁଲ କୋବି ମିଳୁଛି-ଶୁଖୁଆ ଫୁଲ କୋବି ଦରକାର କ'ଣ ? ସେଠାର ଶୁଖୁଆର କିସମ ଓ ଆକାର ପ୍ରକୃତରେ ବର୍ଣ୍ଣନା କଲାଭଳି ନୁହେଁ । ଆମେରିକାରେ ଶୁଖୁଆ କୋଉ ମାର୍କେଟରେ ମିଳିବା ଶୁଣିଛି, ହେଲେ ଦେଖି ନାହିଁ, ଆମେ ଚାଇନିଜ୍ ମାର୍କେଟରୁ ଖାଦ୍ୟ ପଦାର୍ଥ କିଣୁ, ସେଠି ଶୁଖୁଆ ମିଳେ ନାହିଁ ।

ଦ୍ୱିପ୍ରହରରେ ଶୁଖୁଆ ଗୋଦାମ ପରେ ହୋଟେଲ୍‌କୁ ଫେରିଲୁ, ସଂଧ୍ୟାରେ ମାର୍କେଟ ବାହାରିଲୁ । ଅନେକ ବଡ ବଡ ଦୋକାନ ବଜାର ସିନା ଆମେରିକାନ ଢ଼ାଞ୍ଚାରେ ରହିଛି, ମାତ୍ର କଟକ, କଲିକତା, ଦିଲ୍ଲୀ ପରି ଫୁଟ୍‌ପାଥ୍ ଦୋକାନ ଗୁଡାଏ ବି ଅଛି । ଠକି ହୋଇଯିବାର ସମ୍ଭାବନା ଖୁବ୍ ବେଶି । ଆମେ ସ୍ଥିର କଲୁ ଆଜି ଦ୍ୱିପ୍ରହରରେ ଖୁବ୍ ଦାମୀ ଚାଇନିଜ୍ ଖିଆ ହୋଇଛି । ରାତିରେ ଇଣ୍ଡିଆନ୍ ଖିଆହେବ । ତେଣୁ ପ୍ରାୟ

ହୋଟେଲ ଖୋଜିବା ଜରୁରୀ ନୁହଁ । ଆମେ ଫୁଟପାଥ ଦୋକାନରେ ବୁଲୁଛୁ ଦେଖିଲୁ ୨/୩ଟି ଭାରତୀୟ ହୋଟେଲ୍‌ର ଦଲାଲ୍ ଠିଆ ହୋଇ ପର୍ଯ୍ୟଟକମାନଙ୍କୁ ଆମନ୍ତ୍ରଣ କରିବାରେ ଲାଗିଛନ୍ତି । ଦଲାଲ୍ ନୁହଁନ୍ତି ତ କ'ଣ-ଇଂରାଜୀରେ, ହିନ୍ଦୀରେ, ବେଂଗଲୀରେ ସବିନୟ ନିବେଦନ କରୁଥାନ୍ତି । ଆମେ ବାଛିଲୁ ବେଂଗଲୀ ହୋଟେଲ । ଇଂରାଜୀ ବେଂଗଲୀ କହୁଥିବା ଲୋକ ଜଣଙ୍କ ଜଗି ବସିଛି । ଆମକୁ ସାଂଗରେ ହୋଟେଲକୁ ନେଇ ଯିବ ବୋଲି । ମନେହେଲା, ବାଦାମ ବାଡ଼ିରେ ପ୍ରାଇଭେଟ୍ ବସ୍ ଷ୍ଟାଣ୍ଡର ହେଲ୍‌ପର୍ ମାନେ ଯେମିତି ଲୋକଙ୍କୁ ଜୁଟାଇବାରେ ଧୁରନ୍ଧରପଣ ଦେଖାନ୍ତି, ଡାକି ଚାଲିଥାନ୍ତି-ଏଠିବି ସେମିତି ବ୍ୟବସ୍ଥା ଚଳୁଛି । ଅଗତ୍ୟା ଆମେ ପହଞ୍ଚିଲୁ ।

ସୁଦର୍ଶନ ମଧ୍ୟ ବୟସ୍କ, ବଂଗାଳୀ ଭଦ୍ରଲୋକ, ହୋଟେଲ ମାଲିକ । ତତ୍ପର ହୋଇ ପଡ଼ିଲେ । ଅବଶ୍ୟ ଗରାଖ ସେମିତି ବେଶୀ ନଥାନ୍ତି । ଖାଇବା ଲଗେଇ ଦେଲେ ସାଂଗେ ସାଂଗେ । ପ୍ରାୟ ସବୁ ଜିନିଷ ଖଟା ଓ ବାସୀ ହୋଇଯାଇଛି । ଅର୍ଥାତ୍ ସକାଳ ରନ୍ଧା, ଗରମ ଦିନ, ରାତି ୮ଟା ବେଳକୁ ଆସିଲା । ବାଃ, ଭଲ ଭଦ୍ରଲୋକ । ପଚା ମାଛ ବିକେଇଲା ଭଳି କଥା । ହୋଟେଲ ମାଲିକ ନମ୍ରତା ସହକାରେ ବିନୀତ ଭାବେ ଠିଆ ହେଲା-ଥଣ୍ଡା ପାନୀୟ ଧରାଇଲା, ଆମେ ଅଳ୍ପ କିଛି ଟଙ୍କା କାଟିଲୁ ଅବଶ୍ୟ, ତଥାପି ପଇସା ଦେଇଦେଲୁ । ନଚେତ୍ ସେଭଳି ଖାଦ୍ୟକୁ ଆଦୌ ପଇସା ଦେବା କଥା ନୁହଁ ! ବିଦେଶ ଜାଗା, ହାଂଗାମା କରିବାକୁ ଉଚିତ୍ ମନେ କଲୁ ନାହିଁ, ଅଥଚ ଏହିଭଳି ପର୍ଯ୍ୟଟକଙ୍କୁ ଠକି ନେଇ ଦଲାଲି ଚଲେଇଛନ୍ତି ହୋଟେଲ୍‌ବାଲା ମାନେ । ଆଉ ଥରେ ଅଧେ ଅବଶ୍ୟ ଏଭଳି ଘଟିଛି ଏଇ ଥାଇଲାଣ୍ଡରେ । ଅଥଚ ଅନ୍ୟ ହୋଟେଲ ମାନେ ମଧ୍ୟ ବିଭିନ୍ନ ଉପାୟରେ ଠକାନ୍ତି । ତା ବି ଆମେ ଭୋଗିଲୁ । ଦୁଃଖ ଲାଗିଲା, ଆମର ଭାରତୀୟ ଙ୍କ ଦ୍ୱାରା ଆମେ ଠକିହେଲୁ । ପରଦିନ ପୁଣି ସ୍ୱପ୍ନ ପୁରୀରେ ପ୍ରବେଶ ଡ୍ରିମଲ୍ୟାଣ୍ଡ, ସେଠାରେ ନୌଯାତ୍ରା ପୁଣି ଝୁଲା ଦୋଳିରେ ଯାତ୍ରା । ପ୍ରଥମେ କଲିକତା ନିକୋପାର୍କରେ ପ୍ରାୟ ୧୨ ବର୍ଷ ତଳେ ରୋପୱେ ରେ ଯାତାୟତ କରିଥିଲି । ନିମ୍ନ ଦେଶରେ ଗଭୀର ପାଣିର ସୁଅ । ବ୍ୟାଙ୍କକ୍ ସହରରେ ପୁଣି ସେହି ଯାତ୍ରା ଭଲ ଲାଗିଲା । ଆମେରିକାରେ ଅଳ୍ପଦିନ ତଳେ କିଛି ଅଭିଜ୍ଞତା ହାସଲ କରିଥିବା ମୁଁ ଥାଇଲାଣ୍ଡରେ ସ୍ୱାଭାବିକ ଦୁଇଟି ଦେଶର ଚଳଣିକୁ ମନ ଭିତରେ ତଉଲୁଥିଲି । ବର୍ଣ୍ଣିଳ ଭୋଗପୁର ଆମେରିକା ର ଛାଇ ପଡ଼ିଛି ଥାଇଲାଣ୍ଡରେ । ସହରାଞ୍ଚଳରେ ମୁଖ୍ୟତଃ । କିନ୍ତୁ 'ଛାଇ' ଭୂମିକୁ ଅନ୍ଧାର କରିନାହିଁ । ବରଂ କିଛିଟା ରୁଚିପୂର୍ଣ୍ଣ ଆଲୋକିତ କରିଛି ।

ସେହି ଡ୍ରିମ୍‌ଲ୍ୟାଣ୍ଡରେ ସେଦିନ ଗୋଟିଏ ବିଶେଷ ପର୍ବ ଥାଏ । ପଟ୍ଟାୟା (ଓୟେ ଉଚ୍ଚାରଣ କରେ 'ପଠଠାଇୟା' ନହେଲେ 'ଫଟ୍ଟାଇଆ') ସହରରେ ନୂଆ ବର୍ଷର ହୋଲି ପାଳନ ସାଙ୍ଗକୁ ବ୍ୟାଙ୍କକ୍‌ରେ ପ୍ରଜ୍ଞାପନମେଢ଼ ସବୁ ଚାଲିଥାଏ ଅପରାହ୍ଣରେ-ଡ୍ରିମ୍‌ଲ୍ୟାଣ୍ଡ ଭିତରେ । ଅନେକ ପର୍ଯ୍ୟଟକଙ୍କ ମେଳରେ ସୁ-ସଜ୍ଜିତ ଟ୍ରକରେ ପୁରୁଷ ସ୍ତ୍ରୀ, କିମ୍ବା କେବଳ ସ୍ତ୍ରୀ ଜଣେ ଦୁଇଜଣ ଥାଆନ୍ତି, କେଉଁଠି ରାଣୀ ବେଶରେତ କେଉଁଠି ସ୍ୱଳ୍ପବସ୍ତ୍ର ପରିହିତା ସୁନ୍ଦରୀ ରୂପରେ । ସାରା ମେଢ଼ଗୁଡିକ ଆକର୍ଷଣୀୟ, ଦର୍ଶନୀୟ ମନେ ହେଉ ଥାଏ । ମୁଖ୍ୟତଃ ସେଗୁଡିକ ଫଳ ଓ ଫୁଲରେ ସଜା ହୋଇଥାଆନ୍ତି । ଯାତ୍ରା ଉତ୍ସବରେ ରାସ୍ତା ଦୁଇଧାରରେ ଲୋକ ଠିଆ ହୋଇ ଦେଖୁଥାଆନ୍ତି । ତେବେ, ଥାଇଲାଣ୍ଡର ସହର ମାନଙ୍କରେ, ଯେ କୌଣସି ପର୍ଯ୍ୟଟନ ସ୍ଥଳରେ ରେଷ୍ଟରୁମ୍ ଥାଏ । ଯଦିଓ ସେଗୁଡିକ ଆମେରିକା ରେଷ୍ଟରୁମ୍ ଭଳି ଏତେ ପରିଚ୍ଛନ୍ନ ନୁହଁନ୍ତି । ତଥାପି ଆମ ଭାରତର ଅନେକ ସହରର ପର୍ଯ୍ୟଟନସ୍ଥଳୀ ଠାରୁ ଏଇ ଥାଇଲାଣ୍ଡର ମୁଖ୍ୟ ସହର ମାନଙ୍କରେ ପର୍ଯ୍ୟଟକଙ୍କ ନିମିତ୍ତ ଅନେକ ସୁବିଧା ସୁଯୋଗ ରହିଛି ।

ଆମେରିକାରେ ପ୍ରଚୁର ସଂଖ୍ୟାରେ ସ୍ଥୂଳକାୟ ବ୍ୟକ୍ତିଙ୍କୁ ଦେଖି କୌତୂହଳୀ ହୋଇଥିବା ମୁଁ କିନ୍ତୁ ଥାଇଲାଣ୍ଡରେ ସ୍ଥୂଳକାୟ ବ୍ୟକ୍ତି ଦେଖିଲି ନାହିଁ । ସେମାନେ ପତଳା, ଗୋରା, ମଂଗୋଲିଆନ୍ ଚେହେରା, ଦୀର୍ଘାଂଗ/ଦୀର୍ଘାଂଗୀ ବା ବାଂଗ୍ରା/ବାଂଗରୀ । ଆମେରିକାର ପ୍ରାଚୁର୍ଯ୍ୟ, ଖାଦ୍ୟ ସଂଭାର ହୁଏତ ତାର ବାସିନ୍ଦାଙ୍କୁ କରିଛି ସ୍ଥୂଳକାୟ । କିନ୍ତୁ ଆଶ୍ଚର୍ଯ୍ୟ ଲାଗିଲା, ସ୍ଥୂଳକାୟ ହେଲେ ବି ଆମେରିକାନ୍‌ମାନେ ଖୁବ୍ କର୍ମଠ । ବିପୁଳ କାୟାକୁ ବୋହି ବୋହି ସେମାନେ ସମସ୍ତ କାମ କରୁଥାଆନ୍ତି । କର୍ମକ୍ଷେତ୍ରଠାରୁ ଗୃହକ୍ଷେତ୍ର ପର୍ଯ୍ୟନ୍ତ। ଥାଇଲାଣ୍ଡରେ ନାରୀ, ସବୁଥିରେ ଆଗୁଆ । ବିଶେଷକରି ପରିବାର ପ୍ରତିପୋଷଣ ଦିଗରେ କ୍ରିୟାଶୀଳ ଥାଏ । ବାର୍‌ରେ ହେଉ, ମେସାଜ୍ ସେଣ୍ଟରରେ ହେଉ, କି ଦୋକାନ, ବଜାର, ବାଣିଜ୍ୟିକ କର୍ମକ୍ଷେତ୍ରରେ ହେଉ, ନାରୀ ଖୁବ୍ କର୍ମଠ । ସହରୀ ନାରୀ ପ୍ରାୟ ଉପାର୍ଜନ କ୍ଷମ । କିଛି ନହେଲେ କ୍ଲିପ୍ ଇତ୍ୟାଦି ସମ୍ଭାର ବୋଝ ଧରି ରାସ୍ତାକଡ଼ରେ ବସିଥାଆନ୍ତି ।



# ବ୍ୟାଙ୍କକ୍ ଓ ଚାଓଫ୍ରାୟାନଦୀ

ପଟ୍ଟାୟାରେ ଥିଏଟର 'ଆଲ୍‌କାଜାର୍' ପଟ୍ଟାୟାର କଲଚରାଲ୍ ଫଙ୍କସନ୍ (ଗୀତନୃତ୍ୟ କବିତା) ପ୍ରବାଳ ଦ୍ୱୀପ, ନୂଆ ବର୍ଷର ହୋଲି ପରି ଉତ୍ସବ ପଟ୍ଟାୟାର ଅନ୍ୟତମ ଆକର୍ଷଣ, ତା'ର ନାସନାଲ ଜେମ୍‌ସ୍ ଗ୍ୟାଲେରୀ-ଆମକୁ ଅନେକ ନୂତନ-ଅନୁଭବ ଆଣି ଦେଲା । ଏହା ପୂର୍ବରୁ କହିଛି ଫେରିବା ପଥରେ ପଟ୍ଟାୟାରୁ ବାହାରି, ବ୍ୟାଂକକ୍ ଆସିବୁ । ବାଟରେ ଜେମ୍‌ସ୍ ଗ୍ୟାଲେରିକୁ ଗଲୁ । ଜେମ୍‌ସ୍ ଗ୍ୟାଲେରୀରୁ ମୋର କିଛି କିଣିବାର ନଥିଲା । ସେହି ବିଭିନ୍ନ ରତ୍ନ ଓ ମଣିମୁକ୍ତାର ଗହଣା ଦେଖିଚାଲିଥାଏ ମୁଁ । ସେଠାରେ ସବୁ ଷ୍ଟାଫ୍ ସେଲ୍‌ସଗାର୍ଲ, ରତ୍ନ କାଟିବା ପାଇଁ ତିଆରି ପାଇଁ ନିୟୋଜିତ ସମସ୍ତ ବ୍ୟକ୍ତି କେବଳ ମହିଳା । ସେଠାରେ ପହଞ୍ଚିଲା ପରେ ଆମକୁ ସେମାନେ ଥଣ୍ଡା ପାନୀୟ ଦେଇ ଆପ୍ୟାୟିତ କଲେ । ଟୟଟ୍ରେନ୍‌ରେ ବସାଇ ପ୍ରାଚୀନ ଥାଇଲାଣ୍ଡର କୃତ୍ରିମ କିଛିଟା ସ୍ୱରୂପ ମଧ ଦେଖାଇଲେ । ତା' ପରେ ଗ୍ୟାଲେରି ଭିତରକୁ ଯିବାକୁ ହେଲା । ଝଲମଲ ରତ୍ନ ସଂଭାର ମଧ୍ୟରେ ମୁଁ ଆଚମ୍ବିତ ହେଲି ଯେ, ମୋ ଗଳାରେ ଲଂବିଥିବା ଗୋଟିଏ ରୁପାର ଗୁନ୍ଥା ନକଲି ମୁକ୍ତାର ହାର ଦେଖି ସେମାନେ 'ଥାଇ' Sales Girls ଚମକୃତ ହେଲେ । ଘେରି ପଡ଼ିଲେ ଖଣ୍ଡି ଖଣ୍ଡି ଇଂରାଜୀରେ 'ଖୁବ୍ ସୁନ୍ଦର' 'କେତେଦାମ୍', 'କୋଉଠି ମିଳୁଛି' ପଚାରିଲେ । ସେ ହାରଟି ମୋ ଝିଅ ମୋତେ ଆମେରିକାରେ କିଣି ଦେଇଥିଲା । ସେ କଥା କହିବାରୁ ଖୁବ୍ ତୃପ୍ତ ହେଲେ, ଆମେରିକାର ସବୁ ଜିନିଷ ଯେ ଭଲ, ସେମାନେ ଭାବନ୍ତି ଓ ସେସବୁ  ତାଙ୍କ ଦୃଷ୍ଟିରେ ଅନୁକରଣୀୟ ।

ଜେମ୍‌ସ୍ ଗ୍ୟାଲେରି ଦେଖିସାରି ସିଧା ଫେରିଲୁ ବ୍ୟାଂକକ୍ ସହରକୁ । ୨୧ ତାରିଖ ପୂର୍ବାହ୍ଣରେ ଓଯେ ଆମକୁ 'ବ୍ୟାଙ୍କକ୍ ପ୍ୟାଲେସ୍ ହୋଟେଲ'ରେ ପହଞ୍ଚାଇଲା । ସୁନ୍ଦର ଆତିଥ୍ୟ, ସ୍ୱାଦିଷ୍ଟ, ସୁବାସିତ ପାନୀୟ ମିଳିଲା । ବିରାଟ ହୋଟେଲରେ ଉନ୍ନତ ଧରଣର ସେବା, ଚମତ୍କାର ସାଜସଜ୍ଜା । ହୋଟେଲର ବାହାରକୁ ଆସିଲେ, ରାସ୍ତା ଦୁଇକଡରେ ବିଭିନ୍ନ ଦୋକାନ ଖୋଲିଥାଏ-ମୁଖ୍ୟତଃ ପିଇବାପାଣି, ଖାଦ୍ୟର ଦୋକାନ । ରାସ୍ତା ଦୁଇପାଖେ ହୋଟେଲ୍, କଫିବାର ସବୁଥାଏ । ଇଣ୍ଡିଆନ୍, ଚାଇନିଜ୍, 'ଥାଇ' ହୋଟେଲ ସବୁ । ଏହା ସହିତ ପିଇବା ପାଣି ପ୍ରଚୁର ମିଳୁଥାଏ । ରାସ୍ତା କଡେ କଡେ ବୋତଲ ଗୁଡିକ, ମୁଦା ହୋଇ ରହିଥାଏ ।  ବଡ କଥା ହେଲା, ହୋଟେଲ୍‌ରେ ପିଇବା

ପାଣି ଦିଆଯାଏ ନାହିଁ । ସକାଳ ଜଳଖିଆ ସହିତ ଯାହା ପିଇବା ପାଣିଦିଆଯାଏ, ପାଣି ସହିତ ଫଳରସ ଥାଏ । ତେଣୁ ଜଳଖିଆରେ ହୋଟେଲ୍ ବାସିନ୍ଦା ମାନେ ଫଳରସ ନ ପିଇ, ପାଣି ପିଅନ୍ତେ ବା କାହିଁକି ? ତା' ସହିତ ଚା, କଫି, କ୍ଷୀର ବି ରହିଥାଏ । ତେଣୁ ପାଣି ପିଇ ହୁଏ ନାହିଁ । ପାଣି ବରାବର କିଣିବାକୁ ପଡେ । କିନ୍ତୁ ଗୋଟେ ସହରରେ ସବୁଠିଁ ସିନା ଆମେରିକାର କାଇଦା, କିନ୍ତୁ ରାସ୍ତାକଡ ଖାଇବା ଦୋକାନ ଦେଖିଲେ ତା' ପାଖ ପାଣି ପଚ୍‌ପଚ୍, ବିରାଟ ତାୱାରେ ବଡ଼ ବଡ଼ ମାଛଭଜା, ଚୁଂଗୁଡ଼ି, କଂକଡା ଭଜା, ବାସ୍ନାରେ ଲାଳୟିତ ହେବାର ଅବସ୍ଥା, ମନେ ପକାଇ ଦିଏ ଭାରତର ରାସ୍ତାକଡ ଦୋକାନ ବଜାରକୁ । କଟକର ରାସ୍ତାକଡ ବରା ପିଆଜି ଛଣାର ବାସ୍ନାକୁ । ଅବଶ୍ୟ କଟକ, କଲିକତା ସହରର ରାସ୍ତାକଡ ଦୋକାନଠାରୁ ଏଗୁଡିକ ଯଥେଷ୍ଟ ପରିଚ୍ଛନ୍ନ । ଏସବୁ ଦୋକାନରେ ବି ନାରୀ ମାନଙ୍କ ପ୍ରାଧାନ୍ୟ-ବିକ୍ରେତା ନାରୀ, ଅଧିକାଂଶ କ୍ରେତା ଓ ଖାଦକ ବି ନାରୀ । ରାସ୍ତାକଡ ଦୋକାନରେ ପ୍ଲେଟଧରି ବସିକି ଖାଉ ଥାଆନ୍ତି । ଥାଇ ସ୍ତ୍ରୀ ଲୋକେ-ଦିନସାରା ଖଟଣି ପରେ ସୋମନେ କଣ ରାତିକି ଆଉ ଘରେ ରାନ୍ଧି ବାଢ଼ି ଖାଉଥିବେ ? ସେଥିପାଇଁ ହୁଏତ ଏହି ଅବସ୍ଥା ।

ବ୍ୟାଙ୍କକ୍‌ର ପ୍ରଥମ ଆକର୍ଷଣ ବୁଦ୍ଧ ମନ୍ଦିର । ଦୁଇଟି ପ୍ରସିଦ୍ଧ ବୁଦ୍ଧ ମନ୍ଦିର ଆମେ ଦେଖିଲୁ । ଗୋଟିଏ 'ଗୋଲଡେନ୍ ବୁଦ୍ଧ' ମନ୍ଦିର, ଆଉ ଗୋଟିଏ 'ରୟାଲ ବୁଦ୍ଧ' ମନ୍ଦିର । ଓୟେ ଭାଷାରେ 'ବୁଦ୍‌ଢା' ବା 'ଭୁଦ୍‌ଦା' ଟେଂପଲ୍ । ପ୍ରଥମେ ସ୍ୱର୍ଣ୍ଣବୁଦ୍ଧଙ୍କ ମନ୍ଦିରକୁ ଗଲୁ । ପ୍ରାୟ ୩୦ ଫୁଟ୍ ଉଚ୍ଚ ଅଶି ଫୁଟ୍ ଲମ୍ବ ବୁଦ୍ଧଙ୍କ ଶାନ୍ତ ମୂର୍ତ୍ତି ସୁବର୍ଣ୍ଣ ନିର୍ମିତ । ବୁଝିଲୁ, ଉପର ସୁନାଛାଉଣି ଭିତରେ ଲୌହଧାତୁ । ବୁଦ୍ଧଙ୍କ ନିକଟରେ ବିଭିନ୍ନ ପରିଚୟାତ୍ମକ ବିବରଣୀ ଲେଖାଯାଇଛି । ସେହି ଶାନ୍ତ ବୁଦ୍ଧଙ୍କ ପୃଷ୍ଠପଟରେ ଶତାଧିକ ବୁଦ୍ଧ (୩ ଫୁଟିଆ ଛୋଟ ପଥର ମୂର୍ତ୍ତି) ବସିଥାନ୍ତି । ସାମ୍ନାରେ ତାଙ୍କର ଦାନପାତ୍ର । ଦାନପାତ୍ରରେ ଭକ୍ତ ଓ ପର୍ଯ୍ୟଟକ ମାନେ 'ଭାଟ୍' ପକାଇ ଥାନ୍ତି-ଆମେ ବି ପକାଇଲୁ । ଏହି ଅର୍ଥ ମନ୍ଦିରର ରକ୍ଷଣାବେକ୍ଷଣରେ ଖର୍ଚ୍ଚହୁଏ । ସୁନାଛାଉଣୀ ଶାୟିତ ବୁଦ୍ଧଙ୍କର ବିଶାଳମୂର୍ତ୍ତି ମୋତେ ସ୍ମରଣ କରାଇ ଦେଲା--ଅଜନ୍ତା ଗୁମ୍ଫାର ଶାୟିତ ପଥରରେ ତିଆରି ବୁଦ୍ଧ ମୂର୍ତ୍ତିଙ୍କୁ । ମହାପରିନିର୍ବାଣର ଅବ୍ୟବହିତ ପୂର୍ବରୁ ଗୌତମବୁଦ୍ଧ ଶୋଇ ରହିଛନ୍ତି-ଅଜନ୍ତାରେ । ଅଶୀତି ବର୍ଷ ବୟସରେ ବୁଦ୍ଧଙ୍କର ଶୂକର ମାଂସ ଭକ୍ଷଣ ଓ ମୃତ୍ୟୁ । କି ଅଦ୍ଭୁତ ସତରେ ! କେତେ ସତ, କେତେ କିମ୍ବଦନ୍ତୀ, କିଏ କହିବ ? ଏଠାରେ କିନ୍ତୁ ବୁଦ୍ଧଙ୍କର 'ପରିନିର୍ବାଣ ଶୟନ' ନୁହେଁ । ବିଶ୍ରାମ ଶୟନ, ବରଦହସ୍ତ । ବୌଦ୍ଧ ଧର୍ମ ଥାଇଲାଣ୍ଡର

ଜାତୀୟ ଧର୍ମ । ଅଥଚ ପ୍ରଚୁର ଆମିଷ ଭକ୍ଷଣ ଓ ମାଛ ଶୁଖୁଆର ବ୍ୟାପାରରେ ଭରପୂର ଯେ ଭୂମି-ରାସ୍ତା କଡରେ ଅବାଧ ମାଛ ଭଜାର ବାସ୍ନା । ଅହିଂସାର ଚିହ୍ନବର୍ଣ୍ଣ ବି ନାହିଁ କେଉଁଠି । କେବେ କେବେ ଗୈରିକ ବସ୍ତ୍ର ପରିହିତ, ଲଣ୍ଡିତ ମସ୍ତକ ଭ୍ରମଣକାରୀ ଶ୍ରମଣ ୪/୫ ଜଣ ଦେଖାଯାନ୍ତି । ମନ୍ଦିର ସାମ୍ନାରେ ଥଣ୍ଡା ପାନୀୟ, ଫଳ ଦୋକାନ । କିଣିଲି, ଜାମୁରୋଳ, ଆକାରରେ ଆଖୁରସ ଆମ୍ବଭଳି, ହୁଏତ ତା'ଠାରୁ ସାମାନ୍ୟ ବଡ଼ ହେବ, ଗୋଟିକୁ ୫ଭାଟ୍ ବା ୫ଟଙ୍କା ୨୫ ପଇସା ଭଳି ଦାମ୍, ରଂଗ ଇଷତ୍ ପାଟଳ, ଫିକା ଡାଉ ରଂଗ କହିଲେ ବି ହେବ । ସବୁଜ ରଂଗର ଜାମୁରୋଳ ମଧ୍ୟ ଅଛି । ଉଭୟେ ରଂଗର ଜାମୁରୋଳ ଅତ୍ୟନ୍ତ ମିଠା, ସୁବାସିତ, ଖାଇଲା ଲୋକ କେବଳ ଜାଣି ପାରିବ । ମୋ ଜୀବନରେ ଏଇ ପ୍ରଥମଥର ଏତେମିଠା ଜାମୁରୋଳ ଖିଆ । ସତ୍ୟଭାମାପୁର ଗାଁ ଠାରୁ ସହର ଯାଏ କେତେ ଜାମୁରୋଳ ନ ଖାଇଛି, ଯେ ଅଦ୍ୱିତୀୟ । ଆମେରିକାର ପିଅର (ନାସ୍‌ପାତି) ଥାଇଲାଣ୍ଡର ଜାମୁରୋଳ ଅପୂର୍ବ ସ୍ୱାଦଗନ୍ଧରେ ଭରପୁର । ସତେ ପୃଥିବୀ ଅମୃତ ସଂଭବା ନୁହେଁ ତ କ'ଣ ?

୨ୟ ବୁଦ୍ଧ ମନ୍ଦିର 'ରୟାଲ୍ ବୁଦ୍ଧମନ୍ଦିର'କୁ ଗଲୁ । ବ୍ୟାଙ୍କକ୍‌ର ରାଜା ଏହି ମନ୍ଦିର ନିର୍ମାଣ କରିଛନ୍ତି । ଯଦିଓ ବୁଦ୍ଧମୂର୍ତ୍ତି ପ୍ରଥମେ ଚୀନା ମାନେ ହିଁ ଏଠାକୁ ଆଣିଥିଲେ, ପରେ ରାଜା ରାମୋ, ଦ୍ୱିତୀୟ (ଚକ୍ର ରାଜବଂଶର) ଏହି ମନ୍ଦିର ଗଢ଼ି ବୁଦ୍ଧଙ୍କୁ ପ୍ରତିଷ୍ଠା କଲେ । ଓୟେଠାରୁ ଶୁଣିଲି, ଏଥିରେ ୩୩,୦୦୦,୦୦୦ ଭାଟ୍ ଖର୍ଚ୍ଚ ହୋଇଥିବାର ତଥ୍ୟ ରହିଛି । ଏଥିରେ ବୁଦ୍ଧ ମଧ୍ୟ ସୁନାଛାଉଣୀ-କିନ୍ତୁ ଉପବିଷ୍ଟ, ପ୍ରାୟ ୨୮ ଫୁଟ ଯାଏ ଉଚ୍ଚ ସୁନାର ବୁଦ୍ଧମୂର୍ତ୍ତି ବସିଛନ୍ତି । ପୂଜାର୍ଚ୍ଚନା, ଫଳ, ଫୁଲ ଥାଳିରେ ବୁଦ୍ଧଙ୍କ ସାମ୍ନାରେ ରଖାଯାଇଛି । ବୁଦ୍ଧଙ୍କ ମୂର୍ତ୍ତି ଉପରେ ଫୁଲ ଦିଆ ହୋଇ ନାହିଁ । ସେଠାରେ ବି ଦାନବାକ୍ସ ଥାଏ । ଏହି ବୁଦ୍ଧ ରାଜାଙ୍କ ଦ୍ୱାରା ପୂଜିତ । ଏଠାରେ ଗଣତନ୍ତ୍ର ଚାଲୁଛି ତଥାପି ଖୋଦ ରାଜା ଅଛନ୍ତି । ୪ବର୍ଷରେ ଥରେ ଏଠାରେ ନିର୍ବାଚନ ହୁଏ । ସହର ଗୁଡିକର ଉନ୍ନତି ସହ କିନ୍ତୁ ଗ୍ରାମ ଗୁଡିକ ଉନ୍ନତ ହୋଇ ପାରୁ ନାହିଁ, ଅନ୍ଧାରରେ ରହିଛି-ତେବେ ଓୟେ ଠାରୁ ଶୁଣିଲି ଯେ ଏବେ ଗ୍ରାମ୍ୟ ବିକାଶ ନିମିତ୍ତ ରାଜା ଆଗ୍ରହୀ । ପ୍ରତି ଗ୍ରାମର ଉନ୍ନତି କଳ୍ପେ ଏହି ବର୍ଷ ପାଇଁ ଏକ ଲକ୍ଷ ଭାଟ୍ ରାଜା ପ୍ରଦାନ କରିଛନ୍ତି ଯେତେବେଳେ, କିଛିଟା ଉନ୍ନିତ ନିଶ୍ଚୟ ହେବ । ଏହି ମନ୍ଦିର ବେଢ଼ା ଖୁବ୍ ପ୍ରଶସ୍ତ-ଯା ଭିତରେ ୯୫ଟି ପାଗୋଡା ଓୟେ ଭାଷାରେ 'ଫାକୁରାଜ୍' ନିର୍ମିତ ହୋଇଛି । ଏହି ପାଗୋଡ଼ା ଗୁଡିକ ଭିତରେ ବିଶିଷ୍ଟ ବ୍ୟକ୍ତିଙ୍କ ମର ଶରୀରର କିଛି ଭସ୍ମ ମଧ୍ୟ ଗଚ୍ଛିତ ରହେ । ଏହି

ପାଗୋଡା ଗୁଡିକ ପ୍ରାୟ ଆକାରରେ ସମାନ-ଜଗନ୍ନାଥଙ୍କର ରଥର ଏକଦଶମାଂଶ ଆକାରର ହେବ । ଇତସ୍ତତଃ ବେଢ଼ାଭିତରେ ପାଗୋଡା ଗୁଡିକର ନିର୍ମାଣ ଦେଖି, ଆଖିରେ ଦିଶିଗଲା ମହାପ୍ରଭୁ ଲିଂଗରାଜଙ୍କ ମନ୍ଦିର ବେଢ଼ାରେ କେତେ କେଜାଣି ଶିବଲିଂଗ ସ୍ଥାପିତ ହୋଇଥିବା କ୍ଷୁଦ୍ରାକାର ମନ୍ଦିର ସବୁ ।

ବ୍ୟାଙ୍କକ୍‌ରେ ରାଜା ରୁହନ୍ତି । ଏହି ମନ୍ଦିର ରାଜକୀୟ । ଏଠାକୁ ପ୍ରବେଶ କଲାପରେ ରାସ୍ତାରେ ଏକ ବିସ୍ତୀର୍ଣ୍ଣ ସ୍ଥାନ ରହିଛି-୨ପଟରେ ଘର -ଡାହାଣପଟେ ଏକ ସୁଉଚ୍ଚ ପ୍ରସାଦ ଓ ବାମପଟେ ଏକ ଖୋଲାମେଲା ଘର-ବୈଠକଖାନାଭଳି । ସେଠାରେ ଗୋଟେ ନୂତନ ଦୃଶ୍ୟ ଦେଖିଲୁ-ଘଟଣାଟି ଅଭିନବ ମଧ୍ୟ । ଜଣେ ବିଶିଷ୍ଟ ବ୍ୟକ୍ତିଙ୍କର ମୃତ୍ୟୁ ଘଟିଛି । ୩ ଦିନ ବିତିଗଲାଣି କଫିନ୍ ଭଳି ଏକ ବାକ୍ସରେ ବନ୍ଦ ହୋଇ ତାଙ୍କ ଶରୀର ରହିଛି । ଓ କଫିନ୍‌ଟି ପାଟ କନାରେ ଢଙ୍କା । ପାଖରେ ମୃତବ୍ୟକ୍ତିଙ୍କର ଜୀବିତାବସ୍ଥାର ଏକ ଛୋଟ ଫଟୋ ରହିଛି । ଲଣ୍ଡିତ ମସ୍ତକ କିଛି ଶ୍ରମଣ ଓ ମୃତ ବ୍ୟକ୍ତିଙ୍କର କେତେକ ନିଜ ଲୋକ ବସିଛନ୍ତି । ପ୍ରାର୍ଥନା ବି ଚାଲିଛି । ୫ ଦିନପରେ ଏହି ବ୍ୟକ୍ତିଙ୍କର ଦାହକ୍ରିୟା ହେବ ଓ ତାଙ୍କର ଭସ୍ମ ସାମ୍ନାରେ ଥିବା ସେହି ପ୍ରାସାଦର ନିର୍ଦ୍ଦିଷ୍ଟ ସ୍ଥାନରେ ସଂରକ୍ଷିତ ହୋଇ ରହିବ । ସାଧାରଣ 'ଥାଇ'ଲୋକଙ୍କ ପାଇଁ ନୁହେଁ, ହାତଗଣତି ବିଶିଷ୍ଟ ଲୋକଙ୍କ ପାଇଁ ଯେ ବ୍ୟବସ୍ଥା । ମୋତେ ଲାଗିଲା, ଆମ ଜଗନ୍ନାଥ ମନ୍ଦିରର ରୋଷଘରୁ ନିଆଁ ଆସେ, ବିଶିଷ୍ଟ ବ୍ୟକ୍ତିଙ୍କର ଦାହକ୍ରିୟା ପାଇଁ,-ଯେ ସେହିପରି ଏକ ବ୍ୟବସ୍ଥା ବୋଧହୁଏ ! ବ୍ୟାଙ୍କକ୍ ସହରର ମଧ୍ୟଦେଇ ରାୟାଲ୍ ବୁଦ୍ଧ ମନ୍ଦିରର ଅନତି ଦୂରରେ ପ୍ରବାହିତ 'ଚାଓଫ୍ରାୟା' ନଦୀ । ଉତ୍ତର ଥାଇଲାଣ୍ଡରୁ ଏହି ନଦୀ ଆସି ସମୁଦ୍ରରେ ମିଶିଛି । ସେଥିରୁ ବାହାରିଛି କେତେଗୋଟି ଜଳପୂର୍ଣ୍ଣ କେନାଲ । ଖରାଦିନେ ବି 'ଚାଓଫ୍ରାୟା' ନଦୀ ଶୁଖିଯାଏ ନାହିଁ । ଛଳଛଳ ଚାଓଫ୍ରାୟା ନଦୀର ଜଳରାଶି ଦେଖି ଯୋବ୍ରା ଆନିକଟ ମନେ ପଡ଼ିଲା ।

ବ୍ୟାଙ୍କକ୍ ସହର ମୁଖ୍ୟତଃ ପର୍ଯ୍ୟଟନ ସ୍ଥଳୀ ହୋଇଥିବାରୁ ସହରସାରା ଖାଦ୍ୟ ଦୋକାନ ଓ ମେସାଜ୍ କେନ୍ଦ୍ର । ଲୋକେ ଘଷି ମୋଡାଇ ହେବାକୁ ଏ ସବୁ ବିପଣୀ ରହିଛି । ବହୁତ ହୋଟେଲ୍‌ରେ ରହିଛି ମଧ ଏକପ୍ରକାର ମେସାଜ୍ ସେଣ୍ଟର । ଏଠାରେ ଟ ୪୦୦ଙ୍କା(୩୫୦ଭାଟ୍) ଦେଲେ ତୁମେ ଘଷି ମୋଡ଼ି ହେବ । କି ସ୍ତ୍ରୀ, କି ପୁରୁଷ ଘଷା ମୋଡା ଖାଇ ତାଜା ହେବେ । ତେବେ ଏ ସବୁ ସେଣ୍ଟର ରେ ନାରୀମାନେ ହିଁ ଘଷାମୋଡା କରନ୍ତି । ଅଧିକାଂଶ ପୁରୁଷ ହିଁ ମାସେଜ୍ ପାଇଁ ଏହି ସେଣ୍ଟର କୁ ଯାଇଥାନ୍ତି ।

ବ୍ୟାଙ୍କକ୍ ସହରର ମୁଖ୍ୟ ରାସ୍ତା ପରିଚ୍ଛନ୍ନ ଓ ପ୍ରଶସ୍ତ । ରାସ୍ତାର ଦୁଇକଡ଼େ ଗଛ ଧାଡ଼ି ଧାଡି-ମୁଖ୍ୟତଃ ସୁନାରି ଫୁଲଗଛ ଓ ତିନ୍ତୁଳିଗଛ । ସୁନାରିଫୁଲ ଭର୍ତ୍ତି ହୋଇଥାଏ ଗଛରେ ଓ ତିନ୍ତୁଳି ଗଛରେ ବଡ ବଡ ପାଚିଲା ତନ୍ତୁଳି ଝୁଲୁଥାଏ । ସେ ଦୃଶ୍ୟ ବାସ୍ତବିକ ଖୁବ୍ ସତେଜ କରୁଥାଏ ମନକୁ । ଛକଜାଗା ମାନଙ୍କରେ ଦୁଇଟି ପତାକା ଉଡୁଥାଏ-ଗୋଟିଏ ଥାଇଲାଣ୍ଡର, ଗୋଟିଏ ବ୍ୟାଙ୍କକ୍‌ର । ଏସବୁ ଠିକ୍ ଆମେରିକା ପତାକା ନୀତିର ଅନୁସାରୀ, ଆମେରିକାର ପ୍ରତି ରାଜ୍ୟର ସ୍ୱତନ୍ତ୍ର ପତକା ରହିଥାଏ । ପୁଣି ସମଗ୍ର ଯୁକ୍ତରାଷ୍ଟ୍ରର ପତାକାଟି ସ୍ୱତନ୍ତ୍ର । 'ବ୍ୟାଙ୍କକ' ଶବ୍ଦର ଅର୍ଥ 'ସିଟି ଅଫ୍ ଆଞ୍ଜେଲ' । 'ଥାଇ'ର ଅର୍ଥ 'ମୁକ୍ତ' । ୧୯୩୬ ମସିହାରେ ଏହି ଦେଶର ପୁରୁଣା ନାମ 'ସାୟଦ୍‌ଲାଣ୍ଡ'କୁ ବଦଳାଇ ଥାଇଲାଣ୍ଡ' ନାମରେ ନାମିତ କରାଯାଇଛି । ମୁଖ୍ୟ ରାସ୍ତା ପାର୍ଶ୍ୱରେ 'ସେଲ୍‌ଗାକର୍ଣ୍ଣ ୟୁନିଭରସିଟି', ସେଠାରେ ବୁକ୍ ସେଣ୍ଟର ବି ଅଛି । 'ଥାଇଲାଣ୍ଡ'ରେ ୨୧ଟି ବିଶ୍ୱ ବିଦ୍ୟାଳୟ, ପ୍ରାୟ ସବୁ ପ୍ରାଇଭେଟ ଅନୁଷ୍ଠାନ । ପାଖରେ ରୟାଲ ଖେଳ ପଡ଼ିଆ । ନିକଟରେ 'ଚାଓଫ୍ରାୟା' ଜଳଭର୍ତ୍ତି ନଦୀ । ସହରର ସବୁ ପ୍ରକାର ନିର୍ମାଣ ଓ ସାଜସଜ୍ଜା ଆମେରିକାର ଅର୍ଥ ଓ କାରିଗରୀ ଯୋଗାଣରେ ସମ୍ଭବ ହୋଇଅଛି । ଏମ୍.ବି.କେ. ବଜାର ଆମେରିକାର ବଡ଼ ବଡ 'ମଲ୍'ର ଅନୁରୂପ - ଏଠାରେ ସବୁ ପଣ୍ୟଦ୍ରବ୍ୟ ସହିତ ରହିଛି ମଧ୍ୟ ବିଭିନ୍ନ ଖାଦ୍ୟର ରେସ୍ତୋରାଁ'- ସେହିଠାରେ ମଧ୍ୟାହ୍ନ ଭୋଜନ କାଳରେ କେଣ୍ଟୁକି ରେସ୍ତୋରାଁରେ ମୁଁ କେଣ୍ଟୁକି ଫ୍ରାଏଡ୍ ଚିକେନ୍ ପ୍ରଥମ ଖାଇଲି । ନାନାବିଧ କୁକୁଡା ମାଂସରୁ ତିଆରି ଖାଦ୍ୟ-ସୁସ୍ୱାଦୁ, ଆଉ ଚାହିଁଲେ ବି ଅଳ୍ପଟିକେ ଭାତ ମିଳେ ତା' ସାଥିରେ ।

ଦୋକାନର ଷ୍ଟାଇଲ୍ ଆମେରିକାର କ୍ୟାଣ୍ଟିନ୍‌ଭଳି । ମୂଳତଃ ଥାଇଲାଣ୍ଡରେ ଘୂରିବୁଲିବା ବେଳେ ଖାଇବା ସମସ୍ୟାଟି ଠିକ୍ ସମୟରେ ପହଞ୍ଚେ । ବୁଲୁ ବୁଲୁ ଆମେ ମଧ୍ୟାହ୍ନ ଭୋଜନ ସମୟ ହେଲେ ନିକଟରେ ମିଳୁଥିବା ଖାଦ୍ୟ ଖାଇ ନେଉ । ସେଥିପାଇଁ କେଣ୍ଟୁକୀର ଖାଦ୍ୟ ଖିଆଗଲା ଓ ଖାଦ୍ୟ ଦିନେ ଅଧେ ପାଇଁ ଚଳିଯିବ । ନହେଲେ ଆମ ଓଡ଼ିଆଣୀଙ୍କୁ ସେ ଖାଦ୍ୟ ସୁହାଇବ ନାହିଁ ଆଦୌ ।





ହ୍ୟୁଷ୍ଟନ୍ ସହର 'ନାସା ସ୍ପେସ୍ ସେଣ୍ଟର' ସାମ୍ନାରେ ରଂଜନ, କନି, ପେପୁ ଓ ମୁଁ



ସାନ୍‌ଫ୍ରାନ୍‌ସିସ୍କୋର ଗୋଲଡେନ୍ ବ୍ରିଜ୍ ଉପରେ ଟିଟା, ଅଂଜି ଓ ମୁଁ



ସାନ୍‌ହୋଜେର ରୋକ୍ ଗାର୍ଡନରେ ମୁଁ



ସାନ୍‌ହୋଜେ ଅର୍ଥୋଡକ୍ସ ସିନାଗଗ୍‌ରେ ମୁଖ୍ୟ ପୂଜିକାଙ୍କ ସହ



ହ୍ୱାଇଟ୍ ହାଉସ୍ ସାମ୍ନାରେ ପେପୁ ଓ ମୁଁ



ନ୍ୟୁୟର୍କ ଏମ୍ପାୟାର ଷ୍ଟେଟ୍ ବିଲ୍‌ଡିଙ୍ଗ ୧୭ ମହଲାରେ ପେପୁ ଓ ମୁଁ



ୱାଶିଂଗଟନ୍ ଡିସିର ୱାର ଆଣ୍ଡ ସ୍ପେସ
ମ୍ୟୁଜିୟମ କଲମ୍ବିଆ ମଡେଲ୍ ପାଖରେ
କନି, ମୁଁ ଓ ଗୁଲୁ
(ଡ. ଶୁଭକାନ୍ତ ବେହେରାଙ୍କ ପୁଅ)



ଲେକ୍‌ଉଡ ସହର ଘର ସାମ୍ନାରେ
ନୀରୋଦ ସହ ନିବେଦିତା,
ପେପୁ ଓ ମୁଁ

ଆମେରିକା ଓ ଆଇଲାଣ୍ଡକୁ ନେଇ ଭ୍ରମଣ-ବୃତ୍ତାନ୍ତ ରଚନା ଓଡ଼ିଆରେ ନୂଆ ନୁହେଁ, ଅଥଚ ପ୍ରଖ୍ୟାତ କବି ଡକ୍ଟର ପ୍ରତିଭା ଶତପଥୀଙ୍କ ରଚିତ *ଦର୍ପିଳ ଜୋଗସ୍ତୁର ଓ ଅସ୍ଥିର ଛାଇ* ଗ୍ରନ୍ଥଟି ଏହି ମାର୍ଗରେ ଏକ ବିରଳ ବ୍ୟତିକ୍ରମ । ଥରେ ପଢ଼ିବା ଆରମ୍ଭ କଲେ ଶେଷ ନ କରି ରହି ହୁଏନାହିଁ । ଅନନ୍ୟ କାବ୍ୟାନୁଭବରେ ସ୍ଥାନ ଓ କାଳ-ଉଭୟ ଏଠି ଉତ୍ତୀର୍ଣ୍ଣ । ପାତ୍ର ପାତ୍ରାନ୍ତରରେ ସମାହିତ ଓ ଅଭିଜ୍ଞତା ଉପଲବ୍ଧିରେ ପ୍ରସରିତ । ଘଟଣାର ସାମାନ୍ୟତା ବ୍ୟକ୍ତିଗତ ଓ ସାମୂହିକ ସ୍ମୃତିର ଚମକପ୍ରଦ ବିଶାଳତାରେ ତୁଳନାହୀନଭାବେ ଅସାମାନ୍ୟ ।

-ପ୍ରକାଶକ

